# ଭାଗବତ କଥା



ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ଓଁ ନମୋ ଭଗବତେ ବାସୁଦେବାୟ



ବ୍ୟାସଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱିତା ।
କୃତା ବୈଂ ପ୍ରଭୁଦତ୍ତେନ ମାଲା 'ଭଗବତୀ କଥା' ॥

# ଭାଗବତ କଥା

ଷଷ୍ଠ (ଅନ୍ତିମ) ଖଣ୍ଡ

ଲେଖକ :
ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀ

ଅନୁବାଦ :
ପଣ୍ଡିତ ଉପେନ୍ଦ୍ର ନାଥ ହୋତା

ପ୍ରକାଶକ :



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍

# ଭାଗବତ କଥା-୬୦

ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ଶ୍ରୀଗୁଣ୍ଡିଚା, ୧୯୯୭

ମୁଦ୍ରଣ :
ସାହୁ କମ୍ପ୍ୟୁଟର ଇଉନିଟ୍ ଏଣ୍ଡ. ପ୍ରିଣ୍ଟୋଗ୍ରାଫିକ୍ସ
କଟକ

ମୂଲ୍ୟ : ଟ ୩୫-୦୦

## BHAGABAT KATHA-60

Sri Prabhudatta Brahmachari

Publisher :
Sri. N. P. Misra
Cuttack Students' Store
Balubazar, Cuttack-753002

Principal Adviser :
Sri. R. P. Misra

First Edition : 1997

Price : Rs.35-00

# ଦୁଇପଦ

୧୬୨୮

ପରମ ଭାଗବତ ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀ ଚଳିତ ଶତାବ୍ଦୀର ସୁପ୍ରସିଦ୍ଧ ସାଧୁ ସନ୍ଥ ତଥା ପରିବ୍ରାଜକଙ୍କ ମଧରେ ଅଗ୍ରଗଣ୍ୟ । ତାଙ୍କର ଏକମାତ୍ର ଆରାଧ ଦେବତା ହେଉଛନ୍ତି ଭଗବାନ ବାସୁଦେବ ଶ୍ରୀକୃଷ୍ଣ, ଏବଂ ଏକମାତ୍ର ପଠିତ ଗ୍ରନ୍ଥ ହେଉଛି ବ୍ୟାସଙ୍କ ରଚିତ ଶ୍ରୀମଦ୍‌ଭାଗବତ । ଏକଦା ନୈମେଷାରଣ୍ୟରେ ଯେତେବେଳେ ବ୍ରହ୍ମସୂତ୍ର ସଭା ବସିଥିଲା ସେତେବେଳେ ସୂତ ମୁନି ଏହି ସଭାର ପୌରହିତ୍ୟ କରି ଶୌନକାଦି ଅଗଣିତ ମହର୍ଷିଙ୍କୁ ଶ୍ରୀକୃଷ୍ଣ ଚରିତ ଶୁଣାଇ ଧନ୍ୟ କରିଥିଲେ । ଚଳିତ ଶତାବ୍ଦୀରେ ପରିବ୍ରାଜକ ବ୍ରହ୍ମଚାରୀ ପ୍ରଭୁଦତ୍ତ କୋଟି କୋଟି ଜନତାଙ୍କୁ ଶ୍ରୀକୃଷ୍ଣ ଚରିତ ଶୁଣାଇ ଧନ୍ୟ କରିପାରିଛନ୍ତି ଏହି ''ଭାଗବତ କଥା'' ମାଧମରେ ।

୧୯୭୯ ସାଲରେ ଏହି ପୁଣ୍ୟାତ୍ମା ବ୍ରହ୍ମଚାରୀଙ୍କ ସହିତ ସାକ୍ଷାତ୍-ଦର୍ଶନ ହୋଇଥିଲା ଧର୍ମପ୍ରାଣ ଶ୍ରୀଯୁକ୍ତ ଅନନ୍ତ ମିଶ୍ରଙ୍କର, ପୃଥିବୀର ଶ୍ରେଷ୍ଠ ପବିତ୍ର ଧାମ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ । ପବିତ୍ରପ୍ରାଣ ଶ୍ରୀଯୁକ୍ତ ମିଶ୍ର ସେତେବେଳେ ବ୍ରହ୍ମଚାରୀଙ୍କ ''ଭାଗବତ କଥା'' ପ୍ରବଚନ ଶୁଣି ଅତ୍ୟଧିକ ଭାବପ୍ରବଣ ହୋଇଉଠିଥିଲେ । ସେ ଭକ୍ତି ଗଦ୍‌ଗଦ୍ ହୋଇ ଅଶ୍ରୁଳ ନୟନରେ ବ୍ରହ୍ମଚାରୀଙ୍କୁ ଦର୍ଶନ କରୁଥିବା ସମୟରେ ପୂଜ୍ୟ ବ୍ରହ୍ମଚାରୀ ତାଙ୍କୁ ତାଙ୍କର ଅତି ନିକଟକୁ ଡାକିଥିଲେ । ପୂଜ୍ୟ ବ୍ରହ୍ମଚାରୀଙ୍କ ଅତ୍ୟନ୍ତ ଆତ୍ମୀୟତାପୂର୍ଣ୍ଣ ଆଳାପରେ ଶ୍ରୀଯୁକ୍ତ ମିଶ୍ର ଆତ୍ମହରା ହୋଇଯାଇଥିଲେ, ତଦ୍‌ଭାବରେ ଭାବିତ ହୋଇ ଯାଇଥିଲେ ।

ଶ୍ରୀଯୁକ୍ତ ଅନନ୍ତ ମିଶ୍ର ଓଡ଼ିଶାର ଓ ଓଡ଼ିଆ ଭାଷାର ଜଣେ ଶ୍ରେଷ୍ଠ ତଥା ଲବ୍‌ଧପ୍ରତିଷ୍ଠ ପ୍ରକାଶକ । କାଳେ କାଳେ ଶ୍ରେଷ୍ଠ ରଚନାକୁ ପ୍ରକାଶ କରି ଭାଷା ସାହିତ୍ୟକୁ ସମୃଦ୍ଧ କରିବାକୁ ସେ ତାଙ୍କର ତପସ୍ୟା ମନେ କରୁଥିଲେ । ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କୁ ସେତେବେଳେ ଏହି ପୁରୁଷୋତ୍ତମ-ପ୍ରେମୀ ପ୍ରକାଶକ ''ଭାଗବତ କଥା''କୁ ଓଡ଼ିଆ ଭାଷାରେ ପ୍ରକାଶ କରିବା ପାଇଁ ଆଶୀର୍ବାଦ ଭିକ୍ଷା କରିଥିଲେ । ସନ୍ଥଙ୍କର ସମସ୍ତ ଜୀବନ, ସମସ୍ତ କୃତୀ ତ ହୋଇଥାଏ ଅନ୍ୟମାନଙ୍କ ପାଇଁ । ବ୍ରହ୍ମଚାରୀଜୀ ତତ୍‌କ୍ଷଣାତ୍ ଅନୁମତି ତଥା ଆଶୀର୍ବାଦ ପ୍ରଦାନ କରିଥିଲେ ।

୧୯୮୧ରେ ଭାଗବତ କଥା ଓଡ଼ିଆ ଭାଷାରେ ପ୍ରଥମେ ପ୍ରକାଶ ପାଇଲା ଏବଂ ଧୀରେ ଧୀରେ ପ୍ରତ୍ୟେକ ବର୍ଷ କିଛି କିଛି ଭାଗ ପ୍ରକାଶ ପାଇବାରେ ଲାଗିଲା । ଆଜି ପୂଜ୍ୟପାଦ ବ୍ରହ୍ମଚାରୀଜୀ ଏବଂ ପ୍ରକାଶକ ପବିତ୍ରାତ୍ମା ଶ୍ରୀଯୁକ୍ତ ଅନନ୍ତ ମିଶ୍ର ଇହଜଗତରେ ନାହାନ୍ତି । କିନ୍ତୁ ଏମାନଙ୍କ କୃତୀ ଅମର ହୋଇ ରହିଛି ।

ଆଜି ପବିତ୍ର ଶ୍ରୀଗୁଣ୍ଡିଚା ଦିବସ । ସାରା ପୃଥିବୀରେ ଆଜି ଦିନଟି ଅତି ପବିତ୍ର ଦିବସରୂପେ ବିବେଚିତ । ଜଗତର ବନ୍ଧୁ ଜଗବନ୍ଧୁ, ତାଙ୍କର ଜ୍ୟେଷ୍ଠ ଭ୍ରାତା ଓ କନିଷ୍ଠା ଭଗ୍ନୀ ଏବଂ ସୁଦର୍ଶନଙ୍କ ସହିତ ଜଗତ ପାବନ କରିବା ପାଇଁ ପତିତପାବନ ବାନା ଉଡ଼ାଇ

ମନ୍ଦିର କନ୍ଦରରୁ ବାହାରକୁ ରଥଯାତ୍ରାରେ ବିଜେ କରିଛନ୍ତି । ଏହି ପବିତ୍ର ଅବସରରେ ଆଜି ପର୍ଯ୍ୟନ୍ତ ପାଠକମାନଙ୍କୁ ଭାବପ୍ରବଣ କରି ରଖିଥିବା ''ଭାଗବତ କଥା''ର ଅନ୍ତିମ ଖଣ୍ଡ (ଷଷ୍ଠି-ଭାଗ) ପ୍ରକାଶ ଲାଭ କରିଛି ।

ବ୍ରହ୍ମଚାରୀଙ୍କ ଭାଗବତ କଥା ଷାଠିଏ ଭାଗରେ ପ୍ରକାଶିତ । ଏଥିରେ ବ୍ୟାସଙ୍କ ରଚିତ ଶ୍ରୀମଦ୍‌ଭାଗବତର ସମସ୍ତ ଚରିତ୍ର ଓ କଥା ପରିବେଷିତ । ଓଡ଼ିଶାର ଘରେ ଘରେ ଏବେ ଭାଗବତ କଥା ଆଦୃତ । କେତେକ ଏହାକୁ ଦୈନନ୍ଦିନ ପଢ଼ିବାକୁ ଧାର୍ମିକ କାର୍ଯ୍ୟରୂପେ ଗ୍ରହଣ କରିଥିବା ଆନନ୍ଦର କଥା । ଏହି ଅବସରରେ ଯେଉଁ ପୁଣ୍ୟାତ୍ମା ଏହି 'ଭାଗବତ କଥା'କୁ ଓଡ଼ିଆରେ ପ୍ରକାଶ ଓ ପ୍ରଚାର କରିବାର ସ୍ୱପ୍ନ ପ୍ରଥମେ ଦେଖିଥିଲେ ତାଙ୍କୁ ଆମେ ଭକ୍ତିର ସହିତ ସ୍ମରଣ କରୁଛୁ, ପ୍ରଣାମ କରୁଛୁ ।

ଶ୍ରୀଗୁଣ୍ଡିଚା, ତା. ୬-୭-୧୯୯୭

ରଘୁନାଥ ପ୍ରସାଦ
ନୃସିଂହ ପ୍ରସାଦ ॥



ଭାଗବତ କଥାର ପ୍ରକାଶକ ସ୍ୱର୍ଗତଃ ଅନନ୍ତ ମିଶ୍ର

# ସୂଚୀ





1500

# ବେଦ ଓ ତାହାର ଶାଖା

**ପୈଲାଦିଭିର୍ବ୍ୟାସଶିଷ୍ୟୈର୍ବେଦାଚାର୍ଯ୍ୟୈର୍ମହାତ୍ମଭିଃ ।**
**ବେଦାଶ୍ଚ କତିଧା ବ୍ୟସ୍ତା ଏତତ୍ ସୌମ୍ୟାଭିଧେହି ନଃ ॥ ☆**
(ଶ୍ରୀ ଭା: ୧୨ସ୍କ: ୬ଅ: ୩୬ଶ୍ଳୋକ)

ଷଟ୍‌ପଦୀ

ଶୌନକ ପୁଚ୍ଛେଂ— ସୂତ ! ବେଦକେ କୈ ଆଚାରଜ ।
କୈସେ କର୍‌ୟୋ ବିଭାଗ ପୈଲ ଆଦିକ ମୁନି ଆରଜ ॥
ସୂତ କହେଂ— ଅବତାର ବ୍ୟାସ ଧରି ଭୂପୈ ଆୟେ ।
ଏକ ବେଦକେ ଚାରି କରେ ମୁନି ଚାରି ବୁଲାୟେ ॥
ଦୟୋ ବେଦ ଋକ୍ ପୈଲକୁଁ, ବୈଶମ୍ପାୟନ ଯଜୁ ଦୟୋ ।
ଜୈମିନି ମୁନି କୁଁ ସାମଶ୍ରୁତି, ମୁନି ସୁମନ୍ତୁ ଚୌଥୀ ଲହ୍ୟୋ ॥

ଯେପରି ବୃକ୍ଷର ମୂଳ ଗୋଟିଏ ଓ ସେହି ମୂଳ ମଧ୍ୟରୁ ଶାଖା ଓ ଶାଖାରୁ ପ୍ରଶାଖା ବାହାରିଥାଏ, ସେହିପରି ପ୍ରଥମେ ଏକାକ୍ଷର ପ୍ରଣବ ଓ ତାହାର ବିସ୍ତାର ହୋଇ ହୋଇ ଅନନ୍ତ ବେଦଶାସ୍ତ୍ରାଦିର ସୃଷ୍ଟି ହୋଇଛି । ସେହି ସମସ୍ତ ବେଦମନ୍ତ୍ର (ଋଚା)କୁ ଏକ ବ୍ୟକ୍ତି ଧାରଣ କରିବାରେ ଅସମର୍ଥ, ତେଣୁ ସମୟ ସମୟରେ ଭଗବାନ୍ ବ୍ୟାସରୂପ ଧାରଣ କରି ନିଜର ଜ୍ଞାନରୂପ ବେଦର ସଂହିତା ଆଦି ସୃଷ୍ଟି କରନ୍ତି । ସେହି ସଂହିତାକୁ ଧାରଣ କରିବାର ଶକ୍ତି ଯେତେବେଳେ ରହେ ନାହିଁ, ସେତେବେଳେ ଶାଖାଗୁଡ଼ିକ ସୃଷ୍ଟି କରିବାକୁ ପଡ଼େ । ଋଷିଗଣ ନିଜ ନିଜର ଶାଖା ବାଣ୍ଟିନେଇ ବଂଶଜ ଅନୁଗତମାନଙ୍କୁ ସେହି ଶାଖାର ଜ୍ଞାନ ପ୍ରଦାନ କରନ୍ତି । ସେଥିପାଇଁ ଯେଉଁଠାରେ କୌଣସି ଦ୍ୱିଜଙ୍କର ବେଦ, ଗୋତ୍ର ତଥା ପ୍ରବର କଥା ପଚରାଯାଏ, ସେଠାରେ ସେମାନଙ୍କର ଶାଖା କଥା ମଧ୍ୟ ସେମାନଙ୍କୁ ପଚରା ଯାଇଥାଏ । ଭିନ୍ନ ଭିନ୍ନ ବେଦର ଭିନ୍ନ ଭିନ୍ନ ଶାଖା ରହିଛି ।

ସୂତ କହିଲେ—"ମୁନିଗଣ ! ଆପଣମାନେ ମୋତେ ବେଦର ଶାଖା ବିଷୟରେ ପ୍ରଶ୍ନ କରୁଛନ୍ତି । ମୁଁ ଆପଣମାନଙ୍କୁ ସର୍ବପ୍ରଥମେ ବେଦର ସୃଷ୍ଟି ସମ୍ବନ୍ଧରେ କହୁଛି । ପରେ ବେଦର ଶାଖା ବିଷୟରେ ବର୍ଣ୍ଣନ କରିବି ।"

---

☆ ବିଷ୍ଣୁ ଯେ ବେଦବ୍ୟାସ ରୂପେ । ଜନ୍ମ ସେ ଲଭେ କଳ୍ପେ କଳ୍ପେ ॥
ଚାରିବେଦ ବିସ୍ତାର କଲେ । ବେଦବ୍ୟାସ ନାମ ବହିଲେ ॥
ସେ ପୁଣି ଏ ବେଦମାନଙ୍କୁ । ଶାଖା ଭେଦେ ଦେଲେ ଶିଷ୍ୟଙ୍କୁ ॥
ପ୍ରଥମେ ଋକବେଦ ଦୃଢ଼େ । ପଇଲ ନାମେ ଋଷି ପଢ଼େ ॥
ଯେ ବେଦ ପ୍ରଥମେ କେମିତି । ବିଷ୍ଣୁଙ୍କ ଠାରୁ ଉତପତ୍ତି ॥
କେମନ୍ତେ ବ୍ରହ୍ମା ଉପଦେଶ । କହ ତା ବିସ୍ତାରି ବିଶେଷ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୭୧ଅ.)

ଶୌନକ କହିଲେ—"ହଁ ସୂତ ମହାଶୟ ! ଆପଣ ପ୍ରଥମେ ଆମ୍ଭମାନଙ୍କୁ ବେଦର ସୃଷ୍ଟି ସମ୍ବନ୍ଧରେ କୁହନ୍ତୁ ।"

ସୂତ କହିଲେ—"ଭଗବନ୍ ! ଯେ କୌଣସି ପ୍ରସଙ୍ଗରେ ଉତ୍ପତ୍ତି ବିଷୟରେ କହିବା ପୂର୍ବରୁ ସର୍ବପ୍ରଥମେ କମଳନାଭ ଭଗବାନ୍ ବାସୁଦେବଙ୍କର ବର୍ଣ୍ଣନା କରିବାକୁ ହୋଇଥାଏ । କାରଣ ସମସ୍ତର ମୂଳକାରଣ ସିଏ । ଚରାଚର ଜୀବ, ପଞ୍ଚଭୂତ, ଜ୍ଞାନବିଜ୍ଞାନ ଆଦି ଯାହାକିଛି ଏ ସଂସାରରେ ରହିଛି, ସେ ସମସ୍ତ ପଦ୍ମନାଭ ଭଗବାନ୍ ବିଷ୍ଣୁଙ୍କଠାରୁ ସୃଷ୍ଟି ହୋଇଛି । ସେଥିପାଇଁ ବାରମ୍ବାର କୁହାଯାଏ, 'ସର୍ବଂ ବିଷ୍ଣୁମୟଂ ଜଗତ୍ ।'

"ହଁ, ଯେତେବେଳେ ସେହି ମାୟାଧୀଶ ଭଗବାନ୍‌ଙ୍କର ସୃଷ୍ଟି ସର୍ଜନା କରିବାକୁ ଇଚ୍ଛା ହେଲା, ସେତେବେଳେ ତାଙ୍କ ନାଭିଦେଶରୁ ଏକ କମଳ ଉତ୍ପନ୍ନ ହେଲା । ସେହି କମଳ ଉପରେ ଚତୁର୍ମୁଖ ବ୍ରହ୍ମା ବସିଥିଲେ । ପରମେଷ୍ଠୀ ବ୍ରହ୍ମା ସେହି କମଳ ଉପରେ ବସି ଚିନ୍ତା କଲେ—'ମୋତେ ଏବେ କ'ଣ କରିବାକୁ ହେବ ।' ବ୍ରହ୍ମାଙ୍କର ଏହି ଜାଣିବାର ସଙ୍କଳ୍ପ ହିଁ ବେଦର ଅଙ୍କୁର । ବ୍ରହ୍ମାଙ୍କ ମନରେ 'କ'ଣ କରିବାକୁ ହେବ' ଏହି ଜିଜ୍ଞାସା ଉତ୍‌ଥିତ ହେବାରୁ ତାଙ୍କ ହୃଦୟାକାଶରେ ଏକ ଶବ୍ଦ ହେଲା । ସେ ଧ୍ୟାନସ୍ଥ ହୋଇ ସେହି ଶବ୍ଦକୁ ଶୁଣିଲେ । ସେହି ଶବ୍ଦରେ ଏକ ଧ୍ୱନ୍ୟାତ୍ମକ ବର୍ଣ୍ଣ ଉଚ୍ଚାରିତ ହେଉଥିଲା । ତାଙ୍କ ହୃଦୟାକାଶରେ ଯେଉଁ ଶବ୍ଦ ଶୁଣା ଯାଇଥିଲା, ତାହା ନୂତନ ସୃଷ୍ଟ ନ ଥିଲା । ତାହା ଥିଲା ଅନାଦି, ଅନନ୍ତ ଓ ସର୍ବବ୍ୟାପକ । କେବଳ ଏକାଗ୍ରଚିତ୍ତ ହୋଇଥିବାରୁ ସେ ତାହା ଉତ୍ତମରୂପେ ଅନୁଭବ କରିଥିଲେ ଓ ଗ୍ରହଣ କରିଥିଲେ । ଆଜି ମଧ୍ୟ କେହି ଯଦି ନିଜର ଦୁଇକାନକୁ ଜୋରରେ ଚାପିଧରି ଶୁଣେ, ତାହାହେଲେ ସେ ସାଇଁ ସାଇଁ ଅବ୍ୟକ୍ତ ଶବ୍ଦ ଶୁଣି ପାରିବେ । ବ୍ରହ୍ମା ସେହି ଶବ୍ଦକୁ ସର୍ବପ୍ରଥମେ ଶୁଣିଥିଲେ । ସେହି ଶବ୍ଦର ନାମ ଅନାହଦ୍ ନାଦ । ଅନାହଦ୍ ଉପାସନାକାରୀ ଯୋଗୀଗଣ ନିଜ ଅନ୍ତଃକରଣର ଦ୍ରବ୍ୟ, କ୍ରିୟା ଓ କାରକରୂପୀ ମଳକୁ ତାହାଦ୍ୱାରା ନଷ୍ଟ କରି ପରମପଦ ଲାଭ କରନ୍ତି । ସେମାନେ ଚିରଦିନ ପାଇଁ ଜନ୍ମ-ମରଣ ବନ୍ଧନରୁ ବିମୁକ୍ତ ହୋଇ ଅପୁନର୍ଭବରୂପକ ମୋକ୍ଷସୁଖ ଅନୁଭବ କରନ୍ତି ।

"ବ୍ରହ୍ମା ଧ୍ୟାନପୂର୍ବକ ସେହି ନାଦରେ ନିଜର ଚିତ୍ତବୃତ୍ତିକୁ ଲଗାଇଲେ । ଅତ୍ୟନ୍ତ ସୂକ୍ଷ୍ମବୃତ୍ତିରେ ମନକୁ ନିଯୋଗ କରିବାରୁ ତହିଁରୁ ତିନିମାତ୍ରାବିଶିଷ୍ଟ ଏକ ଶବ୍ଦ ସୂକ୍ଷ୍ମରୂପେ ଶୁଣାଗଲା । ମନୀଷୀଗଣ ତାହାକୁ ହିଁ ପ୍ରଣବ ବା ଓଁକାର କହନ୍ତି ।

ଶୌନକ ପଚାରିଲେ—"ହେ ସୂତ ! **ପରମାତ୍ମା କାହାକୁ କହନ୍ତି ?"**

ଏହା ଶୁଣି ସୂତ ହସି ହସି କହିଲେ—"ବ୍ରହ୍ମନ୍ ! ଆପଣ ତ ସମୟ ସମୟରେ ପିଲାଙ୍କ ଭଳି ପ୍ରଶ୍ନ ପଚାରୁଛନ୍ତି । ମୁଁ ଜାଣେ ଯେ, ଗୋଟିଏ ପ୍ରଶ୍ନକୁ ଆପଣ ବାରମ୍ବାର ପଚାରନ୍ତି କେବଳ ଲୋକକଲ୍ୟାଣ ଉଦ୍ଦେଶ୍ୟରେ । ଏହାଦ୍ୱାରା ସର୍ବସାଧାରଣ ବିଷୟଟିକୁ ଉତ୍ତମରୂପେ ବୁଝିପାରିବେ । ଆଚ୍ଛା, ଆପଣ କୁହନ୍ତୁ ତ, ଆପଣ କେଉଁଥିରେ ଶବ୍ଦ ଶୁଣନ୍ତି ?"

ଶୌନକ କହିଲେ—"ଏହା ତ ପ୍ରତ୍ୟକ୍ଷ ପ୍ରମାଣ ଯେ, ଶ୍ରବଣେନ୍ଦ୍ରିୟଦ୍ୱାରା ଶବ୍ଦ ଶୁଣାଯାଏ ।"

ସୂତ ପଚାରିଲେ—"ଯଦି ଶ୍ରବଣେନ୍ଦ୍ରିୟଦ୍ୱାରା ଶବ୍ଦ ଶୁଣାଯାଏ, ତାହାହେଲେ ଶୋଇଥିବା ସମୟରେ କାହିଁକି ଶବ୍ଦ ଶୁଣାଯାଏ ନାହିଁ ?"

ଶୌନକ କହିଲେ—"ସେହି ସମୟରେ ଶ୍ରବଣଶକ୍ତି ଲୀନ ହୋଇ ଯାଇଥାଏ ।"

ସୂତ କହିଲେ—"ମହାରାଜ ! ଶ୍ରବଣଶକ୍ତି ଯଦି ଲୀନ ହୋଇଯାଏ, ତାହାହେଲେ ତ ପୁଣି କେତେବେଳେ ଆଉ ଶୁଣି ହେବ ନାହିଁ, କିନ୍ତୁ ଅଧିକ ଶବ୍ଦ କରି ଡାକିଲେ ଶୋଇଥିବା

ଲୋକ ମଧ୍ୟ ଶୁଣିପାରେ, କାରଣ ଶ୍ରବଣେନ୍ଦ୍ରିୟ ତ ଶୋଇବା ସମୟରେ ନିଷ୍କ୍ରିୟ ହୋଇଥାଏ, ଗାଢ଼ ନିଦ୍ରାରେ ମନ ମଧ୍ୟ ଲୀନ ହୋଇଯାଏ, କିନ୍ତୁ ଏହି ଶରୀରରୂପ କ୍ଷେତ୍ରର କ୍ଷେତ୍ରଜ୍ଞ ଅଛନ୍ତି । ସେହି କ୍ଷେତ୍ରଜ୍ଞଙ୍କଠାରେ ଏ ସବୁ ଯାଇ ଲୀନ ହୁଅନ୍ତି । କିନ୍ତୁ ସେ ତ ସର୍ବଦା ଜାଗ୍ରତ । ଆପଣ କାନକୁ ଜୋରକରି ବନ୍ଦକରି ଧରନ୍ତୁ, ସେତେବେଳେ ଆପଣଙ୍କୁ ଅନ୍ୟକୌଣସି ବାହାର କଥା ଶୁଭିବ ନାହିଁ, କିନ୍ତୁ ଏହି ଅବ୍ୟକ୍ତ ଓଁକାର ଧ୍ୱନି ନିଶ୍ଚିତ ଭାବରେ ଶୁଣାଯିବ । ଯିଏ ଏହି ଓଁକାର ଧ୍ୱନିକୁ ଶୁଣନ୍ତି, ସୁଷୁପ୍ତି ଅବସ୍ଥାରେ ସମସ୍ତ ଇନ୍ଦ୍ରିୟ ନିଷ୍କ୍ରିୟ ରହୁଥିଲେ ମଧ୍ୟ ଯିଏ ସେ ସବୁର ଅଭାବକୁ ଗ୍ରହଣ କରନ୍ତି, ସେହି ହିଁ ପରମାତ୍ମା । ପରମାତ୍ମା ହେଉଛନ୍ତି ବାଚ୍ୟ ଓ ଓଁ-କାର ତାଙ୍କର ବାଚକ । ହୃଦୟାକାଶରେ ଆତ୍ମା ହିଁ ଓଁ-କାର ରୂପରେ ଅଭିବ୍ୟକ୍ତ ହୁଅନ୍ତି । ଏହି ଓଁ-କାରରେ ବୈଖରୀ ବାଣୀ ଅଭିବ୍ୟଞ୍ଜିତ ହୁଏ । ଏହି ଓଁ-କାର ତ୍ରିବର୍ଣ୍ଣାତ୍ମକ ।''

ଶୌନକ ପଚାରିଲେ—''ହେ ସୂତ ! **ଓଁ-କାରରେ ତିନିବର୍ଣ୍ଣ କେଉଁ କେଉଁ ବର୍ଣ୍ଣର ସମଷ୍ଟି ଓ ସେହି ତିନି ବର୍ଣ୍ଣର ଭାବ କ'ଣ ?''**

ସୂତ କହିଲେ—''ମହାରାଜ ! ଏ ସମଗ୍ର ସୃଷ୍ଟି ହିଁ ତ୍ରିଗୁଣାତ୍ମକ, ତିନିଗୁଣ ସାହାଯ୍ୟରେ ହିଁ ଏ ପ୍ରପଞ୍ଚ ସୃଷ୍ଟି ଚାଲିଅଛି । ଓଁ-କାରରେ ସର୍ବପ୍ରଥମେ 'ଅ'କାର, ତାହାପରେ 'ଉ'କାର ଓ ଶେଷରେ 'ମ'କାର ରହିଛି । ଅ, ଉ, ମ ଏହି ତିନିବର୍ଣ୍ଣ ମିଳିତ ହୋଇ ଓଁ-କାରର ସୃଷ୍ଟି । ଏଥିରେ 'ଅ'କାର ସତ୍ତ୍ୱଗୁଣ, 'ଉ'କାର ରଜୋଗୁଣ ଓ 'ମ'କାର ତମୋଗୁଣ ଅଟନ୍ତି । 'ଅ'କାର ବାସୁଦେବ, 'ଉ'କାର କମଳାସନ ବ୍ରହ୍ମା ଓ 'ମ'କାର ସ୍ୱୟଂ ରୁଦ୍ର ଅଟନ୍ତି । 'ଅ'କାର ଋଗ୍‌ବେଦ, 'ଉ'କାର ଯଜୁର୍ବେଦ ଓ 'ମ'କାର ସାମବେଦ ଅଟନ୍ତି । 'ଅ'କାର ଭୂଲୋକ, 'ଉ'କାର ଭୁବର୍ଲୋକ ଓ 'ମ'କାର ସ୍ୱର୍ଲୋକ ଅଟେ । 'ଅ'କାର ଜାଗ୍ରତ, 'ଉ'କାର ସ୍ୱପ୍ନ ଓ 'ମ'କାର ସୁଷୁପ୍ତି ଅବସ୍ଥା ଅଟେ । ଏହିପରି ଅନେକ ବ୍ୟାଖ୍ୟା ଅଛି, ଯାହା କି ଏଠାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଯେତେ ଗୁଣ, ନାମ, ବୃତ୍ତି, ଅର୍ଥ ତଥା ଅନ୍ୟ ଯାହାସବୁ ଅଛି, ସେ ସମସ୍ତ ତ୍ରିଗୁଣାତ୍ମକ । ଏହି ସମସ୍ତ ତ୍ରିଗୁଣାତ୍ମକ ତତ୍ତ୍ୱ ଓଁ-କାର ମଧ୍ୟରେ ହିଁ ସମାବେଶ ହୋଇଯାଏ । ଏହି ଓଁ-କାରରୁ ଉଷ୍ମ, ସ୍ୱର, ସ୍ପର୍ଶ, ହ୍ରସ୍ୱ ତଥା ଦୀର୍ଘ ସମସ୍ତ ବର୍ଣ୍ଣର ଉତ୍ପତ୍ତି । ସ୍ୱର, ବ୍ୟଞ୍ଜନ, ମାତ୍ରା ଆଦି ଯେତେ ବର୍ଣ୍ଣ ରହିଛି, ସେ ସମସ୍ତର ଜନକ ହେଉଛି ଓଁ-କାର ।

ଶୌନକ ପଚାରିଲେ—''ହେ ସୂତ ! ଅକ୍ଷରଗୁଡ଼ିକର ସଂଜ୍ଞା ସବୁ କ'ଣ ?''

ସୂତ କହିଲେ—''ଭଗବନ୍ ! ଯ, ର, ଲ, ବ ଏହି ଚାରିଟିକୁ ଅନ୍ତସ୍ଥ କୁହାଯାଏ । ଶ, ଷ, ସ ଓ ହ ଏହା ଉଷ୍ମ ବର୍ଣ୍ଣ । ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ୡ, ଏ, ଐ, ଓ, ଔ, ଅଂ ଓ ଅଃ ଏହି ଷୋହଳଟି ସ୍ୱରବର୍ଣ୍ଣ । କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ଡ, ଢ଼, ଣ, ତ, ଥ, ଦ, ଧ, ନ ଏବଂ ପ, ଫ, ବ, ଭ ଓ ମ ଏଗୁଡ଼ିକ ସ୍ପର୍ଶ ସଂଜ୍ଞକ । ସ୍ୱରବର୍ଣ୍ଣ ମଧ୍ୟରେ ହ୍ରସ୍ୱ ଓ ଦୀର୍ଘ ଦୁଇ ଭେଦ । ହ୍ରସ୍ୱ ସହ ଦୀର୍ଘ ଉଚ୍ଚାରଣ କରିବା ପାଇଁ ଦ୍ୱିଗୁଣ ସମୟ ଲାଗେ । ସ୍ୱର ଓ ବ୍ୟଞ୍ଜନ ସବୁକୁ ମିଳାଇ ବର୍ଣ୍ଣମାଳା କୁହାଯାଏ । ଏହି ଅକ୍ଷରମାନଙ୍କଦ୍ୱାରା ହିଁ କମଳଯୋନି ବ୍ରହ୍ମା ଯଜ୍ଞର ସମସ୍ତ ବସ୍ତୁର ସଂଜ୍ଞା ନିରୂପଣ କରିଛନ୍ତି । ସେ ନିଜର ଚତୁର୍ମୁଖରେ ହୋତା, ଅଧ୍ୱର୍ଯ୍ୟୁ, ଉଦ୍‌ଗାତା ଓ ବ୍ରହ୍ମା ଚାରି ଋତ୍ୱିକ୍‌ଙ୍କର କର୍ମ ବତାଇବା ପାଇଁ ସମସ୍ତ କର୍ମର ବିଧିବିଧାନ ପ୍ରବର୍ତ୍ତନ କରିଛନ୍ତି । ମରୀଚି ଆଦି (ନିଜ ପୁତ୍ର) ବ୍ରହ୍ମର୍ଷିମାନଙ୍କୁ ବ୍ୟାହୃତି ଓଁକାର ସହିତ ଚାରିବେଦ ପଢ଼ାଇଛନ୍ତି । ଏମାନେ ଚାରିବେଦ ଅଧ୍ୟୟନରେ ପରମ ପ୍ରବୀଣ ଥିଲେ । ବ୍ରହ୍ମାଙ୍କ ନିକଟରୁ ବେଦ ଶିକ୍ଷା କରିଥିବାରୁ ସେହି ଧର୍ମୋପଦେଷ୍ଟା ମହାମୁନିଶ୍ୱରଗଣ ସେହି ବେଦକୁ ନିଜ ପୁତ୍ର, ତଥା ଶିଷ୍ୟମାନଙ୍କୁ ସବିଧି ଶିକ୍ଷା ଦେଇଥିଲେ ।

ପୁନଶ୍ଚ ସେମାନେ ନିଜର ପୁତ୍ର ତଥା ଶିଷ୍ୟମାନଙ୍କୁ ବେଦ ପଢ଼ାଇଥିଲେ । ଏହିପରି ପରମ୍ପରାକ୍ରମେ ବେଦର ପ୍ରଚାର ହୋଇଥିଲା । ଏହି ବେଦ ଅଧ୍ୟୟନକାରୀ ଋଷିମହର୍ଷିଗଣ ସଦାଚାରୀ ଥିଲେ । ବ୍ରହ୍ମଚର୍ଯ୍ୟ ବ୍ରତ ପାଳନକରି ଏମାନେ ବେଦ ଅଧ୍ୟୟନ କରୁଥିଲେ । ସମାଧି ଅବସ୍ଥାରେ ଏମାନଙ୍କର ମନ୍ତ୍ରବୋଧ ହୋଇଥିଲା । ଏହି ମନ୍ତ୍ରଦ୍ରଷ୍ଟା ଋଷିଗଣ ଏହିପରି ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗରେ ବେଦର ବହୁ ବିସ୍ତାର କରିଥିଲେ ।

ଶୌନକ ପଚାରିଲେ—''ହେ ସୂତ ! ବେଦକୁ ବିଭାଜନ କରିବାର ଆବଶ୍ୟକତା କାହିଁକି ପ୍ରତୀତ ହେଲା ?''

ସୂତ କହିଲେ—''ମହାରାଜ ! ବେଦର ବିସ୍ତାର ତ ବହୁତ ହୋଇଛି, କାରଣ ଜ୍ଞାନର କୌଣସି ସୀମା ନାହିଁ । ତାହା ଅପାର । ବେଦ ଏତେ ବିସ୍ତାରିତ ହୋଇଗଲା ଯେ, ତାହା ସମସ୍ତେ ଧାରଣ କରିବାରେ ଅସମର୍ଥ ହେଲେ । କାଳକ୍ରମେ ମନୁଷ୍ୟର ଲକ୍ଷେ ବର୍ଷର ଆୟୁ କମି କମି ଆସିଲା । ଲୋକମାନେ ଅଳ୍ପାୟୁ ହେଲେ । ସେମାନଙ୍କର ସ୍ମରଣଶକ୍ତି ମଧ୍ୟ କମି ଆସିଲା । ବୀର୍ଯ୍ୟ, ପରାକ୍ରମ କମି ଆସିବାରୁ ସମସ୍ତେ ଅଳ୍ପବୀର୍ଯ୍ୟ ହେବାକୁ ଲାଗିଲେ । ମହର୍ଷିମାନେ ଯେତେବେଳେ ଦେଖିଲେ, ଲୋକମାନେ ମନ୍ଦଗତି, ଅଳ୍ପାୟୁ, ଅଳ୍ପବୀର୍ଯ୍ୟ ହୋଇ ଯାଉଛନ୍ତି, ସେତେବେଳେ ସେମାନେ ହୃଦୟସ୍ଥିତ ସର୍ବାନ୍ତର୍ଯ୍ୟାମୀ ସର୍ବେଶ୍ୱରଙ୍କ ପ୍ରେରଣାରେ ବେଦର ପୃଥକ୍ ପୃଥକ୍ ବିଭାଗ କରିଦେଲେ । ଯେଉଁ ଋଷି ବେଦର ବିଭାଗ ବା ବ୍ୟାସ କଲେ, ତାଙ୍କୁ ବେଦବ୍ୟାସ କୁହାଗଲା । ପ୍ରତ୍ୟେକ ଦ୍ୱାପର ଯୁଗର ଶେଷରେ ବେଦବ୍ୟାସ ଆବିର୍ଭାବ ହୋଇ ଏହି କାର୍ଯ୍ୟ ସମ୍ପାଦନ କରନ୍ତି ।''

ଶୌନକ ପଚାରିଲେ—''ହେ ସୂତ ! ବ୍ୟାସ ଦ୍ୱାପର ଯୁଗ ଶେଷରେ କାହିଁକି ଆବିର୍ଭାବ ହୁଅନ୍ତି ?''

ସୂତ କହିଲେ—''ମହାରାଜ ! ଏହାର ପ୍ରକୃତ କାରଣ ହେଲା, ଦ୍ୱାପର ପର୍ଯ୍ୟନ୍ତ ତ ଲୋକମାନଙ୍କର ସ୍ମରଣଶକ୍ତି ଖୁବ୍ ଭଲ ରହେ । ସେ ପର୍ଯ୍ୟନ୍ତ ବେଦର ବ୍ୟାସଙ୍କ ଆବଶ୍ୟକତା ଅନୁଭବ ହୁଏ ନାହିଁ । ଆବଶ୍ୟକତା ହିଁ ଆବିଷ୍କାରର ଜନନୀ । ଯେତେବେଳେ ସମ୍ପୂର୍ଣ୍ଣ ବେଦକୁ ସ୍ମରଣ ରଖିବାରେ ଲୋକ ଅସମର୍ଥ ହୁଅନ୍ତି, ସେତେବେଳେ ବେଦର ବିଭାଗ କରାଯାଏ । ପୁରାଣ ସଂଗ୍ରହ କରି ତାକୁ ମଧ୍ୟ ପୃଥକ୍ ପୃଥକ୍ ଭାଗରେ ବିଭକ୍ତ କରାଯାଏ । ଏଥିପାଇଁ ଋଷିମାନଙ୍କର କୌଣସି ବ୍ୟାସ ହୁଅନ୍ତି । ଏହି ଦ୍ୱାପର ଶେଷରେ ତ ସ୍ୱୟଂ ଭଗବାନ୍ ହିଁ ଅବତାର ଗ୍ରହଣ କରି ବେଦର ବ୍ୟାସ ଓ ପୁରାଣର ବିଭାଗ କରିଥିଲେ । ଯେତେବେଳେ ଏହି ମନ୍ୱନ୍ତରରେ ବ୍ରହ୍ମାଦି ଦେବଗଣ, ଶଙ୍କରଆଦି ଲୋକପାଳଗଣ ପରାତ୍ପର ପ୍ରଭୁଙ୍କୁ ପ୍ରାର୍ଥନା କଲେ, ସେତେବେଳେ ଲୋକଭାବନ ଭଗବାନ୍ ଧର୍ମରକ୍ଷା ନିମିତ୍ତ ନିଜର ଅଂଶାଂଶ କଳାରେ ଭଗବତୀ ସତ୍ୟବତୀଙ୍କ ଗର୍ଭରେ ମହର୍ଷି ପରାଶରଙ୍କ ଔରସରେ ଉତ୍ପନ୍ନ ହୋଇ ପାରାଶର୍ଯ୍ୟ ନାମରେ ବିଖ୍ୟାତ ହେଲେ । ସେହି ପାରାଶର୍ଯ୍ୟ ଏକ ବେଦକୁ ଚାରି ଭାଗରେ ବିଭକ୍ତ କରି ଚାରି ସଂହିତା କଲେ ।

ଶୌନକ ପଚାରିଲେ—''ହେ ସୂତ ! ଏହି ଚାରି ବିଭାଗ କ'ଣ ସର୍ବଥା ପୃଥକ୍ ?''

ସୂତ କହିଲେ—''ନା ମହାରାଜ ! ପୃଥକ୍ କାହିଁକି ହେବ ? ତାହା ଏକ । ଯେପରି କୌଣସି ମଣିମାଳାରେ ନାନା ଜାତିର ମଣି ରହିଥାଏ, କେଉଁଟି ଲାଲ ତ କେଉଁଟି ନୀଳବର୍ଣ୍ଣ, କେଉଁଟି ସ୍ଫଟିକ ତ ପୁନଶ୍ଚ କେଉଁଟି ହୀରା ଓ କେଉଁଟି ନୀଳା । ବୁଦ୍ଧିମାନ୍ ରତ୍ନଚିହ୍ନିବା ଲୋକ ସମସ୍ତ ମଣିକୁ ମାଳାରୁ ବାହାର କରି କେବଳ ଲାଲରଙ୍ଗର ରତ୍ନଗୁଡ଼ିକୁ ଏକତ୍ର କରିଦିଏ

ଓ ନୀଳରଙ୍ଗର ରତ୍ନକୁ ଏକତ୍ର କରି ପୃଥକ୍ ମାଳା କରିଦିଏ । ଯଦିଓ ସେ ନିଜ ପକ୍ଷରୁ ସେଥିରେ କୌଣସି ମଣି ମିଶାଏ ନାହିଁ, ସେହି ଅସଂବଦ୍ଧ ମଣିଗୁଡ଼ିକୁ ଯଥା କ୍ରମରେ ସୁନ୍ଦର ଭାବରେ ପୃଥକ୍ ପୃଥକ୍ ସୂତାରେ ଗୁନ୍ଥିଦିଏ । ଏପରି ଭାବରେ ଭଗବାନ୍ ବ୍ୟାସ ବୈଦିକମନ୍ତ୍ରସମୂହ ମଧ୍ୟରୁ ଭିନ୍ନ ଭିନ୍ନ ପ୍ରକରଣଦ୍ୱାରା ଋକ୍ ଆଦିରେ ମନ୍ତ୍ରଗୁଡ଼ିକୁ ପୃଥକ୍ କରି ତାହାର ନାମ ଋଗ୍‌ବେଦ ସଂହିତା ରଖିଲେ । ଯଜ୍ଞ କରିବାର ମନ୍ତ୍ରକୁ ପୃଥକ୍ କରି ତାହାର ନାମ ଯଜୁର୍ବେଦ ରଖିଲେ । ଗାନ କରିବାର ମନ୍ତ୍ରକୁ ପୃଥକ୍ କରି ସାମବେଦ ଓ ଯେତେ ମାରଣ, ମୋହନ, ଉଚ୍ଚାଟନ ଆଦି ଅଭିଚାର ମନ୍ତ୍ର ଥିଲା, ସେଗୁଡ଼ିକୁ ପୃଥକ୍ କରି ତାହାକୁ ଅଥର୍ବବେଦ ସଂହିତା ନାମ ଦେଲେ ।

''ଚାରିବେଦ ପାଠ କରିବା ପାଇଁ ସେ ନିଜର ଚାରିଶିଷ୍ୟଙ୍କୁ ଡାକି ସେମାନଙ୍କ ମଧ୍ୟରୁ ମହାମୁନି ପୈଲଙ୍କୁ ବହୁ ଋଚାବିଶିଷ୍ଟ ବହ୍ୱୃଚ ସଂହିତା ଅର୍ଥାତ୍ ଋଗ୍‌ବେଦ ସଂହିତା ଦେଲେ । ଅନ୍ୟ ଶିଷ୍ୟ ମହାମୁନି ବୈଶମ୍ପାୟନଙ୍କୁ ଯଜୁର୍ବେଦ ସଂହିତା ଦେଲେ । ଯେଉଁ ଛନ୍ଦ ଗାୟନ ହେଉଥିଲା ଏ ପ୍ରକାର ଛନ୍ଦବିଶିଷ୍ଟ ସାମଶ୍ରୁତିଗୁଡ଼ିକର ଛନ୍ଦୋଗ ସଂହିତା ଜୈମିନୀ ମୁନିଙ୍କୁ ପାଠ କରିବାକୁ ଦେଲେ ଓ ଘୋର ସ୍ୱଭାବବିଶିଷ୍ଟ ଅତ୍ୟନ୍ତ ଦାରୁଣ ସୁମନ୍ତୁ ମୁନିଙ୍କୁ ଅଥର୍ବାଙ୍ଗିରସୀ ସଂହିତା ଶୁଣାଇଲେ । ଏହିପରି ଭାବରେ ମହାମୁନି ବ୍ୟାସଙ୍କର ଚାରି ମହାବୁଦ୍ଧିମାନ୍ ଶିଷ୍ୟ ଚାରି ସଂହିତାକୁ ଧାରଣ କଲେ । ଏହି ଚାରିଜଣ ମଧ୍ୟ ସେମାନଙ୍କର କେତେକ ଶାଖା ଗଠନ କରି ତାହା ନିଜ ନିଜର ଶିଷ୍ୟମାନଙ୍କୁ ପଢ଼ାଇଲେ ।''

ଏହା ଶୁଣି ଶୌନକ ପଚାରିଲେ—''ହେ ସୂତ ! ଏହି ପୈଲ, ବୈଶମ୍ପାୟନ, ଜୈମିନୀ ଓ ସୁମନ୍ତୁ ନାମକ ବ୍ୟାସଶିଷ୍ୟଗଣ କେଉଁ କେଉଁ ମୁନିଙ୍କୁ ଏ ସବୁ ସଂହିତା ପଢ଼ାଇଥିଲେ ?''

ସୂତ କହିଲେ—''ବ୍ରହ୍ମନ୍ ! ଯହୁଁ ଯହୁଁ ଲୋକମାନଙ୍କର ସ୍ମରଣଶକ୍ତି କ୍ରମଶଃ ହ୍ରାସ ପାଇବାକୁ ଲାଗିଲା, ବେଦର ଶାଖା ତହୁଁ ତହୁଁ ବୃଦ୍ଧି ପାଇବାକୁ ଲାଗିଲା । ଋଗ୍‌ବେଦର ଆଚାର୍ଯ୍ୟ ପୈଲ ନିଜର ସଂହିତାକୁ ଦୁଇଭାଗରେ ବିଭକ୍ତ କରି ଇନ୍ଦ୍ରପ୍ରାମିତି ଓ ବାଷ୍କଳ ନାମକ ଦୁଇ ମୁନିଙ୍କୁ ଦେଇଥିଲେ । ତାଙ୍କ ମଧ୍ୟରୁ ଆତ୍ମଜ୍ଞାନୀ ମହାମୁନି ଇନ୍ଦ୍ରପ୍ରାମିତି ନିଜର ସଂହିତା ପରମ ବୁଦ୍ଧିମାନ୍ ମହାମୁନି ମାଣ୍ଡୁକେୟଙ୍କୁ ପଢ଼ାଇଥିଲେ । ମାଣ୍ଡୁକେୟ ମୁନି ନିଜର ଶିଷ୍ୟ ଦେବମିତ୍ରଙ୍କୁ ତାହା ପଢ଼ାଇଥିଲେ ଓ ବେଦମିତ୍ର ତାହା ମହର୍ଷି ସୌଭରିଙ୍କୁ ଶୁଣାଇଥିଲେ ।''

ଶୌନକ ପଚାରିଲେ—''ହେ ସୂତ ! ଏ ସୌଭରି ଆଦି ମୁନି ତ ସତ୍ୟଯୁଗରେ ଥିଲେ, ସେମାନେ ଦ୍ୱାପର ଯୁଗ ଶେଷରେ ଋଗ୍‌ବେଦର ଶାଖାଗୁଡ଼ିକୁ କାହିଁକି ଅଧ୍ୟୟନ କରିଥିଲେ ?''

ସୂତ କହିଲେ—''କାହିଁକି, ମହାରାଜ ! ଏଥିରେ କ୍ଷତି କ'ଣ ହେଲା ? ଶାଖାଗୁଡ଼ିକର କର୍ତ୍ତା ତ ଋଷିଗଣ ହିଁ ହୋଇଥାଆନ୍ତି । ସେହିମାନେ ହିଁ ନିଜ ନିଜର ଶିଷ୍ୟ ତଥା ପୁତ୍ରମାନଙ୍କୁ ଶାଖାଗୁଡ଼ିକ ଅଧ୍ୟୟନ କରିବାର ଆଦେଶ ଓ ଉପଦେଶ ଦିଅନ୍ତି । ଏହି ମୁନିଗଣ ତ କଳ୍ପଜୀବୀ ଅଟନ୍ତି । ଏମାନଙ୍କ ମଧ୍ୟରୁ କେହି କେହି ବି ବ୍ରହ୍ମାଙ୍କର ଆୟୁ ଭୋଗ କରୁଛନ୍ତି । ବେଦଗୁଡ଼ିକର ପ୍ରଚାର ଓ ପ୍ରସାର ହିଁ ଏମାନଙ୍କର ଧର୍ମ । ପୁନଶ୍ଚ ହେ ମହାରାଜ ! ଏକ ନାମଧାରୀ ବହୁତ ଋଷି ମଧ୍ୟ ଅଛନ୍ତି ।''

ଶୌନକ କହିଲେ—''ହଁ, ସୂତ ! ଆପଣ ଯାହା କହିଲେ ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଆମ୍ଭେମାନେ ତ ସତ୍ୟଯୁଗର ଅଟୁ ଓ ଆପଣଙ୍କଠାରୁ ପୁରାଣ ଶ୍ରବଣ କରୁଅଛୁ । ଆଚ୍ଛା, ଏବେ ପୈଲ ମୁନିଙ୍କର ଅନ୍ୟ ଶିଷ୍ୟ ବାଷ୍କଳଙ୍କର ଶିଷ୍ୟ ପରମ୍ପରା ଆମ୍ଭମାନଙ୍କୁ ଶୁଣାନ୍ତୁ ।''

ସୂତ କହିଲେ—"ମହାରାଜ ! ପୈଲ ମୁନିଙ୍କ ଦ୍ୱିତୀୟ ଶିଷ୍ୟ ବାଷ୍କଳ ନିଜର ସଂହିତାକୁ ଚାରିଭାଗ କଲେ ଓ ତାହା ନିଜର ଶିଷ୍ୟ ବୋଧ, ଯାଜ୍ଞବଲ୍କ୍ୟ, ପରାଶର ଓ ଅଗ୍ନିମିତ୍ର ଏହି ଚାରିଜଣଙ୍କୁ ପଢ଼ାଇଲେ । ପୁନଶ୍ଚ ଏହି ଚାରିଜଣ ମଧ୍ୟ ନିଜ ନିଜର ଶିଷ୍ୟ ପ୍ରଶିଷ୍ୟଙ୍କୁ ତାହା ଶୁଣାଇଥିଲେ । ଏହି ସମସ୍ତ ଋଗ୍‌ବେଦୀୟ ଋଷିଗଣଙ୍କୁ ବହ୍ବୃଚ କୁହାଯାଏ । ମହାମୁନି ଇନ୍ଦ୍ରପ୍ରାମିତିଙ୍କର ପରମ୍ପରା ଅନୁସାରେ ଯେଉଁ ମାଣ୍ଡୁକ୍ୟ ମୁନି ଥିଲେ, ସେ ନିଜରପୁତ୍ର ଶାକଲ୍ୟଙ୍କୁ ପଢ଼ାଇଥିଲେ । ଶାକଲ୍ୟ ମୁନିଙ୍କର ବାତ୍ସ୍ୟ, ମୁଦ୍‌ଗଳ, ଶାଳୀନ, ଗୋଖଲ୍ୟ ଓ ଶିଶିର ଏହି ପଞ୍ଚଶିଷ୍ୟ ଥିଲେ । ସେ ନିଜର ସଂହିତାକୁ ପାଞ୍ଚଭାଗ କରି ଏହି ପାଞ୍ଚଜଣଙ୍କୁ ପଢ଼ାଇଥିଲେ । ମହାମୁନି ଶାକଲ୍ୟଙ୍କର ଜାତକର୍ଣ୍ଣ୍ୟ ନାମକ ଜଣେ ଶିଷ୍ୟ ଥିଲେ । ସେ ନିଜର ସଂହିତାକୁ ତିନି ଭାଗରେ ବିଭକ୍ତ କରିଥିଲେ । ସେ ନିରୁକ୍ତ ସହିତ (ବ୍ୟାଖ୍ୟାନ ରୂପରେ) ନିଜର ଶିଷ୍ୟ ବଳାକ, ପୈଜ ଓ ବୈତାଳ ଏହି ତିନିଜଣଙ୍କୁ ତାହା ପ୍ରଦାନ କରିଥିଲେ ଏବଂ ନିରୁକ୍ତକୁ ବିରଜ ମୁନିଙ୍କୁ ଦେଇଥିଲେ । ପୈଲ ମୁନିଙ୍କର ଚାରିଶିଷ୍ୟଙ୍କ ବ୍ୟତୀତ ବାଲ୍‌କଲି ନାମକ ପୁତ୍ରଟିଏ ଥିଲା । ସେ ବାଳାଖିଲ୍ୟ ନାମକ ଏକ ଶାଖା ରଚନା କରିଥିଲେ । ତାହାକୁ ମଧ୍ୟ ସେ ତିନିଭାଗରେ ବିଭକ୍ତ କରିଥିଲେ ଓ ନିଜର ତିନିଶିଷ୍ୟ ବାଳାୟନି, ଭଜ୍ୟ ଏବଂ କାସାରଙ୍କୁ ପଢ଼ାଇଥିଲେ ।"

ଏହିପରି ଋଗ୍‌ବେଦର ଅନେକ ଶାଖା ହୋଇଅଛି । ଯେଉଁ ଋଷିମାନେ ଋଗ୍‌ବେଦର ଶାଖାଗୁଡ଼ିକୁ ଧାରଣ କରିଥିଲେ ସେମାନଙ୍କୁ ବହ୍ବୃଚ କୁହାଯାଏ । ପରେ ଏହି ଋଷିଙ୍କର ବଂଶ ପରମ୍ପରାରେ ଏହିସବୁ ଶାଖାକୁ ପ୍ରାଧାନ୍ୟ ଦିଆଯାଇ ପାଠ କରାଗଲା । ମନୁଷ୍ୟମାନେ ଏହି କଳିଯୁଗରେ ଏହି ଶାଖାଗୁଡ଼ିକୁ କିପରି ଅବା ପାଠ କରିବାକୁ କ୍ଷମସମ୍ପନ୍ନ ହୋଇପାରିବେ । ଏବେ ଗୋଟିଏ ଶାଖା ପାଠ କରିବା ଅତ୍ୟନ୍ତ କଠିନ ସମସ୍ୟା ହୋଇପଡ଼ିଛି । ଯେଉଁମାନେ ବେଦ ବା ବେଦର କୌଣସି ଶାଖାକୁ ଅଧ୍ୟୟନ କରନ୍ତି, ସେମାନଙ୍କର ତ ମୁକ୍ତି ହୋଇଯାଏ, କିନ୍ତୁ ଯେଉଁମାନେ ଅଧ୍ୟୟନ କରି ନପାରନ୍ତି, କେବଳ ଏହି ବେଦର ବିସ୍ତାରିତ ଶାଖାକୁ ଶ୍ରବଣ କରିନିଅନ୍ତି, ସେମାନେ ଶ୍ରବଣ କରିବା ମାତ୍ରେ ହିଁ ସେମାନଙ୍କର ସମସ୍ତ ପାପ ବିନାଶ ହୋଇଯାଏ ଓ ସେମାନେ ପରମପୁଣ୍ୟ ଅର୍ଜନ କରନ୍ତି । ମୁଁ ଅତି ସଂକ୍ଷେପରେ ଋଗ୍‌ବେଦର କେତେକ ଶାଖା ବିଷୟ ଆପଣମାନଙ୍କ ନିକଟରେ ବର୍ଣ୍ଣନା କଲି । ଏବେ ଯଜୁର୍ବେଦର ଶାଖାଗୁଡ଼ିକ ସମ୍ବନ୍ଧରେ କିଛି କହିବି । ଏହା ତ ଋଗ୍‌ବେଦୀୟ ପୈଲ ମୁନିଙ୍କର ପରମ୍ପରା ଥିଲା । ଏବେ ଯଜୁର୍ବେଦୀ ମହାମୁନି ବୈଶମ୍ପାୟନଙ୍କର ପରମ୍ପରା ବର୍ଣ୍ଣନା କରିବି । ଯଜୁର୍ବେଦ ଦୁଇଭାଗରେ ବିଭକ୍ତ, ଯଥା ଶୁକ୍ଳ ଯଜୁର୍ବେଦ ଓ କୃଷ୍ଣ ଯଜୁର୍ବେଦ । ବୈଶମ୍ପାୟନ ଓ ତାଙ୍କର ଶିଷ୍ୟ ଯାଜ୍ଞବଲ୍କ୍ୟଙ୍କ ମଧ୍ୟରେ କେତେକ କାରଣରୁ ବିବାଦ ସୃଷ୍ଟି ହୋଇଥିଲା । ଏହି ବିବାଦ କାରଣରୁ ଯଜୁର୍ବେଦର ବାଜସନେୟୀ ଶାଖା ସୂର୍ଯ୍ୟଦେବଙ୍କଦ୍ୱାରା ପ୍ରାପ୍ତ ହୋଇଥିଲା ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଗୁରୁଶିଷ୍ୟଙ୍କ ମଧ୍ୟରେ କାହିଁକି ଝଗଡ଼ା ହୋଇଥିଲା ଓ ବାଜସେନୟୀ ଶାଖା କିପରି ସୃଷ୍ଟି ହୋଇଥିଲା, ତାହାର କାରଣ ଆମ୍ଭମାନଙ୍କୁ ପ୍ରଥମେ ବୁଝାଇ କୁହନ୍ତୁ । ପଛେ ସାମବେଦ ଶାଖା ସମ୍ବନ୍ଧରେ କହିବେ ।"

ସୂତ କହିଲେ—"ମହାରାଜ ! ସେ ସମ୍ବନ୍ଧରେ ଅତ୍ୟନ୍ତ ରୋଚକ କାହାଣୀ ଅଛି, ସେହି କାହାଣୀରୁ ହିଁ ଆପଣମାନେ ସମସ୍ତ ରହସ୍ୟ ବୁଝି ପାରିବେ । ମୁଁ ତାହା ଆପଣମାନଙ୍କୁ କହୁଛି, ଆପଣମାନେ ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ ।"

ଷଟ୍‌ପଦୀ

ପାଇ ସଂହିତା ସକଳ ମୁନିନି ପୁନି ଶିଷ୍ୟ ବନାୟେ ।
କରି କରି ଶାଖା ପୃଥକ୍ ସବନି କୂଁ ମନ୍ତ୍ର ପଢ଼ାୟେ ॥
ଶିଷ୍ୟନି କେ ହୂ ଶିଷ୍ୟ ଭୟେ ବିସ୍ତାର ଭୟୋ ଅତି ।
ଶାଖା ସବ୍‌କୀ ପୃଥକ୍ ଭଇଂ ତିନିକୀ ତିନି ମେଂ ରତି ॥
ବୈଶମ୍ପାୟନ ଶିଷ୍ୟ ଇକ, ଯାଜ୍ଞବଲ୍‌କ୍ୟ ଅତି ତେଜୟୁତ ।
ଯଜୁର୍ବେଦ ମେଂ ଅତି ନିପୁଣ, ଦେବରାତ କୋ ସୌମ୍ୟ ସୁତ ॥



# ଯଜୁର୍ବେଦର ଦୁଇ ଶାଖା ହେବା କଥା

**ଯାଜ୍ଞବଲ୍‌କ୍ୟସ୍ତତୋ ବ୍ରହ୍ମଂଛନ୍ଦାଂସ୍ୟଧିଗବେଷୟନ୍ ।**
**ଗୁରୋରବିଦ୍ୟମାନାନି ସୂପତସ୍ଥେଽର୍କମୀଶ୍ୱରମ୍ ॥** ☆

(ଶ୍ରୀ ଭା: ୧୨ସ୍କ: ୬ଅ: ୬୬ଶ୍ଳୋକ)

ଷଟ୍‌ପଦୀ

ଅପର ଶିଷ୍ୟ ଇକ ଦିବସ କରୈ ବ୍ରତ ଗୁରୁହିତ ଦୁଷର ।
ଯାଜ୍ଞବଲ୍‌କ୍ୟ ନେ କହ୍ୟୋ— କରୈ କା ୟହ ବ୍ରତ ଗୁରୁବର ॥
ହୌଂ ତବ ହିତ ବ୍ରତ କରୁଁ ଅଲ୍ପ ବୀରଜ ୟହ ବାଲକ ।
ଭୟେ କୁପିତ ଗୁରୁଦେବ କହେଂ—ତୂ ଦ୍ୱିଜକୁଲ ଘାଲକ ॥
ମେରୀ ବିଦ୍ୟା ତ୍ୟାଗି ଦୈ, ତୂ ଅବ ମେରୋ ଶିଷ୍ୟ ନହିଁ ।
ଉଗିଲ ଦଇ ବିଦ୍ୟା ସକଲ, କଠିନ ବଚନ ନହିଁ ଗୟେ ସହି ॥

ବାଦ ବିବାଦର ଏକମାତ୍ର କାରଣ ହେଉଛି ଅହଂମନ୍ୟତା । ଯେତେବେଳେ ଉଭୟପକ୍ଷ ଲୋକ ନିଜ ନିଜକୁ କୌଣସି ସମାଧାନରେ ଉପନୀତ କରାଇ ପାରନ୍ତି ନାହିଁ, ସେତେବେଳେ ପରସ୍ପର ମଧ୍ୟରେ କଳହ ସୃଷ୍ଟି ହୁଏ । ଅହଂମାନ୍ୟତା ଏକପକ୍ଷରେ ହେଲେ

---

☆ ମୋ ଶିଷ୍ୟେ ଅମାନନା କଲୁ । ଆମ୍ଭାରେ ଗର୍ବ ତୁ ବହିଲୁ ॥
ଏଣୁ ତୁ ମୋହ ଠାରୁ ଯେତେ । ବେଦ ପଢ଼ିଲୁ ଅନୁମତେ ॥
ଏବେ ଏ ବେଦ ତୁହି ଛାଡ଼ । ଆନ ଠାବରେ ଯାଇ ପଢ଼ ॥
ତା ଶୁଣି ଯାଜ୍ଞବଲ୍‌କ୍ୟ ଡରେ । ଆନ ଠାବରେ ଯାଇ ପଢ଼େ ॥
ଗୁରୁଙ୍କ ଠାରୁ ନବତନ । ବେଦ ମୁଁ ପଢ଼ିବଇଁ ଧୁଣ ॥
ମେରୁ ପୃଷ୍ଠରେ ବସି ପୁଣ । ସୂର୍ଯ୍ୟଙ୍କୁ କଲେ ଉପାସନ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ.. ୭ମଅ.)

ପ୍ରାୟ କଳହ ହୋଇ ନଥାଏ, କେବଳ ମତଭେଦ ହୋଇଥାଏ । ଯଦି ଅହଂମନ୍ୟତା ଉପାସନାରେ ପରିଣତ ହୋଇଯାଏ, ତାହାହେଲେ ତାହାର ଫଳ ସୁନ୍ଦର ହୋଇଥାଏ । କାରଣ ଭଗବାନଙ୍କଠାରେ ଯେଉଁ ଭାବ ଲାଗିଯାଏ, ତାହାର ପରିଣାମ ସୁଖକର ହୋଇଥାଏ । ଲୋକେ ଅଭିମାନର ବଶୀଭୂତ ହୋଇ ପରସ୍ପର ପରସ୍ପରର ଅପକାର କରିବାକୁ ଉଦ୍ୟତ ହୋଇଯାଆନ୍ତି । ଏହା ଉଚିତ୍ ନୁହେଁ । ଅହଂକାର ଆସିଯାଇଥିଲେ ମଧ୍ୟ ତାହାକୁ ପୂର୍ଣ୍ଣ ବେଗରେ ପରମାତ୍ମାଙ୍କୁ ସମର୍ପଣ କରି ଦିଅନ୍ତୁ, ଦେଖିବେ ଭଗବାନ୍ ଅଶୁଦ୍ଧ ଭାବକୁ ମଧ୍ୟ ଶୁଦ୍ଧରେ ପରିଣତ କରିଦେବେ । ବିଗିଡ଼ି ଯାଇଥିବା ଚିନ୍ତାଧାରାକୁ ମଧ୍ୟ ସଜାଡ଼ି ଦେବେ ।

ସୂତ କହିଲେ—''ମୁନିଗଣ ! ଭଗବାନ୍ ବ୍ୟାସ ଯଜୁର୍ବେଦ ସଂହିତାକୁ ନିଜର ପ୍ରିୟ ଶିଷ୍ୟ ବୈଶମ୍ପାୟନ ମୁନିଙ୍କୁ ପଢ଼ାଇଥିଲେ । ସେହି ବୈଶମ୍ପାୟନ ମୁନି ଯଜୁର୍ବେଦ ପଢ଼ାଇବା ପାଇଁ ବହୁତ ଶିଷ୍ୟ ତାଙ୍କ ଆଶ୍ରମରେ ରଖିଥିଲେ । ସମସ୍ତେ ଅତ୍ୟନ୍ତ ମନଯୋଗ ସହକାରେ ଆଚାର୍ଯ୍ୟପ୍ରବର ମହର୍ଷି ବୈଶମ୍ପାୟନଙ୍କ ନିକଟରେ ଯଜୁର୍ବେଦ ଶ୍ରୁତିଗୁଡ଼ିକୁ ପଢ଼ିବାରେ ଲାଗିଲେ ।

''ଅନ୍ୟ ଯୁଗମାନଙ୍କରେ ତ ଜଣେ ଜଣେ ବ୍ୟକ୍ତି ଏତେ ଶକ୍ତିଶାଳୀ ହୋଇଥିଲେ ଯେ, ସେମାନଙ୍କୁ କାହାରି ସହାୟତା ବା ସଂଗଠନର ସହାୟତା ନେବାକୁ ପଡୁ ନଥିଲା । ସେମାନେ ନିଜ ନିଜର ଶକ୍ତିରେ ହିଁ ସବୁକିଛି କରି ପାରୁଥିଲେ । ଯେତେବେଳେ ମନୁଷ୍ୟର ଆତ୍ମିକଶକ୍ତିର ହ୍ରାସ ହୋଇଆସିଲା, ସେତେବେଳେ ସେମାନଙ୍କୁ ସଂଗଠନ ଓ ଅନ୍ୟର ମତ ସଂଗ୍ରହ କରିବାର ଦେଖାଗଲା । କଳିଯୁଗ ଆସିବାରୁ ମନୁଷ୍ୟମାନଙ୍କ ମଧ୍ୟରେ ପାପମାତ୍ରା ବଢ଼ିଗଲା ଓ ସେମାନେ ସ୍ୱତନ୍ତ୍ରଶକ୍ତି ହରାଇ ବସିଲେ । ବଂଶ ପରମ୍ପରାଗତ ସମସ୍ତ ଅଧିକାର ଛିନ୍ନ ହୋଇଗଲା । କୌଣସି ରାଜା ରହିଲେ ନାହିଁ । କିଛିବର୍ଷ ପାଇଁ ଅଳ୍ପମତି ଅଧର୍ମୀ ଲୋକମାନେ ନିଜ ମଧ୍ୟରୁ ନିର୍ବାଚିତ କରି କୌଣସି ପ୍ରଭାବଶାଳୀ ବ୍ୟକ୍ତିକୁ ଶାସକ ବା ଲୋକପ୍ରତିନିଧି କରିଦେଲେ । ଆବଶ୍ୟକସ୍ଥଳେ ପୁନଶ୍ଚ ତାଙ୍କୁ ସେହି ଉଚ୍ଚାସନରୁ ହଟାଇ ଦେଲେ । ଯେତେବେଳେ ବ୍ୟକ୍ତିର ଆତ୍ମଶକ୍ତି କ୍ଷୀଣ ହୋଇଯାଏ, ସେତେବେଳେ ସେମାନେ ସଂଘର ନିୟମ ଓ ବିଧାନର ଅଧୀନ ହୋଇଯାଆନ୍ତି । ଦ୍ୱାପରଯୁଗ ଶେଷ ବେଳକୁ ଯେତେବେଳେ ଲୋକମାନେ ସ୍ୱେଚ୍ଛାଚାରୀ ହେବାକୁ ଆରମ୍ଭ କରିଦେଲେ, ସେତେବେଳେ ସେମାନଙ୍କର ପ୍ରବୃତ୍ତି ଅଧର୍ମଆଡ଼କୁ ବଢ଼ିଲା । ମୁନିଋଷିମାନେ ଏହା ଦେଖି ସମସ୍ତେ ଏକତ୍ରିତ ହୋଇ ସୁମେରୁ ଶିଖରରେ ଏକ ଅଖିଳ ଭାରତୀୟ ଋଷି-ମୁନି ସମିତି ଗଠନ କଲେ । ସମସ୍ତ ବେଦଜ୍ଞ ଋଷିଙ୍କୁ ସଦସ୍ୟ କରିଦେଲେ । ପୂର୍ଣ୍ଣମୀ ତିଥିରେ ପ୍ରତି ମାସରେ ସେମାନଙ୍କର ମାସିକ ଅଧିବେଶନ ହେଉଥିଲା । ସେହି ଅଧିବେଶନରେ ପ୍ରତ୍ୟେକ ସଦସ୍ୟ-ମୁନିଋଷି ଯୋଗଦାନ କରୁଥିଲେ । ସେହି ସମିତିର ଏପରି ନିୟମ ହୋଇଥିଲା ଯେ, ଯିଏ ସେହି ଅଧିବେଶନରେ ଯୋଗ ଦାନ କରୁ ନଥିଲେ, ତାଙ୍କୁ ବ୍ରହ୍ମହତ୍ୟା ଦୋଷରେ ଦୋଷୀ ସାବ୍ୟସ୍ତ କରା ଯାଉଥିଲା ।''

''ମହାମୁନି ବୈଶମ୍ପାୟନ ମଧ୍ୟ ସେହି ସଭାର ସଦସ୍ୟ ଥିଲେ । ଏକ ଅଧିବେଶନ ଦିବସରେ ତାଙ୍କର ପିତୃଶ୍ରାଦ୍ଧ ଥିବାରୁ ଶ୍ରାଦ୍ଧଭଳି ଜରୁରୀ କାର୍ଯ୍ୟକୁ ଛାଡ଼ି ସେ ଅଧିବେଶନରେ ଯୋଗଦାନ କରିପାରିଲେ ନାହିଁ । ସମ୍ବାଦ ମଧ୍ୟ ପୂର୍ବରୁ ପଠାଇ ପାରିଲେ ନାହିଁ । ସେଦିନ ନିୟମାନୁସାରେ ସଭା ହେଲା । ବୈଶମ୍ପାୟନ ଅନୁପସ୍ଥିତ ରହିଥିବାରୁ ତାଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିଲା । ଦିନେ ସେ କୌଣସି କାରଣରୁ ତାଙ୍କ ଭଣଜା ଉପରେ ଅସନ୍ତୁଷ୍ଟ ହୋଇ ତାକୁ ଜୋରକରି ଦୁଇ ଚାପୁଡ଼ା ଦେବାରୁ ସେ ମୃତ୍ୟୁବରଣ କଲା । ଏବେ ତ ତାଙ୍କୁ ପ୍ରତ୍ୟକ୍ଷରେ ବ୍ରହ୍ମହତ୍ୟା ଦୋଷ ଲାଗିଲା ।

ଆଚାର୍ଯ୍ୟ ଅତ୍ୟନ୍ତ ଚିନ୍ତିତ ହେଲେ । ତାଙ୍କର କେତେକ ଛୋଟ ଛୋଟ ଶିଷ୍ୟ ଥିଲେ । ସେମାନଙ୍କୁ ସେ କହିଲେ—'ବାବୁ ! ମୋତେ ତ ବ୍ରହ୍ମହତ୍ୟା ଦୋଷ ଲାଗିଲା, ଏବେ ମୋର ଉପାୟ କ'ଣ ? ମୁଁ ଏବେ କ'ଣ କରିବି ?'

ବଟୁ ବାଳକମାନେ କହିଲେ—'ଭଗବନ୍ ! ଆପଣଙ୍କ ବଦଳରେ ଆମ୍ଭେମାନେ ବ୍ରହ୍ମହତ୍ୟାର ପ୍ରାୟଶ୍ଚିତ କରିବୁ ।' ସେମାନଙ୍କ ମଧ୍ୟରେ ଚରକାଧ୍ୱର୍ଯ୍ୟ ନାମକ ଏକ ଅତ୍ୟନ୍ତ ଗୁରୁଭକ୍ତ ଶିଷ୍ୟ ଥିଲା । ସେ କହିଲା—'ଗୁରୁଦେବ ! ଆପଣ କିଛି ଚିନ୍ତା କରନ୍ତୁ ନାହିଁ, ଆମେ ସମସ୍ତ ବିଧିବିଧାନରେ ପ୍ରାୟଶ୍ଚିତ କରିବୁ ।'

ଆଚାର୍ଯ୍ୟ କହିଲେ—''ଆଚ୍ଛା, ଠିକ୍ ଅଛି, ତୁମେସବୁ ମିଶି ସେହିପରି କର, ଯଦ୍ଦ୍ୱାରା କି ମୋର ବ୍ରହ୍ମହତ୍ୟା ପାପ ନିବୃତ୍ତ ହେବ ।''

ଏହି ଶିଷ୍ୟମାନଙ୍କ ମଧ୍ୟରେ ଯାଜ୍ଞବଲ୍କ୍ୟ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଥିଲେ । ତାଙ୍କର ବିଦ୍ୟାଭିମାନ ମଧ୍ୟ ଥିଲା । ଯେତେବେଳେ ସେ ଛୋଟ ଛୋଟ ସହପାଠୀମାନଙ୍କୁ ଗୁରୁଜୀଙ୍କ ନିମିତ୍ତ ବ୍ରହ୍ମହତ୍ୟା ନିବାରକ ବ୍ରତ କରିବା ପାଇଁ ଉଦ୍ୟତ ହେଉଥିବାର ଦେଖିଲେ, ସେତେବେଳେ ସେ କହିଲେ—'ଗୁରୁଦେବ ! ଆପଣ ଏ କ'ଣ କରିବାକୁ ଯାଉଛନ୍ତି ? ଏପରି ଛୋଟ ଛୋଟ ପିଲାଙ୍କଦ୍ୱାରା ଏତାଦୃଶ ଦୁଷ୍କର ବ୍ରତ କରାଉଛନ୍ତି ? ବ୍ରହ୍ମହତ୍ୟା ମହାପାପ । ପଞ୍ଚ ମହାପାପ ମଧ୍ୟରେ ଏହା ପ୍ରଧାନ ମହାପାପ, ଏହାର ନିବାରଣ ପାଇଁ ଦୁଷ୍କର ଘୋର ତପସ୍ୟା କରିବାକୁ ପଡ଼ିବ । ଏ ଅଳ୍ପବୀର୍ଯ୍ୟ ଛୋଟପିଲା କି ବ୍ରତ କରିବେ ? ମୋତେ ଆଜ୍ଞା ଦିଅନ୍ତୁ, ମୁଁ ଏକା ହିଁ ଏଥି ନିମିତ୍ତ ଘୋର ଦୁଷ୍କର ତପ କରିବି ।'

ଗୁରୁଙ୍କୁ ତ ବ୍ରହ୍ମହତ୍ୟା ଦୋଷ ଲାଗିଥିଲା, ଶିଷ୍ୟର ଏପରି ଅଭିମାନପୂର୍ଣ୍ଣ ବଚନ ଶୁଣି ସେ ଅତ୍ୟନ୍ତ କ୍ରୋଧ ପ୍ରକାଶ କଲେ । ସେ କୁପିତ ହୋଇ କହିଲେ—'ଆରେ ! ତୋ ଛୋଟ ମୁହଁରେ ତୁ ଏତେ ବଡ଼ ବଡ଼ କଥା କାହିଁକି କହୁଛୁ ? ତୁ ନିଜ ସମ୍ମୁଖରେ କାହିଁକି ସମସ୍ତଙ୍କୁ ଏତେ ତୁଚ୍ଛ ମନେକରୁଛୁ ? ଏହି ତପସ୍ୱୀ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ତୁ କିପରି ଅଳ୍ପବୀର୍ଯ୍ୟ ବୋଲି କହି ପାରୁଛୁ ? ଅଭିମାନରେ ତୁ ଏମାନଙ୍କୁ କାହିଁକି ଅପମାନିତ କରୁଛୁ ? ତୋ ପରି ଅଭିମାନୀଠାରେ ମୋର କୌଣସି ଆବଶ୍ୟକତା ନାହିଁ । ତୁ ମୋଠାରୁ ଅଧ୍ୟୟନ କରିଥିବା ବିଦ୍ୟା ସଙ୍ଗେ ସଙ୍ଗେ ତ୍ୟାଗକରି ଦେଇ ଏଠାରୁ ପଳାୟନ କର ।'

ସୂତ କହିଲେ—''ମୁନିଗଣ ! କ୍ରୋଧ ହିଁ ସକଳ ପାପର ମୂଳ । ଗୁରୁଙ୍କ କଥା ଶୁଣି ଯାଜ୍ଞବଲ୍କ୍ୟ ମୁନିଙ୍କର ମଧ୍ୟ କ୍ରୋଧ ଜାତ ହେଲା । ସେ ଚିନ୍ତା କଲେ—'ମୁଁ ତ ଗୁରୁଙ୍କ ପାଇଁ ଅତ୍ୟନ୍ତ ଦୁଷ୍କର ତପ କରିବାକୁ ଉଦ୍ୟତ ହୋଇଛି, କିନ୍ତୁ ଗୁରୁ ମୋତେ ତିରସ୍କାର କରୁଛନ୍ତି । ତେବେ ଠିକ୍ ଅଛି, ମୁଁ ମଧ୍ୟ ଏପରି କ୍ରୋଧୀ ଗୁରୁଙ୍କୁ ତ୍ୟାଗ କରୁଛି । ମୋର ଏପରି ଗୁରୁଙ୍କର ଆବଶ୍ୟକତା ନାହିଁ ।' ଏହା ଚିନ୍ତା କରି ସେ ଗୁରୁଙ୍କଠାରୁ ପଢ଼ିଥିବା ବିଦ୍ୟା ତ୍ୟାଗ କରିବା ପାଇଁ ଉଦ୍ୟତ ହେଲେ । ସେତେବେଳେ ସମସ୍ତଙ୍କର ବିଦ୍ୟା ଚୈତନ୍ୟ ତଥା ସଜୀବ ଥିଲା । ବେଦମନ୍ତ୍ର ସଜୀବ ଓ ମୂର୍ତ୍ତିମାନ୍ ହୋଇ ବ୍ରାହ୍ମଣଙ୍କ ଶରୀରରେ ବାସ କରୁଥିଲା । ଯେପରି କୌଣସି ବ୍ୟକ୍ତି ଖାଇଥିବା ଅନ୍ନକୁ ବାନ୍ତି କରିଦିଏ, ପାଟିରେ ଆଙ୍ଗୁଳି ପୂରାଇ ତାହା ବାହାର କରିପକାଏ, ସେହିପରି ଯାଜ୍ଞବଲ୍କ୍ୟ ମୁନି ଅଧ୍ୟୟନ କରିଥିବା ସମସ୍ତ ବିଦ୍ୟା ତ୍ୟାଗ କରିଦେଲେ । ସେହି ସଜୀବ ବେଦମନ୍ତ୍ରଗୁଡ଼ିକ ଉଇଙ୍କ ଭଳି ଅସଂଖ୍ୟ ଜାଜ୍ୱଲ୍ୟମାନ କୀଟ ଆକାରରେ ସେଠାରେ ସାଲୁ ସାଲୁ ହୋଇ ଚାଲିବାକୁ ଲାଗିଲେ । ମହାମୁନି ବୈଶମ୍ପାୟନ ଚିନ୍ତା କଲେ—'ଏହାତ ବଡ଼ ଅନର୍ଥର କାରଣ ହେବ । ଯଦି ଏ ସଜୀବ ତେଜୟୁକ୍ତ ବେଦମନ୍ତ୍ର କୌଣସି ଅନଧିକାରୀର ଅଧିକାରରେ ଆସିଯାଆନ୍ତି, ତାହାହେଲେ ତ ବଡ଼ ବିପତ୍ତି ଉପସ୍ଥିତ

ହେବ ।' ଏହା ଚିନ୍ତା କରି ସେ ନିଜର ଶିଷ୍ୟଙ୍କୁ କହିଲେ—'ଆରେ ! ତୁମ୍ଭେମାନେ ଦେଖୁଛ କ'ଣ, ଏହି ଜାଜ୍ୱଲ୍ୟମାନ ବେଦମନ୍ତ୍ରଗୁଡ଼ିକୁ ତୁମେ ସବୁ ଧାରଣ କରିନିଅ ।'

ସେହି ବଟୁ ବ୍ରାହ୍ମଣମାନେ ଚିନ୍ତା କଲେ—'ମୁଖରୁ ନିର୍ଗତ ହୋଇଥିବା ବସ୍ତୁକୁ ତ କୁକୁର ଖାଏ । ଏଥିପାଇଁ ଏହି ଶରୀରରେ ତ ଆମ୍ଭେମାନେ ଏହି ବାନ୍ତି ହୋଇଥିବା ବେଦମନ୍ତ୍ରକୁ ଗ୍ରହଣ କରିପାରିବା ନାହିଁ । ଏହି ବେଦମନ୍ତ୍ରଗୁଡ଼ିକ ଉଇ ପାଲଟି ଯାଇଛନ୍ତି । ଉଇଙ୍କୁ ମଧ୍ୟ ଏ ବ୍ରାହ୍ମଣ ଶରୀରରେ ଆମ୍ଭେମାନେ ଭକ୍ଷଣ କରି ପାରିବା ନାହିଁ । ଉଇଙ୍କୁ ସର୍ବଦା ତିତ୍ତିରପକ୍ଷୀ ଖାଏ, ଆମେ ସେହି ତିତ୍ତିରପକ୍ଷୀ ହୋଇଯାଇ କାହିଁକି ଏହି ଜାଜ୍ୱଲ୍ୟମାନ ବେଦମନ୍ତ୍ରଗୁଡ଼ିକୁ ନିଜ ନିଜର ହୃଦୟସ୍ଥ ନକରିବା ? ଏହିପରି ଚିନ୍ତା କରି ଶ୍ରୁତି ଲୋଭରେ ସମସ୍ତ ବଟୁବିପ୍ର ସେହି ଶ୍ରୁତିଗୁଡ଼ିକୁ ତିତ୍ତିରପକ୍ଷୀ ହୋଇ ଉଦରସ୍ଥ କଲେ । ଏଥିପାଇଁ ଏହି ଯଜୁର୍ବେଦର ସୁରମ୍ୟ ଶାଖା ତୈତ୍ତିରୀୟ ଶାଖା ନାମରେ ପ୍ରସିଦ୍ଧି ଲାଭ କରିଛି । ତାହା ଏ ପର୍ଯ୍ୟନ୍ତ ବିଦ୍ୟମାନ ରହିଛି ।''

ଶୌନକ ପଚାରିଲେ—''ହେ ସୂତ ! ତାହାହେଲେ କ'ଣ ଯାଜ୍ଞବଲ୍‌କ୍ୟ ମହାମୁନି ପୁନଶ୍ଚ ବେଦବିହୀନ ହୋଇଗଲେ ?''

ସୂତ କହିଲେ—''ନା ମହାରାଜ ! ବେଦବିହୀନ କାହିଁକି ହେବେ ? ସେ ତାଙ୍କର ପୁରୁଷାର୍ଥରେ ସୂର୍ଯ୍ୟଦେବଙ୍କଠାରୁ ଯଜୁର୍ବେଦର ଅନ୍ୟ ଶାଖା ପ୍ରାପ୍ତ ହେଲେ ।''

ଶୌନକ ପଚାରିଲେ—''ହେ ସୂତ ! ଯଜୁର୍ବେଦର ଆଚାର୍ଯ୍ୟ ତ ମହାମୁନି ବୈଶମ୍ପାୟନ ଥିଲେ । ଯଜୁର୍ବେଦର ସମସ୍ତ ଶ୍ରୁତି ତ ତାଙ୍କ ପାଖରେ ରହିଥିଲା, ଯାଜ୍ଞବଲ୍‌କ୍ୟ ମହାମୁନି ସୂର୍ଯ୍ୟଙ୍କଠାରୁ ଯଜୁର୍ବେଦର ଶାଖା କିପରି ପ୍ରାପ୍ତ ହେଲେ, କୃପାକରି ତାହା କହି ଆମ୍ଭମାନଙ୍କର ସଂଶୟ ମୋଚନ କରନ୍ତୁ ।''

ଏହା ଶୁଣି ସୂତ କହିଲେ—''ମହାରାଜ ! ବେଦ ତ ଅନନ୍ତ । ତାହାର ଶେଷସୀମା ତ ବେଦଗର୍ଭ ବ୍ରହ୍ମା ସ୍ଥିର କରିପାରି ନାହାନ୍ତି । ବେଦବ୍ୟାସ ସମସ୍ତ ଯଜୁର୍ବେଦର ଶ୍ରୁତିରୁ ବୈଶମ୍ପାୟନଙ୍କୁ ଅଳ୍ପ କେତେକ ପ୍ରଦାନ କରିଥିଲେ । ଅନନ୍ତ ବେଦରାଶି ମଧ୍ୟରୁ କେତେକ ମୁଖ୍ୟ ମୁଖ୍ୟ ଶ୍ରୁତି ନେଇ ଭଗବାନ ଦ୍ୱୈପାୟନ ବ୍ୟାସ ଚାରି ସଂହିତା ରଚନା କରିଥିଲେ । ଅନ୍ୟ ସମସ୍ତର ଭଣ୍ଡାର ତ ସମସ୍ତ କର୍ମର ସାକ୍ଷୀ ସୂର୍ଯ୍ୟଦେବଙ୍କ ନିକଟରେ ଥିଲା । ତାଙ୍କୁ ପ୍ରାର୍ଥନା କରି ଯାଜ୍ଞବଲ୍‌କ୍ୟ ସେହି ଶ୍ରୁତି ପ୍ରାପ୍ତ ହୋଇଥିଲେ, ଯାହାକି ବୈଶମ୍ପାୟନଙ୍କ ପାଖରେ ନଥିଲା ।''

ଶୌନକ ପଚାରିଲେ—''ହେ ସୂତ ! ଯାଜ୍ଞବଲ୍‌କ୍ୟ ମୁନି ସୂର୍ଯ୍ୟଙ୍କଠାରୁ କିପରି ଶ୍ରୁତି ପାଇଲେ, କୃପାକରି ଆମ୍ଭମାନଙ୍କୁ କହନ୍ତୁ ।''

ସୂତ କହିଲେ—''ମହାରାଜ ! ମହାମୁନି ଯାଜ୍ଞବଲ୍‌କ୍ୟ ଯେତେବେଳେ ନିଜ ଗୁରୁଙ୍କ ପ୍ରଦତ୍ତ ବିଦ୍ୟାକୁ ପରିତ୍ୟାଗ କରି ଗୁରୁଙ୍କ ଆଜ୍ଞାରେ ଆଶ୍ରମରୁ ବାହାରି ଆସିଲେ, ସେତେବେଳେ ତାଙ୍କ ଚିତ୍ତ ଅତ୍ୟନ୍ତ ଖିନ୍ନ ହୋଇଯାଇଥିଲା । ସେ ଚିନ୍ତା କରୁଥିଲେ, 'ମୁଁ ଗୁରୁଙ୍କୁ ତ କୌଣସି ଅନୁଚିତ କଥା କହି ନାହିଁ । ତାଙ୍କ ନିମିତ୍ତ ବ୍ରହ୍ମହତ୍ୟାର ପ୍ରାୟଶ୍ଚିତ କରିବାକୁ ଅନୁମତି ମାଗିଥିଲି । ଯଦି ମୋ ବଚନରେ ଅଭିମାନ ଥିଲା, ତାହାହେଲେ ଗୁରୁଦେବ ମୋତେ ପ୍ରେମପୂର୍ବକ ତାହା ବୁଝାଇ ଦେଇ ପାରିଥାଆନ୍ତେ । ସେ ଅକାରଣରେ ମୋ ଉପରେ ରାଗିଗଲେ । ମନୁଷ୍ୟ ସ୍ୱଭାବ ତ ସାଧାରଣ ଏହିପରି । ସେ ନିଜ ବିରୁଦ୍ଧ କଥା କେବେହେଲେ ଶୁଣିବାକୁ ଚାହେଁ ନାହିଁ । ଏବେ ମୁଁ ଆଉ କୌଣସି ମନୁଷ୍ୟକୁ ଗୁରୁ କରିବି ନାହିଁ । ଏବେ ସମସ୍ତ ଜ୍ଞାନର ପ୍ରକାଶକ, ଜଗତକୁ ଜ୍ୟୋତି ପ୍ରଦାନକାରୀ, ସର୍ବକର୍ମର ସାକ୍ଷୀ ଜ୍ଞାନସ୍ୱରୂପ ଭଗବାନ୍ ସୂର୍ଯ୍ୟଙ୍କୁ ମୁଁ ଉପାସନା କରିବି ଓ ତାଙ୍କୁ ତପରେ ତୁଷ୍ଟ କରି ଏପରି ଶ୍ରୁତି ଲାଭ କରିବି, ଯାହାକି ମୋର ଗୁରୁଙ୍କ ପାଖରେ ନାହିଁ ।' ଏପରି ନିଶ୍ଚୟ କରି ଯାଜ୍ଞବଲ୍‌କ୍ୟ ମୁନି ଯଜୁଶ୍ରୁତି କାମନାରେ

ଭଗବାନ୍ ସୂର୍ଯ୍ୟନାରାୟଣଙ୍କର ଆରାଧନା କରିବାକୁ ଲାଗିଲେ ଓ ଗାୟତ୍ରୀର ସାରଭୂତ ଏହି ଆଶୟର ମନ୍ତ୍ରରେ ନିରନ୍ତର ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ଯିଏ ଅଖିଳ ଜଗତର ଆତ୍ମା ରୂପରେ ଏକା ହୋଇ ଆବ୍ରହ୍ମ ସ୍ତମ୍ଭ ପର୍ଯ୍ୟନ୍ତ ଚତୁର୍ବିଧ ଭୂତଙ୍କ ଭିତରେ ରହନ୍ତି ତଥା ସମସ୍ତଙ୍କ ବାହାରେ କ୍ଷଣ, ଲବ, ନିମେଷ ଆଦି ବିଭାଗରେ ବୃଦ୍ଧିପ୍ରାପ୍ତ ସମ୍ବତ୍ସରସମୂହ ରୂପେ ଅବସ୍ଥାନ କରନ୍ତି ; ଯିଏ ଘଟ ଆଦି ଉପାଧିରେ ରହି ମଧ୍ୟ ଆକାଶ ସଦୃଶ ଭିତର, ବାହାର ବ୍ୟାପ୍ତ ଓ ଆକାଶ ସମାନ ସବୁଥିରେ ଅଲିପ୍ତ ରହି ପ୍ରାଣୀମାନଙ୍କ ଶରୀରରେ ତଥା ଜଳାଶୟରେ ଗୁପ୍ତରୂପରେ ଜଳ ଗ୍ରହଣ କରି ଯଥାସମୟରେ ବର୍ଷା କରାଇ ଜୀବନ ନିର୍ବାହର ସହାୟକ ହୁଅନ୍ତି, ସେହି ଓଁକାର ସ୍ୱରୂପ ଭଗବାନ୍ ସୂର୍ଯ୍ୟନାରାୟଣଙ୍କୁ ନମସ୍କାର ।

ହେ ସମସ୍ତଙ୍କ ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ ଭଗବାନ୍ ସୂର୍ଯ୍ୟଦେବ ! ବେଦବିଧିରେ ଉପାସନା କରୁଥିବା ବ୍ରାହ୍ମଣଗଣ ଆପଣଙ୍କର ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳରେ ଉପସ୍ଥାନାଦିରେ ଉପାସନା କରୁଅଛନ୍ତି ଓ ଆପଣ ମଧ୍ୟ ସେମାନଙ୍କର ପାପକର୍ମରୁ ପ୍ରାପ୍ତ ସମସ୍ତ ଦୁଃଖର ବୀଜକୁ ନାଶ କରୁଅଛନ୍ତି । ଆପଣଙ୍କର ଏ ଯେଉଁ ଅତ୍ୟନ୍ତ ପ୍ରକାଶମାନ ତେଜମଣ୍ଡଳ ଦେଦୀପ୍ୟମାନ ହେଉଅଛି, ତାହାକୁ ଆମେ ଧ୍ୟାନ କରୁଅଛୁ । ଆପଣଙ୍କର ଆଶ୍ରିତ ସମସ୍ତ ସ୍ଥାବର ଜଙ୍ଗମ ପ୍ରାଣୀମାନଙ୍କର ମନ, ଇନ୍ଦ୍ରିୟ ତଥା ପ୍ରାଣକୁ (ଯାହାକି ଜଡ଼ ଭଳି) ଆପଣ ହିଁ ଆତ୍ମା ତଥା ଅନ୍ତର୍ଯ୍ୟାମୀ ରୂପରେ ସମସ୍ତଙ୍କୁ କର୍ମରେ ପ୍ରେରିତ କରୁଅଛନ୍ତି । ଆପଣଙ୍କୁ ଆମେ ଧ୍ୟାନ କରୁଅଛୁ ।

ହେ ପ୍ରଭୋ ! ଆପଣ ଅତ୍ୟନ୍ତ କରୁଣାମୟ ଅଟନ୍ତି । ତେଣୁ ଅନ୍ଧକାର ସଂଜ୍ଞକ ଅତି କରାଳବଦନ ଅଜଗର ମୁଖରେ ପଡ଼ି ମୃତବ୍ୟକ୍ତି ସଦୃଶ ଚେତନାଶୂନ୍ୟ ଦେଖି ଆପଣ ହିଁ କରୁଣାର ବଶୀଭୂତ ହୋଇ ନିଜର ଦୃଷ୍ଟିମାତ୍ରକରେ ଏହି ସମସ୍ତ ଲୋକକୁ ଜାଗ୍ରତ କରାଇ ଏମାନଙ୍କୁ ନିତ୍ୟପ୍ରତି ତିନିକାଳରେ ନିଜର କଲ୍ୟାଣକାରୀ ଧର୍ମରୂପ ଆତ୍ମସ୍ଥିତିରେ ପ୍ରବୃତ୍ତ କରାନ୍ତି । ଯେପରି ରାଜା ଦୁଷ୍ଟ ପୁରୁଷଙ୍କୁ ଭୟଭୀତ କରାଇବା ପାଇଁ ଲୋକରେ ବିଚରଣ କରନ୍ତି, ସେହିପରି ଆପଣ ମଧ୍ୟ ବିଚରଣ କରୁଅଛନ୍ତି । ଏ ଯେତେ ଲୋକପାଳ ଅଛନ୍ତି, ସେମାନେ ସମସ୍ତେ ଆପଣଙ୍କୁ ଚତୁର୍ଦ୍ଦିଗବ୍ୟାପୀ ସର୍ବତ୍ର କମଳକୋଶ ସଦୃଶ ଅଞ୍ଜଳିରେ ଅର୍ଘ୍ୟ ସମର୍ପଣ କରୁଅଛନ୍ତି । ହେ ଭଗବନ୍ ! ସେହି ତ୍ରିଲୋକ ଗୁରୁମାନଙ୍କଦ୍ୱାରା ବନ୍ଦିତ ଆପଣଙ୍କ ଯୁଗଳ ଚରଣକମଳର ମୁଁ ଅୟାତୟାମ ଯଜୁର୍ବେଦର ଶ୍ରୁତିଗୁଡ଼ିକୁ ପ୍ରାପ୍ତ ଇଚ୍ଛାରେ ଆପଣଙ୍କର ଶରଣାପନ୍ନ ହେଉଅଛି ।

ସୂତ କହିଲେ, "ମୁନିଗଣ ! ଯେତେବେଳେ ଯାଜ୍ଞବଲ୍କ୍ୟ ମହାମୁନି ଏକାଗ୍ର ଚିତ୍ତରେ ସମସ୍ତ କର୍ମର ସାକ୍ଷୀ ସମଗ୍ର ଜଗତକୁ ଆଲୋକ ପ୍ରଦାନ କରୁଥିବା ଭଗବାନ୍ ସୂର୍ଯ୍ୟନାରାୟଣଙ୍କର ଉପାସନା କଲେ, ସେତେବେଳେ ସେ ଅଶ୍ୱରୂପ ଧାରଣ କରି ଯାଜ୍ଞବଲ୍କ୍ୟଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । (ସୂର୍ଯ୍ୟନାରାୟଣଙ୍କ ଅଶ୍ୱ ହିଁ ବେଦମୟ ।) ଅଶ୍ୱରୂପରେ ସୂର୍ଯ୍ୟଦେବଙ୍କୁ ସମ୍ମୁଖରେ ଦେଖି ମୁନି ତାଙ୍କ ଚରଣରେ ପ୍ରଣାମ କଲେ । ସୂର୍ଯ୍ୟଦେବ ମୁନିଙ୍କୁ ବର ମାଗିବାକୁ କହିବାରୁ ଯାଜ୍ଞବଲ୍କ୍ୟ କହିଲେ—'ପ୍ରଭୋ ! ମୋତେ ଯଜୁର୍ବେଦର ସେହି ସ୍ତୁତିଗୁଡ଼ିକ ପ୍ରଦାନ କରନ୍ତୁ, ଯାହାକି ମୋ ଗୁରୁ ଜାଣନ୍ତି ନାହିଁ ।' ଏହା ଶୁଣି ଅଶ୍ୱରୂପଧାରୀ ସୂର୍ଯ୍ୟଦେବ ତାଙ୍କୁ କେବେ ବ୍ୟର୍ଥ ନ ହେଉଥିବା ଯଜୁର୍ବେଦର ଆୟାତୟାମୀ ଶ୍ରୁତି(ମନ୍ତ୍ର)ଗୁଡ଼ିକ ପ୍ରଦାନ କଲେ । ତାହା ଅସଂଖ୍ୟ ଥିଲା । ମହାମୁନି ଯାଜ୍ଞବଲ୍କ୍ୟ ତହିଁରେ ପନ୍ଦର ଶାଖା ସୃଷ୍ଟି କଲେ । ତାହା ବାଜ(ଅଶ୍ୱ)ଦ୍ୱାରା ପ୍ରଦତ୍ତ ହେଉଥିବା କାରଣରୁ 'ବାଜସନେୟୀ' ଶାଖା ନାମରେ ପ୍ରସିଦ୍ଧି ଲାଭ କରିଅଛି । ମହାମୁନି ବୈଶମ୍ପାୟନଙ୍କର ଯଜୁର୍ବେଦ କୃଷ୍ଣଯଜୁର୍ବେଦ ନାମରେ ପ୍ରସିଦ୍ଧ ଓ

ଯାଜ୍ଞବଲ୍‌କ୍ୟ ମୁନିଙ୍କୁ ଯେଉଁ ଯଜୁର୍ବେଦର ଶ୍ରୁତିଗୁଡ଼ିକ ମିଳିଥିଲା, ତାହା ଶୁକ୍ଳଯଜୁର୍ବେଦ ନାମରେ ପ୍ରସିଦ୍ଧ । ଏହାଙ୍କର କଣ୍ୱ ଓ ମାଧ୍ୟନ୍ଦିନ ଆଦି ଶିଷ୍ୟ ହୋଇଥିଲେ । ଏଥିପାଇଁ ଏହି ଶାଖାଗୁଡ଼ିକ ସେମାନଙ୍କ ନାମରେ ପ୍ରସିଦ୍ଧ ହୋଇଅଛି ।

ଏହିପରି ଗୁରୁଶିଷ୍ୟଙ୍କର ବାଦବିବାଦ କାରଣରୁ ଯଜୁର୍ବେଦର ଦୁଇ ସଂହିତା ହୋଇଥିଲା । ମୁଁ ଏହା ଅତି ସଂକ୍ଷେପରେ ଆପଣମାନଙ୍କୁ କହିଲି । ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି କୁହନ୍ତୁ ।

ଶୌନକ କହିଲେ—"ହେ ସୂତ ! ଆମ୍ଭେମାନେ ଆପଣଙ୍କ ମୁଖରୁ ଋଗ୍‌ବେଦ ଓ ଯଜୁର୍ବେଦର ଶାଖା ସମ୍ବନ୍ଧରେ ଶୁଣିଲୁ । ଏବେ ଆମ୍ଭେମାନେ ସାମବେଦ ଓ ଅଥର୍ବ ବେଦର ଶାଖା ସମ୍ବନ୍ଧରେ ଶୁଣିବାକୁ ଇଚ୍ଛା କରୁଅଛୁ । ଏହା ସହିତ ଆପଣ ମଧ୍ୟ ଆମ୍ଭମାନଙ୍କୁ ପୁରାଣ ସମ୍ବନ୍ଧରେ ଶୁଣାଇବେ । ପୁରାଣ କେତେ ଓ ପୁରାଣର ଲକ୍ଷଣ କ'ଣ ? ଏହିପରି ଆପଣ ଆମ୍ଭମାନଙ୍କୁ ବେଦ ସଦୃଶ ପୁରାଣଗୁଡ଼ିକର ପରିଚୟ ମଧ୍ୟ କରାଇବେ ।"

ସୂତ କହିଲେ—"ମହାରାଜ ! ସେ ବିଷୟ ତ ଅତି ଗହନ । ବିସ୍ତାରିତ ଭାବରେ ତ ତାହା କହି ହେବ ନାହିଁ, ମୁଁ ତାହା ଅତି ସଂକ୍ଷେପରେ ଆପଣମାନଙ୍କୁ ଶୁଣାଇବି । ଆପଣମାନେ ଏକାଗ୍ର ଚିତ୍ତରେ ତାହା ଶ୍ରବଣ କରନ୍ତୁ ।"

ଷଟ୍‌ପଦୀ

ଉଗଲେ ସବରେ ମନ୍ତ୍ର ଦିବ୍ୟ ଦୀମଜ ବନି ଜୀୟେ ।
ତିତିର ବନ୍ଦୁ ବନିଗୟେ ଲୋଭବଶ ସବ ଚୁଗି ଲୀୟେ ॥
ତୈତ୍ତିରୀୟ ସୋ ଭଇ ବେଦ କୀ ଶାଖା ସୁନ୍ଦର ।
ଯାଜ୍ଞବଲ୍‌କ୍ୟ ନେ କରେ ତୁଷ୍ଟ ତପ କରିକେଂ ଦିନକର ॥
ଅଶ୍ୱ ରୂପ ଧରି ସୂର୍ଯ୍ୟ ନେ, ଶିକ୍ଷା ଦ୍ୱିଜବର କୁଁ ଦଇ ।
ବାଜସନେୟୀ ପୃଥକ୍ ୟହ, ଯଜୁରବେଦ ଶାଖା ଭଇ ॥



# ସାମ, ଅଥର୍ବ ଓ ପୁରାଣଗୁଡ଼ିକର ବର୍ଣ୍ଣନ

**ବ୍ରହ୍ମନ୍ନିଦଂ ସମାଖ୍ୟାତଂ ଶାଖାପ୍ରଣୟନଂ ମୁନେଃ ।**
**ଶିଷ୍ୟଶିଷ୍ୟପ୍ରଶିଷ୍ୟାଣାଂ ବ୍ରହ୍ମତେଜୋବିବର୍ଦ୍ଧନମ୍ ॥** ☆
(ଶ୍ରୀ ଭା: ୧୨ସ୍କ: ୭ଅ: ୨୫ଶ୍ଳୋକ)

☆ ସୂତ କହନ୍ତି ତୋଷମନେ । ଶୁଣ ହେ ବ୍ରହ୍ମଋଷିମାନେ ॥
ବେଦ ଯେ ଶାଖା ପ୍ରଣୟନ । ବିସ୍ତାରି ତୁମ୍ଭର ଆଗେଣ ॥
କହିଲୁ ତୁମ୍ଭର ପ୍ରଶନେ । ଶିଷ୍ୟ-ପ୍ରଶିଷ୍ୟ ବିଚାରଣେ ॥
ଏହା ଯେ କର୍ଣ୍ଣରେ ଶୁଣଇ । ବ୍ରହ୍ମତେଜ ତାର ବଢ଼ଇ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୭ମଅ.)

ଷଟ୍‌ପଦୀ

ଏସେ ହୀ ପୁନି ସାମବେଦ କୀ ଶାଖା ଅଗନିତ ।
ବହୁ ଅଥର୍ବ କେ ଭୟେ ମହାମୁନି ଚିତ ସମାହିତ ॥
ପୁନି ଦଶ ଆଠ ପୁରାନ ବନାୟେ ଅତି ହୀ ସୁଖକର ।
ଦଶ ଲକ୍ଷଣ ତେଁ ଯୁକ୍ତ ଜଗତ ହିତକାରକ ମୁନିବର ॥
ବ୍ରାହ୍ମ, ପାଦ୍ମ, ବୈଷ୍ଣବ ମହା, ଶୈବ ଭାଗବତ ନାରଦୀ ।
ମାର୍କଣ୍ଡେୟ ପୁରାଣ ପୁନି, ଅଗ୍ନି ଭବିଷ୍ୟ ସୁଶାରଦୀ ॥

ଯେଉଁ ବିଷୟକୁ ଶ୍ରଦ୍ଧାପୂର୍ବକ ଶ୍ରବଣ କରାଯାଏ, ସେ ବିଷୟରେ କିଛି ନା କିଛି ସଂସ୍କାର ନିଶ୍ଚିତ ଭାବରେ ହୃଦୟରେ ସ୍ଥାନ ପାଏ । ମନ ନଦେଇ ଯଦି କୌଣସି ବିଷୟ ବସି ବସି ଶ୍ରବଣ କରାଯାଏ, ତାହାହେଲେ ତାହା କାନରେ ପଡ଼ିବାମାତ୍ରେ ମନଉପରେ କିଛିଟା ପ୍ରଭାବ ପକାଏ । ଛୋଟ ଛୋଟ ପିଲା ଯିଏକି କିଛି କହନ୍ତି ନାହିଁ, ପିତାମାତା ବୁଝିପାରନ୍ତି ଯେ, ଇଏ ଅବୋଧ ଶିଶୁ, କିଛି ଜାଣେ ନାହିଁ । ସେଥିପାଇଁ ତାଙ୍କ ସମ୍ମୁଖରେ କାମୁକ ଚେଷ୍ଟା କରିଥାଆନ୍ତି, କାମ ସମ୍ବନ୍ଧୀୟ ବାର୍ତ୍ତାଳାପ କରନ୍ତି । ଏହା ପିତାମାତାଙ୍କର ଭୁଲ ଆଚରଣ । ସେହି ଆଚରଣର ସଂସ୍କାର ପିଲାଙ୍କ ଉପରେ ପଡ଼େ । ସେମାନେ ଯେତେ ଯେତେ ବଡ଼ ହୁଅନ୍ତି, ସେତେ ସେତେ ସେହିପରି ଚେଷ୍ଟା କରିବାରେ ଲାଗନ୍ତି । ଏହିପରି କଥାବାର୍ତ୍ତାର ସଂସ୍କାର ହୃଦୟ ଉପରେ ପ୍ରଭାବ ବିସ୍ତାର କରିଥାଏ । ମାତାମାନେ ଯଦି ସତ୍‌ସଙ୍ଗରେ ଯୋଗଦାନ କରୁଥାଆନ୍ତି, ତାହାହେଲେ ସେମାନେ କର୍ଣ୍ଣରେ ଆଲୋଚନା ଶୁଣିବା ସଙ୍ଗେ ସଙ୍ଗେ ପ୍ରାୟ କିଛି କିଛି ହସ୍ତକର୍ମ ସେଠାରେ କରୁଥାଆନ୍ତି । ତାହାସତ୍ତ୍ୱେ ବି ସେମାନେ ବହୁତ କଥା ମନେ ରଖିପାରନ୍ତି । ଏଥିପାଇଁ ବୈଦିକ ତଥା ପୌରାଣିକ ଶାସ୍ତ୍ର ସାହିତ୍ୟ ସମ୍ବନ୍ଧରେ ଲୋକର ଇଚ୍ଛା ନଥିଲେ କିମ୍ବା ବୁଝିପାରୁ ନଥିଲେ ବି ତାହା ପ୍ରତ୍ୟେକ ଶୁଣିବା ଉଚିତ୍ । ଶୁଣୁ ଶୁଣୁ ସେମାନଙ୍କ ହୃଦୟରେ ସେହି ସଂସ୍କାର ଜମିଯାଏ ଓ ତଦ୍ଦ୍ୱାରା ବ୍ରହ୍ମତେଜ ବୃଦ୍ଧିପାଏ ।

ସୂତ କହିଲେ—''ମୁନିଗଣ ! ମୁଁ ଅତି ସଂକ୍ଷେପରେ ଏବେ ସାମବେଦର ଶାଖା ସମ୍ବନ୍ଧରେ ଆପଣମାନଙ୍କୁ କହିବି । ଭଗବାନ୍ ବ୍ୟାସଦେବ ସାମବେଦ ସଂହିତାକୁ ମହାମୁନି ଜୈମିନୀଙ୍କୁ ପ୍ରଦାନ କରିଥିଲେ । ଜୈମିନୀଙ୍କର ସୁମନ୍ତ ନାମକ ଜଣେ ସୁଯୋଗ୍ୟ ପୁତ୍ର ଥିଲେ । ସୁମନ୍ତଙ୍କର ସୁନ୍ୱାନ ନାମକ ପୁତ୍ର ବି ଥିଲେ । ଏଥିପାଇଁ ସେ ନିଜର ବେଦକୁ ଦୁଇ ଶାଖାରେ ବିଭକ୍ତ କଲେ । ଗୋଟିଏ ନିଜ ପୁତ୍ର ସୁମନ୍ତକୁ ଦେଲେ ଓ ଅନ୍ୟଟି ନିଜର ପୌତ୍ର ସୁନ୍ୱାନଙ୍କୁ ଦେଲେ ।

''ଏହି ପୁତ୍ର ପୌତ୍ରଙ୍କ ଛଡ଼ା ତାଙ୍କର ସୁକର୍ମା ନାମକ ଏକ ତେଜସ୍ୱୀ ଶିଷ୍ୟ ଥିଲେ । ସେ ଅତ୍ୟନ୍ତ ମେଧାବୀ ଥିଲେ । ନିଜର ଗୁରୁଙ୍କ ନିକଟରେ ସାମବେଦ ଅଧ୍ୟୟନ କରି ସେ ତାହାର ସହସ୍ର ଶାଖା କଲେ ଓ ନିଜର ଶିଷ୍ୟମାନଙ୍କୁ ସେହିସବୁ ଭିନ୍ନ ଭିନ୍ନ ଶାଖା ପଢ଼ାଇଲେ । ତାଙ୍କର କୋଶଳନିବାସୀ ହିରଣ୍ୟନାଭ, ପୌଷ୍ୟଞ୍ଜି ଓ ଅବନ୍ତୀର ଆବନ୍ତ୍ୟ ଆଦି ଶିଷ୍ୟ ମଧ୍ୟ ତାହା ପଢ଼ିଥିଲେ । ପୌଷ୍ୟଞ୍ଜି ଓ ଅବନ୍ତ୍ୟଙ୍କର ପାଞ୍ଚଶହ ଶିଷ୍ୟ ଉତ୍ତରାଞ୍ଚଳରେ ରହି ସାମଗାନ କରୁଥିଲେ । ଉଦୀଚୀ ଦିଗରେ ରହି ଯଦି ତ ସେ ଔଦୀଚ୍ୟ ବୋଲାଉଥିଲେ, ତଥାପି ତାଙ୍କୁ ପ୍ରାଚ୍ୟ-ସାମଗ ବି କୁହାଯାଉଥିଲା । ପୌଷ୍ୟଞ୍ଜିମୁନିଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ପ୍ରତ୍ୟେକ ଶହ ଶହ ସଂହିତା ପାଠ କରିଥିଲେ । ସୁକର୍ମାଙ୍କ ପ୍ରଥମଶିଷ୍ୟ ହିରଣ୍ୟନାଭଙ୍କର କୃତ ନାମକ ଶିଷ୍ୟ ନିଜର ଶିଷ୍ୟମାନଙ୍କୁ ଚବିଶ ସଂହିତା ପଢ଼ାଇଥିଲେ । ଆବନ୍ତ୍ୟମୁନି ନିଜର ଶିଷ୍ୟମାନଙ୍କୁ ମଧ୍ୟ ବହୁତ ସଂହିତା ପଢ଼ାଇଥିଲେ । ଏହିପରି ସାମବେଦର ବହୁତ ଶାଖା ହୋଇଥିଲା । ଏବେ ଆପଣମାନେ ଅଥର୍ବବେଦର ଶାଖା ସମ୍ବନ୍ଧରେ ଶୁଣନ୍ତୁ ।

ଭଗବାନ୍ ବେଦବ୍ୟାସ ଅଥର୍ବବେଦ ସଂହିତା ମହାମୁନି ସୁମନ୍ତୁ ଋଷିଙ୍କୁ ଦେଇଥିଲେ । ସେ ତାହାକୁ ତାଙ୍କ ଶିଷ୍ୟ କବନ୍ଧଙ୍କୁ ପଢ଼ାଇଥିଲେ । କବନ୍ଧମୁନି ତାହା ଦୁଇଭାଗରେ ବିଭକ୍ତ କରିଥିଲେ । ସେ ଗୋଟିକୁ ନିଜର ପ୍ରଥମ ଶିଷ୍ୟ ପଥ୍ୟଙ୍କୁ ପଢ଼ାଇଥିଲେ ଓ ଅନ୍ୟଟିକୁ ଦ୍ୱିତୀୟ ଶିଷ୍ୟ ବେଦଦର୍ଶଙ୍କୁ ପଢ଼ାଇଥିଲେ । ମହାମୁନି ଦର୍ଶଙ୍କର ଚାରିଶିଷ୍ୟ ଥିଲେ । ସେମାନଙ୍କ ନାମ ଶୌଲ୍‌କାୟନି, ବ୍ରହ୍ମବଳି, ମୋଦୋଷ ଓ ପିପ୍ପଳାୟନି । ମହାମୁନି ପଥ୍ୟଙ୍କର ମଧ୍ୟ ତିନିଶିଷ୍ୟ ଥିଲେ । ସେମାନଙ୍କର ନାମ କୁମୁଦ, ସୁନକ ଓ ଜାଜଳି । ଶୁନକ ମୁନିଙ୍କର ବଭ୍ରୁ ଓ ସୈନ୍ଧବାୟନ ନାମକ ଦୁଇଶିଷ୍ୟ ଥିଲେ । ଏମାନଙ୍କ ବ୍ୟତୀତ ସାବର୍ଣ୍ଣ୍ୟ ଆଦି ଅଥର୍ବ ବେଦଜ୍ଞାତା ଓ ତଦନନ୍ତର ନକ୍ଷତ୍ରକଳ୍ପ, ଶାନ୍ତିକଳ୍ପ, କଶ୍ୟପ ଓ ଆଙ୍ଗିରସ ଆଦି ମୁନି ମଧ୍ୟ ଥିଲେ । ଏମାନେ ସମସ୍ତେ ଅଥର୍ବବେଦଜ୍ଞାତା ଓ ପରମବୁଦ୍ଧିମାନ୍ ଥିଲେ ।''

ଶୌନକ ପଚାରିଲେ—''ହେ ସୂତ ! ଆପଣ ତ ବୈଦିକ ମୁନିମାନଙ୍କ ସମ୍ବନ୍ଧରେ ବର୍ଣ୍ଣନା କଲେ, କିନ୍ତୁ ପୌରାଣିକ ମୁନିମାନଙ୍କ ସମ୍ବନ୍ଧରେ କିଛି କହି ନାହାନ୍ତି । ଏବେ କୃପାକରି ଆପଣ ଆମ୍ଭମାନଙ୍କୁ ପୌରାଣିକ ଆଚାର୍ଯ୍ୟମାନଙ୍କ ସମ୍ବନ୍ଧରେ କହନ୍ତୁ ।''

ଏହାଶୁଣି ସୂତ ମହିଲେ—''ମୁନିଗଣ ! ମହାରାଜ ପୃଥୁଙ୍କର ଯଜ୍ଞରେ ସୌତ୍ୟାହନି ଯଜ୍ଞର ଚରୁ ବିପର୍ଯ୍ୟୟ ଘଟିବାରୁ ମୋ ପିତାଙ୍କର ଉତ୍ପତ୍ତି ହୋଇଥିଲା । ଚରୁର ବିପର୍ଯ୍ୟୟ ହେବାରୁ ତାଙ୍କର ସୂତ ସଜ୍ଞା ହେଲା । ସେହି ଲୋମହର୍ଷଣ ସୁତ ସୂତବଂଶର ପ୍ରଥମ ପ୍ରବର୍ତ୍ତକ ଥିଲେ । ଚରୁର ବିଲୋମ ହୋଇଯିବାରୁ ହିଁ ବିଲୋମ ଜାତି ସୂତଜାତିରେ ପରିଣତ ହେଲେ । ଏଥିପାଇଁ ସେମାନେ ଅଯୋନିଜ ହୋଇ ମଧ୍ୟ ବେଦ ଅଧ୍ୟାପନାର ଅନଧିକାରୀ ରୂପେ ଗଣ୍ୟ ହେଲେ । ଭଗବାନ ବ୍ୟାସଦେବ ସେମାନଙ୍କୁ ପୁରାଣର ଆଚାର୍ଯ୍ୟ କରିଦେଲେ । ସେ ପୁରାଣର ଛଅଟି ସଂହିତା ପ୍ରସ୍ତୁତ କଲେ । ତାହାକୁ ତ୍ରୟ୍ୟାରୁଣି, କଶ୍ୟପ, ସାବର୍ଣ୍ଣି, ଅକୃତିବ୍ରଣ, ବୈଶମ୍ପାୟନ ଓ ହାରିତ ଏହି ଛଅଜଣ ପୌରାଣିକ ମୁନି ପଢ଼ାଇଲେ ।''

ଶୌନକ ପଚାରିଲେ—''ହେ ସୂତ ! ତୁମ ପିତା ପୁରାଣାଚାର୍ଯ୍ୟ ଲୋମହର୍ଷଣ କ'ଣ ପ୍ରକୃତରେ ଅଯୋନିଜ ଥିଲେ ? ଯଦି ତାହା ବାସ୍ତବ କଥା ହୋଇଥାଏ, ତାହାହେଲେ ତ ସେ ସୂତ ଜାତିର ଅଟନ୍ତି । ଅଧ୍ୟୟନ କରାଇବାର, ଗୁରୁ ହେବାର ଅଧିକାର ତ ବ୍ରାହ୍ମଣଙ୍କର । ଅନ୍ୟ ଜାତିର ଲୋକଙ୍କୁ ତ ଶିଷ୍ୟ କରିବାର ଅଧିକାର ଦିଆଯାଇ ନାହିଁ । ପୁନଶ୍ଚ ତୁମ ପିତା ଏହି ମୁନିମାନଙ୍କୁ କାହିଁକି ଅଧ୍ୟୟନ କରାଉଥିଲେ ?''

ସୂତ ହସି ହସି କହିଲେ—''ମହାରାଜ ! ବେଦ ପ୍ରମାଣର ଉପଦେଷ୍ଟା ତ ଆପଣମାନେ । ଆପଣମାନେ ଯାହାକୁ ଅଧିକାର ଦେଇଦିଅନ୍ତି ସେ ଅନଧିକାରୀ ହୋଇଥିଲେ ମଧ୍ୟ ଅଧିକାରୀ ହୋଇଯାଆନ୍ତି । ଆପଣମାନେ ମନ୍ତ୍ରଦ୍ୱାରା ପାଷାଣ ଆଦିର ପ୍ରତିମାରେ ପ୍ରାଣ ପ୍ରତିଷ୍ଠା କରିଦିଅନ୍ତି । ତେଣୁ ସେଗୁଡ଼ିକ ଜଗତ୍‌ପୂଜ୍ୟ ହୋଇଯାଆନ୍ତି । ସେହିପରି ସୂତ ହୋଇଥିଲେ ମଧ୍ୟ ମୋର ପୂଜ୍ୟପିତାଙ୍କୁ ଭଗବାନ୍ ବେଦବ୍ୟାସ ଆଦରି ନେଇ ତାଙ୍କୁ ନିଜର ଶିଷ୍ୟ କରିଥିଲେ ଓ ସୂତଜାତିଙ୍କୁ ପୁରାଣ ବାଚନ କରିବାର ଅଧିକାର ଦେଇ ମୋତେ ଉଚ୍ଚାସନରେ ବସାଇ ଅଛନ୍ତି । ଏହା ହିଁ ଗୁରୁ ହୋଇପାରିବାର ଘଟଣା । ଗୁରୁ ଦୁଇ ପ୍ରକାରର ଅଟନ୍ତି । ଗୋଟିଏ ଶିକ୍ଷାଗୁରୁ ଓ ଅନ୍ୟଟି ଦୀକ୍ଷାଗୁରୁ । ଦୀକ୍ଷାଗୁରୁ ବ୍ରାହ୍ମଣ ହିଁ ହୋଇଥାଆନ୍ତି । କିନ୍ତୁ ଶିକ୍ଷାଗୁରୁ ଅପବାଦ ସ୍ୱରୂପ ଅନ୍ୟବର୍ଣ୍ଣର ମଧ୍ୟ ହୋଇ ପାରନ୍ତି । କେତେକ ରାଜାଙ୍କ ନିକଟରେ ଶିକ୍ଷା ଗ୍ରହଣ କିମ୍ବା ପାଇଁ ବହୁଋଷି ଯାଉଥିଲେ ଓ ଶିକ୍ଷା ନେବା ପାଇଁ ସେମାନେ ସେହିସବୁ ରାଜାଙ୍କର ଶିଷ୍ୟତ୍ୱ ସ୍ୱୀକାର କରୁଥିଲେ । ମୋର ଗୁରୁଦେବ ଭଗବାନ୍ ଶୁକଦେବଙ୍କର ଦୀକ୍ଷାଗୁରୁ ତ ତାଙ୍କର ପିତା ଥିଲେ । କିନ୍ତୁ ଶିକ୍ଷା ନେବା ପାଇଁ ସେ ରାଜା ଜନକଙ୍କ ନିକଟକୁ ଯାଇଥିଲେ ।

ରାଜା ଜନକ ପ୍ରଥମେ ଗୁରୁପୁତ୍ର ଓ ବ୍ରାହ୍ମଣ ହୋଇଥିବାରୁ ଶୁକଦେବଙ୍କୁ ତ ପ୍ରଥମେ ପୂଜା କରିଥିଲେ ଓ ପୁନଶ୍ଚ ଶିକ୍ଷା ବି ଦେଇଥିଲେ । ସ୍ମୃତିମାନଙ୍କରେ ମଧ୍ୟ ଏପରି ବାକ୍ୟ ଅଛି ଯେ, କୌଣସି ଅବ୍ରାହ୍ମଣଙ୍କଠାରୁ ମଧ୍ୟ ଶିକ୍ଷା ନିଆଯାଇପାରେ । ତେଣୁ ତାଙ୍କୁ ଶିକ୍ଷା ନେବା ସମୟରେ ପ୍ରଣାମ କରାଯାଏ । ଶିକ୍ଷା ନେଇସାରିବା ପରେ ପ୍ରଣାମାଦି ନକରି ବାଚିକ ଆଦର ଅଭ୍ୟର୍ଥନା କରାଯାଏ । ବ୍ୟାସଦେବ ଯେତେବେଳେ ମୋର ପିତାଙ୍କୁ ପୁରାଣାଚାର୍ଯ୍ୟ କରିଦେଲେ, ସେତେବେଳେ ସେ ଗୁରୁଆଜ୍ଞାରେ ପୁରାଣ ଶିକ୍ଷା ପ୍ରଦାନ କଲେ । ମୁଁ ମଧ୍ୟ ଆପଣମାନଙ୍କ ଆଜ୍ଞାରେ ଶିକ୍ଷା ଦେଉଅଛି । ମୁଁ ବେଦମନ୍ତ୍ରର ଦୀକ୍ଷା ଦେଇ ପାରିବି ନାହିଁ । ଯିଏ ଅବ୍ରାହ୍ମଣ ହୋଇ କାହାକୁ ବେଦମନ୍ତ୍ର ଦୀକ୍ଷା ଦିଏ, ତାହାହେଲେ ଦେବା ବ୍ୟକ୍ତି ଓ ନେବା ବ୍ୟକ୍ତି ଶାସ୍ତ୍ରବିଧିକୁ ଉଲଘଂନ କରୁଥିବା କାରଣରୁ ଉଭୟେ ନରକକୁ ଯାଆନ୍ତି ।

ଶୌନକ କହିଲେ—''ହଁ, ସୂତ ! ଆପଣଙ୍କର ତ ପୁରାଣ ଅଧ୍ୟୟନ-ଅଧ୍ୟାପନା କରିବାର ଅଧିକାର ରହିଛି, ଆପଣଙ୍କର ପିତା ଆମ୍ଭମାନଙ୍କୁ ସର୍ବଦା ପୁରାଣ ଶୁଣାଉଥିଲେ । ଆମ୍ଭେମାନେ ମଧ୍ୟ ଗୁରୁଙ୍କ ଭଳି ତାଙ୍କୁ ଆଦର ଅଭ୍ୟର୍ଥନା କରୁଥିଲୁ । ତାଙ୍କୁ ଉଚ୍ଚାସନ ମଧ୍ୟ ଦେଇଥିଲୁ । ତାଙ୍କ ପରେ ସେ ସେହି ସିଂହାସନ ଉପରେ ଆପଣଙ୍କୁ ବସାଇଲେ । ଆପଣ ମଧ୍ୟ ଆମ୍ଭମାନଙ୍କର ପୁରାଣଗୁରୁ ଅଟନ୍ତି । ଆପଣ କାହାଠାରୁ ସଂହିତା ଅଧ୍ୟୟନ କରିଥିଲେ, ତାହା ଏବେ ଆମ୍ଭମାନଙ୍କୁ କହନ୍ତୁ ।''

ସୂତ କହିଲେ—''ମହାରାଜ ! ମୁଁ ତ ସମସ୍ତଙ୍କର ଶିଷ୍ୟ । ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ହିଁ ଏହି ଉଚ୍ଚାସନରେ ଅଧିଷ୍ଠିତ ହୋଇଛି । ମୁଁ ଯାହା କିଛି ଲାଭ କରିଛି, ଆପଣଙ୍କପରି ମହର୍ଷିଙ୍କଠାରୁ ହିଁ ତାହା ପ୍ରାପ୍ତ ହୋଇଛି । ଯେପରି ପିତା ପୁତ୍ରକୁ ପ୍ରଥମେ ଲେଖାପଢ଼ା ଶିଖାନ୍ତି, ପୁନଶ୍ଚ ନିଜେ ତାଙ୍କୁ ଉଚ୍ଚାସନରେ ବସାଇ ତା'ଠାରୁ ଶୁଣି ପ୍ରମୋଦିତ ହୁଅନ୍ତି, ସେହିପରି ଆପଣମାନଙ୍କ କଥା ହିଁ ମୁଁ ଆପଣମାନଙ୍କୁ କହୁଛି । ମୋର ପିତାଙ୍କଠାରୁ ତ ତ୍ରୟ୍ୟାରୁଣି, କଶ୍ୟପ, ସାବର୍ଣ୍ଣି, ଅକୃତବ୍ରଣ, ବୈଶମ୍ପାୟନ ଓ ହାରୀତ ଏହି ଛଅଜଣ ମହର୍ଷି ଏକ ଏକ ସଂହିତା ପଢ଼ିଥିଲେ । ମୁଁ ଏମାନଙ୍କ ନିକଟରୁ ସେହି ଛଅଟିଯାକ ସଂହିତା ପଢ଼ିଥିଲି । ସେହି ସମ୍ବନ୍ଧରୁ ସେମାନେ ମୋର ଗୁରୁ ଅଟନ୍ତି ଓ ମୋ ପିତା ମୋର ପରମଗୁରୁ ଅଟନ୍ତି । କିନ୍ତୁ କଶ୍ୟପ, ସାବର୍ଣ୍ଣି ଓ ପରଶୁରାମଙ୍କର ଶିଷ୍ୟ ଅକୃତବ୍ରଣ ଓ ମୁଁ ଏହି ଚାରିଜଣ ମୋ ପିତାଙ୍କଠାରୁ ମୂଳ ସଂହିତା ପାଠ କରିଥିଲୁ । ଏହି କାରଣରୁ ମୋ ପିତା ମୋର ଗୁରୁ ଅଟନ୍ତି । ମୁଁ ଶ୍ରୀ ଶୁକଦେବଙ୍କ ମୁଖରୁ ଗଙ୍ଗାତଟରେ ଏହି ଶ୍ରୀମଦ୍ଭାଗବତ-ସାତ୍ୱତ ସଂହିତା ଶ୍ରବଣ କରିଥିବାରୁ ସେ ମଧ୍ୟ ମୋର ଗୁରୁ ଅଟନ୍ତି । ଏହିପରି ଭାବରେ ମୁଁ ମହର୍ଷିମାନଙ୍କଠାରୁ ଅଷ୍ଟାଦଶ ପୁରାଣ ସଂହିତା ପଢ଼ିଥିବାରୁ ସେ ସବୁ ପୁରାଣ ମୋର ମୁଖସ୍ଥ ହୋଇଛି ।''

ଏହା ଶୁଣି ଶୌନକ କହିଲେ—''ହେ ସୂତ ! **ପୁରାଣ କାହାକୁ କହନ୍ତି ? ପୁରାଣର ଲକ୍ଷଣ ଆମ୍ଭମାନଙ୍କୁ ଶୁଣାନ୍ତୁ ।''**

ମହର୍ଷି ସୂତ ହସି ହସି କହିଲେ—''ମହାରାଜ ! ପୁରାଣ ଲକ୍ଷଣ ସମ୍ବନ୍ଧରେ ପୁରାଣଗୁଡ଼ିକର ସଂଖ୍ୟା ମୁଁ ତ ପ୍ରଥମେ ଆପଣମାନଙ୍କୁ କହିଛି ।''

ଶୌନକ କହିଲେ—''କଳିଯୁଗର ପ୍ରଭାବରୁ ଆମ୍ଭମାନଙ୍କର କିଛି ସ୍ମରଣ ରହୁ ନାହିଁ । ଗୋଟିଏ କଥା ବାରମ୍ବାର ଶୁଣିଲେ ତାହାର ପୁନରାବୃତ୍ତି ହୋଇଥାଏ । ଆପଣ ପ୍ରଥମରୁ ତ କହିଥିଲେ, ତଥାପି ଆଉଥରେ ତାହା ଆମ୍ଭମାନଙ୍କୁ କହନ୍ତୁ ।''

ସୂତ କହିଲେ—''ହଁ, ମହାରାଜ ! ଆପଣମାନେ ତ ସର୍ବଜ୍ଞ ଅଟନ୍ତି, ଆପଣମାନଙ୍କ ସ୍ମୃତିଶକ୍ତି କିପରି ବା ନ୍ୟୂନ ହୋଇପାରେ ? ଆପଣମାନେ କେବଳ ଲୋକକଲ୍ୟାଣ ନିମିତ୍ତ

ହିଁ ଗୋଟିଏ ପ୍ରଶ୍ନକୁ ବାରମ୍ବାର ପଚାରୁଥିବାର ମୁଁ ଜାଣିପାରୁଛି । ବର୍ତ୍ତମାନ ମୁଁ ବ୍ରହ୍ମର୍ଷିମାନେ ମୋତେ ବତାଇଥିବା ବେଦଶାସ୍ତ୍ର ଅନୁସାରେ ପୁରାଣର ଲକ୍ଷଣ କହୁଅଛି, ତାହା ଆପଣମାନେ ମନଯୋଗ ସହକାରେ ଶ୍ରବଣ କରନ୍ତୁ ।

''ପୁରୁଣା ବସ୍ତୁକୁ ପୁରାଣ କୁହାଯାଏ । ଯେଉଁଥିରେ ବିଶ୍ୱର ସର୍ଗ, ବିସର୍ଗ, ବୃତ୍ତି, ରକ୍ଷା, ମନ୍ୱନ୍ତର, ବଂଶ, ବଂଶର ଚରିତ୍ର, ସଂସ୍ଥା, ହେତୁ ଓ ଅପାଶ୍ରୟ ଏହି ଦଶଟି କଥା ଥାଏ, ତାହାକୁ ପୁରାଣ କୁହାଯାଏ । ଏହା ମହର୍ଷିମାନଙ୍କର ଉପଦେଶ । ପୁରାଣମାନଙ୍କ ମଧ୍ୟରେ ବି ଏକ ମହାପୁରାଣ ରହିଛି । ଯେଉଁ ପୁରାଣରେ ଏହି ଦଶଟିଯାକ ଲକ୍ଷଣ ଥାଏ, ତାହା ମହାପୁରାଣ ଓ ଯେଉଁଥିରେ ପାଞ୍ଚଟି ପର୍ଯ୍ୟନ୍ତ ଲକ୍ଷଣ ଥାଏ, ତାହାକୁ ପୁରାଣ, ଏପରି କୌଣସି ମହର୍ଷି କୌଣସିଠାରେ କହି ନାହାନ୍ତି । ଉପପୁରାଣ ଓ ଔପପୁରାଣ ମଧ୍ୟ ରହିଛି । ଏ ସବୁଥିରେ ହିଁ ଉପରୋକ୍ତ ଦଶଟି ବିଷୟ ରହିଛି ।''

ଶୌନକ କହିଲେ—''ହେ ସୂତ ! ସେହି ଦଶ ଲକ୍ଷଣକୁ ବ୍ୟାଖ୍ୟାକରି ଆମ୍ଭମାନଙ୍କୁ ଆପଣ ବୁଝାଇ ଦିଅନ୍ତୁ ।''

ସୂତ କହିଲେ—''ମହାରାଜ ! ପୂର୍ବରୁ ମୁଁ ସେହି ଦଶଲକ୍ଷଣ କଥା କହିଛି । ଏବେ ଅତି ସଂକ୍ଷେପରେ ଆଉଥରେ ତାହା ଆପଣମାନଙ୍କୁ କହୁଛି, ଶୁଣନ୍ତୁ ।''

୧. ସର୍ଗ:- ସର୍ଗ କହନ୍ତି ସୃଷ୍ଟିକୁ । ପୁରାଣର ଆବଶ୍ୟକ ଅନୁସାରେ ଏହି କଥା ଉପରେ ବିଚାର କରାଯାଇ କୁହାଯାଇଛି ଯେ, ଏହି ସୃଷ୍ଟି କିପରି ହୋଇଅଛି । ଯେତେବେଳେ ଏ ଦୃଶ୍ୟଜଗତ ନଥିଲା, ସେତେବେଳେ କେବଳ ସତ୍ ହିଁ ଥିଲା । ତ୍ରିଗୁଣାତ୍ମିକା ପ୍ରକୃତି ସାମ୍ୟ ଭାବରେ ନିଶ୍ଚେଷ୍ଟ ଥିଲା । ଗୁଣଗୁଡ଼ିକ କ୍ଷୁଭିତ ହେବାରୁ ସେଗୁଡ଼ିକର ସାମ୍ୟତା ନଷ୍ଟ ହୋଇଗଲା । ତିନିଗୁଣ କିଛି କିଛି ନ୍ୟୂନାଧିକ ହୋଇଗଲେ । ସୃଷ୍ଟିକାର୍ଯ୍ୟ ସେତେବେଳେ ଆରମ୍ଭ ହୋଇଗଲା । ଗୁଣଗୁଡ଼ିକରେ କ୍ଷୋଭ ଆରମ୍ଭ ହେବାରୁ ସର୍ବପ୍ରଥମେ ମହାନ୍ ବା 'ମହତତ୍ତ୍ୱ' ଉତ୍ପତ୍ତି ହେଲା । ସେହି ମହତତ୍ତ୍ୱରୁ ହିଁ ସାତ୍ତ୍ୱିକ, ରାଜସିକ ଓ ତାମସିକ ଗୁଣତ୍ରୟବିଶିଷ୍ଟ ଅହଂତତ୍ତ୍ୱର ସୃଷ୍ଟି ହେଲା । ସେହି ତ୍ରିବିଧ ଅହଂକାରରୁ ହିଁ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଏହି ପଞ୍ଚ ତନ୍ମାତ୍ରା; ଏକାଦଶ ଇନ୍ଦ୍ରିୟ, ପଞ୍ଚ ମହାଭୂତ ଆଦି ଉତ୍ପତ୍ତି ହେଲା । ଏହି ଉତ୍ପତ୍ତି ସମ୍ବନ୍ଧୀୟ ତତ୍ତ୍ୱକୁ ହିଁ ମହର୍ଷିମାନେ 'ସର୍ଗ' ବୋଲି କହିଅଛନ୍ତି ।

୨. ବିସର୍ଗ:- ବିଶେଷରୂପେ ଜୀବଗଣଙ୍କର ସୃଷ୍ଟିର ନାମ 'ବିସର୍ଗ' । ମୂଳ ପ୍ରକୃତିରୁ ମହତତ୍ତ୍ୱ, ଅହଂତତ୍ତ୍ୱ, ଇନ୍ଦ୍ରିୟାଦିତତ୍ତ୍ୱ ତ ଉତ୍ପନ୍ନ ହୋଇଥିଲେ; କିନ୍ତୁ ଏଥିରୁ ବିଶେଷ ସୃଷ୍ଟି କିପରି ହେଲା ? ଯେପରି ଆପଣଙ୍କ ନିକଟରେ କୌଣସି ଏକ ବୀଜ ଅଛି, ତାହା ଆପଣ ଉର୍ବରା ଭୂମିରେ ଲଗାଇ ଦିଅନ୍ତୁ, ସେଥିରେ ପ୍ରକୃତି ଅନୁକୂଳ ମଧୁର ଜଳ ପ୍ଲାବନ କରାନ୍ତୁ, ତା'ପରେ ଦେଖିବେ ସେହି ବୀଜରୁ ଅଙ୍କୁରୋଦ୍‌ଗମ ହେବ । ପରେ ତାହା ବଢ଼ି ବୃକ୍ଷରେ ପରିଣତ ହେବ; ଫଳ ଫଳିବ । ସେହି ଫଳରୁ ପୁନଶ୍ଚ ଅନେକ ବୀଜ ମିଳିବ । ଗୋଟିଏ ବୀଜର ଉତ୍ପତ୍ତିକୁ ସର୍ଗ କୁହାଯାଏ ଓ ଏକ ବୀଜରୁ ବହୁତ ବୀଜ ସୃଷ୍ଟି ହେବାକୁ ବିସର୍ଗ କୁହାଯାଏ । ସେହିପରି ଇଶ୍ୱରଙ୍କଠାରୁ ଅନୁଗୃହୀତ ଏହି ମହତତ୍ତ୍ୱାଦିରୁ ପୂର୍ବଜନ୍ମର ବାସନା ଅନୁସାରେ ନାନା ପ୍ରକାରର ଜୀବ ଉତ୍ପନ୍ନ ହେଉଛନ୍ତି । ତାହାକୁ ହିଁ ପୁରାଣ ଭାଷାରେ 'ବିସର୍ଗ' କୁହାଯାଏ ।

୩. ବୃତ୍ତି:- ଯେଉଁଥିରେ ଯାହାର ନିର୍ବାହ ହୁଏ, ତାହାକୁ ତାହାର 'ବୃତ୍ତି' କୁହାଯାଏ । ଯେପରି ଘାସ ଗୋ-ଜୀବନ ନିର୍ବାହୀ ବସ୍ତୁ । ଜଙ୍ଗମ ପ୍ରାଣୀଙ୍କର ସ୍ୱାଭାବିକ ଜୀବିକା ସ୍ଥାବର ପ୍ରାଣୀ । ମନୁଷ୍ୟ ନିଜର ଜୀବିକା ପାଇଁ ନିଜେ ନିଜେ କିଛି କରିପାରେ । ଶାସ୍ତ୍ର ସେହିପରି କୌଣସି ବୃତ୍ତି ବା ଆଚରଣ ନେଇ ଆଜ୍ଞା ଦିଏ । ଏହିପରି ବିହିତ ଓ ଅବିହିତ ଦୁଇ ପ୍ରକାର ବୃତ୍ତି କୁହାଯାଇଛି ।

୪. ରକ୍ଷା:- ଏବେ ଜୀବ ତ ଉତ୍ପନ୍ନ ହୋଇଗଲେ । ଅନେକ ବାସନ-କୁସନ ଯେଉଁଠାରେ ରହେ, ସେଠାରେ ପରସ୍ପର ବାଜି ଝଣ୍‌ଝଣ୍ ଶବ୍ଦ ବି ହୁଏ । ସେହିପରି ଯେତେବେଳେ ଅନେକ ପ୍ରାଣୀ ହୋଇଯାଆନ୍ତି, ସେତେବେଳେ ପରସ୍ପର ମଧ୍ୟରେ କଳି-ତକରାଳ ହୁଏ । ଗୋଟିଏ ଅନ୍ୟଟିକୁ ଖାଇଯାଏ ।''

ଶୌନକ ପଚାରିଲେ—''ହେ ସୂତ ! ଜୀବ ନିଜ ନିଜ ମଧ୍ୟରେ ଝଗଡ଼ା କାହିଁକି କରନ୍ତି ?''

ସୂତ କହିଲେ—''ମହାରାଜ ! ସେମାନେ ବଞ୍ଚି ରହିବା ପାଇଁ ଝଗଡ଼ା କରନ୍ତି । ଜୀବିକା ନିର୍ବାହ ହିଁ ତାହାର ମୂଳ କାରଣ । ଜଙ୍ଗମ ପ୍ରାଣୀମାନଙ୍କର ଆଜୀବିକା ସ୍ଥାବର ପ୍ରାଣୀଙ୍କ ଉପରେ ନିର୍ଭର କରେ । ଗାଈ, ବଳଦ ଆଦି ଘାସ, ଭୂସି ଆଦି ଦ୍ରବ୍ୟ ଖାଆନ୍ତି । ମନୁଷ୍ୟମାନେ ଅନ୍ନ, ଫଳମୂଳ ଖାଇ ଜୀବନ ନିର୍ବାହ କରନ୍ତି । କେତେକେ ବଡ଼ ଜୀବ ସାନ ସାନ ଜୀବଙ୍କୁ ଖାଇ ବଞ୍ଚନ୍ତି । ମନୁଷ୍ୟ କେତେକ ଶାସ୍ତ୍ରୀୟ ବିଧିବିଧାନ ମାନି ଚଳେ । ସେହି ଅନୁସାରେ ସେ ଜୀବନ ନିର୍ବାହ କରେ । କେହି କେହି କାମନାର ବଶହୋଇ ପରସ୍ପର ମଧ୍ୟରେ ଝଗଡ଼ା କରନ୍ତି । କେତେକ କହନ୍ତି, ଆମେ ଶାସ୍ତ୍ରର ବିଧିବିଧାନ ମାନିବୁ ନାହିଁ, ଧର୍ମ ମାନିବୁ ନାହିଁ । କେତେକ ଶାସ୍ତ୍ରର ବିଧିବିଧାନ ମାନି ଧର୍ମ ରକ୍ଷା କରନ୍ତି । ବେଦ ବିରୋଧୀଲୋକ ପ୍ରବଳ ହୋଇଯିବାରୁ ଧର୍ମର ହ୍ରାସ ହେବାରେ ଲାଗିଛି । ସାଧୁମାନଙ୍କୁ ଖଳଲୋକମାନେ ନାନା ପ୍ରକାର ପୀଡ଼ା ଦେଉଛନ୍ତି । ସେହି କାରଣରୁ ଭଗବାନ୍ ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇ ବିଶ୍ୱକୁ ଦୁଷ୍ଟମାନଙ୍କ କବଳରୁ ରକ୍ଷା କରୁଛନ୍ତି । ବେଦବିରୋଧୀମାନଙ୍କୁ ପରାସ୍ତ କରୁଛନ୍ତି । ଭଗବାନ୍ ମନୁଷ୍ୟ, ଋଷି ଓ ଦେବତାମାନଙ୍କ ମଧ୍ୟରେ ଅବତୀର୍ଣ୍ଣ ହୋଇ ବିଚିତ୍ର ବିଚିତ୍ର କ୍ରୀଡ଼ା ବା ଲୀଳା କରିଥାଆନ୍ତି । ଏହାଦ୍ୱାରା ବିଶ୍ୱ ରକ୍ଷା ହୁଏ ।

୫. ମନ୍ୱନ୍ତର:- ଜଣେ ମନୁ ଯେତେଦିନ ପର୍ଯ୍ୟନ୍ତ ରହନ୍ତି, ତାହାକୁ ମନ୍ୱନ୍ତର କୁହାଯାଏ । ବ୍ରହ୍ମାଙ୍କର ଗୋଟିଏ ଅହୋରାତ୍ର ମଧ୍ୟରେ ଚାରିଯୁଗ ସହସ୍ର ସହସ୍ରବାର ବିତିଯାଏ । ତାଙ୍କର ଏକ ଦିନରେ ୧୪ ମନ୍ୱନ୍ତର ମନୁ ବଦଳିଥାଆନ୍ତି । ଗୋଟିଏ ମନ୍ୱନ୍ତରରେ ୭୧ ଥର ଚାରିଯୁଗ ବିତିଥାଏ । ସେହି କାଳରେ ମନୁ, ମନ୍ୱନ୍ତରର ଦେବଗଣ, ଇନ୍ଦ୍ର, ମନୁପୁତ୍ର, ସପ୍ତର୍ଷି ଓ ଭଗବାନଙ୍କର ଏକ ଅଂଶାବତାର ଏହି ଛଅଜଣ ରହିଥାଆନ୍ତି । ଏହି ଛଅଜଣଙ୍କର ଶାସନକାଳରେ ନାମ ହିଁ ମନ୍ୱନ୍ତର । ପୁରାଣରେ ସମାସବ୍ୟାସଙ୍କଠାରୁ ଚତୁର୍ଦ୍ଦଶ ମନ୍ୱନ୍ତର ବିଷୟ ବର୍ଣ୍ଣିତ ହୋଇଛି ।

୬. ବଂଶ:- ବ୍ରହ୍ମାଙ୍କଠାରୁ ସୂର୍ଯ୍ୟବଂଶ, ଚନ୍ଦ୍ରବଂଶ ଓ ଋଷିବଂଶ ଆଦି ବଂଶର ଉତ୍ପତ୍ତି ହୋଇଛି । ସେହି ବ୍ରହ୍ମାଙ୍କର ଯେତେ ବଂଶଧର ହୋଇ ଯାଇଛନ୍ତି, ଯେଉଁମାନେ ଅଛନ୍ତି ଓ ଭବିଷ୍ୟତକୁ ଯେଉଁମାନେ ହେବେ, ତାହା ପୁରାଣରେ ବଂଶ ନାମରେ ଅଭିହିତ ହୋଇଛି । ପୁରାଣରେ ଏହିପରି ଅନେକ ବଂଶର ବର୍ଣ୍ଣନା କରାଯାଇଛି ।

୭. ବଂଶାନୁକଥା:- ଏହି ବ୍ରହ୍ମାଙ୍କଠାରୁ ଉତ୍ପନ୍ନ ବଂଶରେ ଯେଉଁସବୁ ବଡ଼ ବଡ଼ ପରାକ୍ରମୀ ମହର୍ଷି, ରାଜର୍ଷି ଓ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତି ଆବିର୍ଭାବ ହୋଇ ଯାଇଛନ୍ତି, ସେମାନଙ୍କର ତଥା ସେମାନଙ୍କର ବଂଶଧରଙ୍କ ଚରିତ୍ରକୁ 'ବଂଶାନୁକଥା' କୁହାଯାଏ ।

୮. ସଂସ୍ଥା:- ଯାହା ସୃଷ୍ଟି ହୁଏ, ତାହାର ବିନାଶ ଅବଶ୍ୟମ୍ଭାବୀ । ଏ ଜଗତ ଯେତେବେଳେ ସୃଷ୍ଟି ହୋଇଛି, ସେତେବେଳେ ତାହା ସଂହାର ବି ହେବ । ଦେହ ଯେତେବେଳେ ସୃଷ୍ଟି ହୋଇଛି, ତାହା ନିଶ୍ଚୟ ବିନାଶ ପ୍ରାପ୍ତ ହେବ । ନିତ୍ୟ, ନୈମିତ୍ତିକ, ପ୍ରାକୃତିକ, ଆତ୍ୟନ୍ତିକ ଏହିପରି ଚାରି ପ୍ରକାର ପ୍ରଳୟ ହୁଏ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ଅଛି । ପୂର୍ବରୁ ସେ ସମ୍ବନ୍ଧରେ କୁହାଯାଇଛି । ଏହି ପ୍ରଳୟକୁ ହିଁ ପୌରାଣିକ ଭାଷାରେ 'ସଂସ୍ଥା' କୁହାଯାଏ ।

୯. ହେତୁ:- ବର୍ତ୍ତମାନ ବିଚାର କରିବାର କଥା ଯେ, କାରଣ ବିନା କୌଣସି କାର୍ଯ୍ୟ ହୁଏ ନାହିଁ । ପ୍ରୟୋଜନ ବିନା କୌଣସି କାର୍ଯ୍ୟରେ ମନ ପ୍ରବୃତ୍ତ ହୁଏ ନାହିଁ । ତେବେ ଏ ବିଶାଳ ସଂସାର ଉତ୍ପନ୍ନ ହେବାର କାରଣ କ'ଣ ? ଶାସ୍ତ୍ରକାରମାନେ କହିଛନ୍ତି, ଜୀବର ଭୋଗ ପାଇଁ ତଥା ମୋକ୍ଷ ନିମିତ୍ତ ଏ ସଂସାରର ସୃଷ୍ଟି । ଏହି ଜୀବ କର୍ମରେ ପ୍ରବୃତ୍ତ ହେବାର କାରଣ କ'ଣ ? ଏ ପ୍ରଶ୍ନ ଉପରେ ଅନେକ ଯୁକ୍ତି ବଢ଼ାଯାଏ । ସାଧାରଣ ଭୂତ ହୋଇ ହିଁ ଜୀବ କର୍ମରେ ପ୍ରବୃତ୍ତ ହୁଏ । ଜୀବ ଜଡ଼ ନୁହେଁ, ସେ ଚୈତନ୍ୟପ୍ରଧାନ । ତେଣୁ ଏହାକୁ କେହି କେହି 'ଅନୁଶୟୀ' ବୋଲି କହନ୍ତି ।

ବ୍ରହ୍ମ ତ ନିରୁପାଧିକ, ତା'ଠାରେ କୌଣସି ପ୍ରକାରର ଉପାଧି ନାହିଁ । କିନ୍ତୁ ଜୀବ ହେଉଛି ଉପାଧିପ୍ରଧାନ । ଏଥିପାଇଁ କେହି କେହି ତାକୁ 'ଅବ୍ୟାକୃତ' ବୋଲି କହିଥାଆନ୍ତି । ଜୀବ ନ ଥିଲେ ଏ ଚରାଚର ଜଗତର ପ୍ରାପ୍ତି ହୋଇପାରନ୍ତା ନାହିଁ । ଏଥିପାଇଁ ଏହି ସର୍ଗ, ସ୍ଥିତପ୍ରଳୟର 'ହେତୁ' ବୋଲି ଜୀବକୁ କହିଛି ।

୧୦. ଅପାଶ୍ରୟ:- ଯିଏ ଏ ଜଗତରେ ସାଧାରଣତଃ ଓତପ୍ରୋତ ଜଡ଼ିତ, ଯେପରି କି ପେଟରେ ତନ୍ତୁ ତଥା ଘଟରେ ମୃତ୍ତିକା ଓତପ୍ରୋତ ଭାବରେ ଜଡ଼ିତ ରହିଛି । ଯିଏ ଜଗତବ୍ୟାପ୍ତ ହୋଇ ମଧ୍ୟ ଜଗତ୍‌ରୁ ସର୍ବଥା ପୃଥକ୍, ସେହି ବ୍ରହ୍ମକୁ ହିଁ ପୌରାଣିକ ଭାଷାରେ 'ଅପାଶ୍ରୟ' ସଂଜ୍ଞା ଦିଆଯାଇଛି । ଜୀବର ତିନି ଅବସ୍ଥା, ଯଥା ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି । ଏ ତିନିଟି ହେଉଛି ମାୟାମୟ ବୃତ୍ତି । ଏଥିରେ ବିଶ୍ୱ ତୈଜସ ଓ ପ୍ରାଜ୍ଞ ରୂପରେ ବ୍ରହ୍ମ ହିଁ ବ୍ରହ୍ମ । ଏହାର ନାମ ଅନ୍ୱୟ । ଯେପରି କି ସବୁକିଛି ବ୍ରହ୍ମମୟ । ଏହି ତିନି ଅବସ୍ଥା ପରେ ଯେଉଁ ତୁରୀୟ ଅବସ୍ଥା ରହିଛି ତାହାକୁ ବ୍ୟତିରେକ କୁହାଯାଏ । ଯେପରି କି ଅନ୍ନ ବ୍ରହ୍ମ ନୁହେଁ, ପ୍ରାଣ ବ୍ରହ୍ମ ନୁହେଁ । ନାହିଁ ନାହିଁ କହି ଶେଷକୁ ଅବଶିଷ୍ଟ ଯାହା ରହିଯାଏ, ତାହା ହିଁ ବ୍ରହ୍ମ । ଅନ୍ୱୟ ଏବଂ ବ୍ୟତିରେକ ଦ୍ୱାରା ଯାହା ସିଦ୍ଧ ହୁଏ, ତାହା ହିଁ ଦଶମ ତତ୍ତ୍ୱର ଅପାଶ୍ରୟ ବ୍ରହ୍ମ । ସମସ୍ତ ବେଦ ପୁରାଣ ଏହି ଦଶମ ତତ୍ତ୍ୱର ପ୍ରତିପାଦନ କରିଅଛନ୍ତି । ଏହି ଦଶମ ତତ୍ତ୍ୱର ବିଶୁଦ୍ଧି ନିମିତ୍ତ ହିଁ ଶେଷ ନଅଟିର ବିସ୍ତାର କରାଯାଇଛି । ଯେପରି କି ବାଛୁରୀକୁ ଗାଈ ପାଖକୁ ଛାଡ଼ିବା, ଦୁଧ ଦୁହିଁବା, ଦୁଧକୁ ଗରମ କରିବା, ସେଥିରେ ମହି ପକାଇବା, ବସାଇବା, ଅନ୍ୟ ହାଣ୍ଡିରେ ତାହା ଅଜାଡ଼ିବା, ଖୁଆ ନେଇ ତାହା ମନ୍ଥିବା, ସେଥିରୁ ଲହୁଣୀ ବାହାର କରିବା ଓ ପୁନଶ୍ଚ ତାକୁ ନିଆଁରେ ବସାଇ ସେଥିରୁ ଘୃତ ବାହାର କରିବା ଆଦି ଯେତେ କ୍ରିୟା ରହିଛି, ସେ ସମସ୍ତ କ୍ରିୟା କେବଳ ଘୃତ ବାହାର କରିବା ନିମିତ୍ତ । ଘୃତ ଦୁଗ୍ଧ ମଧ୍ୟରେ ସର୍ବତ୍ର ବ୍ୟାପ୍ତ ହୋଇ ରହିଛି ଓ ପୃଥକ୍ ହୋଇ ମଧ୍ୟ ରହିଛି । ସେହିପରି ବ୍ରହ୍ମ ସମଗ୍ର ଜଗତ୍‌ବ୍ୟାପ୍ତ ଓ ଜଗତରୁ ବି ଭିନ୍ନ ।''

ଶୌନକ ପଚାରିଲେ—''ହେ ସୂତ ! କେବଳ ଗୋଟିଏ ମାତ୍ର ବସ୍ତୁ ସର୍ବତ୍ର ବ୍ୟାପ୍ତ ଓ ସେଥିରୁ ସର୍ବତ୍ର ଭିନ୍ନ କିପରି ସମ୍ଭବ ହୋଇ ପାରେ ?''

ସୂତ କହିଲେ—''ମହାରାଜ ! ଏଥିରେ କ୍ଷତି କ'ଣ ? ଦେଖନ୍ତୁ ଘଟର ପ୍ରତି ଅଣୁରେ ମୃତ୍ତିକା ବ୍ୟାପ୍ତ, ଘଟର ଏପରି କୌଣସି ସ୍ଥାନ ନାହିଁ, ଯେଉଁଠାରେ କି ମୃତ୍ତିକା ନାହିଁ । ଏହା ହୋଇଥିଲେ ମଧ୍ୟ ମୃତ୍ତିକା ଘଟଠାରୁ ପୃଥକ୍ । ଘଟର ଉପର, ତଳ, ବାହାର, ଭିତରର ନାମ ରୂପକୁ ଛାଡ଼ି ଯାହା କିଛି ଅଛି, ସେ ସମସ୍ତ ହିଁ ମୃତ୍ତିକା । ମୃତ୍ତିକା ବ୍ୟତୀତ ସେଥିରେ ଅନ୍ୟ କିଛି ନାହିଁ । ସେହିପରି ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସବୁ ଅବସ୍ଥାରେ ଅଧିଷ୍ଠାନରୂପେ ବ୍ରହ୍ମ ହିଁ ବ୍ୟାପ୍ତ । ଯେତେ ପିଣ୍ଡ ରହିଛି, ସବୁଥିରେ ବ୍ରହ୍ମ ବ୍ୟାପ୍ତ । ସେହି ହିଁ ସାକ୍ଷୀରୂପେ ସଚ୍ଚିଦାନନ୍ଦ ଘନ ବିଗ୍ରହ, ନିରୀହ ନିର୍ଲେପ, ବ୍ରହ୍ମ ନାମରେ ସବୁଥିରୁ ପୃଥକ୍ । ତାହାରି ସଂଜ୍ଞାକୁ ହିଁ 'ଅପାଶ୍ରୟ' କୁହାଯାଇଛି ।

ଶୌନକ ପଚାରିଲେ—''ହେ ସୂତ ! ଯଦି ବ୍ରହ୍ମ ସର୍ବତ୍ର ବ୍ୟାପ୍ତ, ତାହାହେଲେ ଜୀବର ଭଲ ମନ୍ଦ କର୍ମରେ ପ୍ରବୃତ୍ତି ହୁଏ କାହିଁକି ?''

ସୂତ କହିଲେ—''ମହାରାଜ ! ମାୟାର ସତ୍ତ୍ୱ, ରଜ ଓ ତମ ଏହି ତିନିଗୁଣ ହିଁ ଜୀବକୁ କର୍ମରେ ପ୍ରବୃତ୍ତ କରାଏ । ଯେ ପର୍ଯ୍ୟନ୍ତ ତ୍ରିଗୁଣାତ୍ମିକା ଉର୍ମି ଉଠୁଥାଏ, ସେ ପର୍ଯ୍ୟନ୍ତ ଜୀବ କର୍ମରେ ପ୍ରବୃତ୍ତ ହେଉଥାଏ । ସେ ପର୍ଯ୍ୟନ୍ତ ତାକୁ ଶାଶ୍ୱତୀ ଶାନ୍ତି ମିଳେ ନାହିଁ । ଯେତେବେଳେ ତାହାର ଚିତ୍ତ ସତ୍ତ୍ୱାଦି ତିନି ପ୍ରକାରର ବୃତ୍ତିକୁ ତ୍ୟାଗକରି ସେ ଗୁଣାତୀତ ଅବସ୍ଥାରେ ପଦାର୍ପଣ କରେ, ସେତେବେଳେ ସ୍ୱୟଂ ଶାନ୍ତ ହୋଇଯାଏ । ଦୀପରେ ଯେ ପର୍ଯ୍ୟନ୍ତ ତୈଳ ଥାଏ, ସେ ପର୍ଯ୍ୟନ୍ତ ତାହା ଜଳୁଥାଏ । ଯେତେବେଳେ ତୈଳ ସରିଯାଏ, ସେତେବେଳେ ତାହା ଆପେ ଆପେ ଶାନ୍ତ ହୋଇଯାଏ ।''

ଶୌନକ ପଚାରିଲେ—''ହେ ସୂତ ! ତ୍ରିଗୁଣମୟୀ ଉର୍ମିର ଅନ୍ତ କିପରି ହୁଏ ?''

ସୂତ କହିଲେ—''ମହାରାଜ ! ସତ୍ ଅସତ୍ ବିବେକରୁ ସତ୍ ବସ୍ତୁର ଅନୁଭବ ହେବାକୁ ଲାଗେ । ସେତେବେଳେ ଅସତ୍ ଆପେ ଆପେ ନିରାକରଣ ହୋଇଯାଏ । ବୈରାଗ୍ୟ ଓ ବିବେକଦ୍ୱାରା ଜ୍ଞାନ ଲାଭ ହୁଏ । ଜ୍ଞାନ (ଆତ୍ମଜ୍ଞାନ) ଲାଭ ହେଲେ ମୁକ୍ତି ଲାଭ ହୁଏ । ଜ୍ଞାନଲାଭ ହେଲେ ଚିତ୍ତବୃତ୍ତି ଆପେ ଆପେ ଶାନ୍ତ ହୋଇଯାଏ । କିମ୍ବା ଯୋଗାଭ୍ୟାସ କରିବାଦ୍ୱାରା ବିକ୍ଷିପ୍ତ ଚିତ୍ତବୃତ୍ତି ନିରୋଧ ହୋଇଯାଏ ଓ ନିରୁଦ୍ଧ ହେଲେ ଚିତ୍ତର ସ୍ୱ ସ୍ୱରୂପରେ ଅବସ୍ଥାନ ହୁଏ । ତେଣୁ ଯେ କୌଣସି ପ୍ରକାରେ ଆତ୍ମତତ୍ତ୍ୱ ସମ୍ବନ୍ଧରେ ଯଥାର୍ଥ ବୋଧ ହେବା ଆବଶ୍ୟକ । ଆତ୍ମତତ୍ତ୍ୱ-ବୋଧ ହୋଇଗଲେ ଅବିଦ୍ୟାଜନିତ କର୍ମ ପ୍ରବୃତ୍ତିରୁ ଚିତ୍ତ ଆପେ ଆପେ ନିବୃତ୍ତ ହୋଇଯାଏ ।

''ହେ ମୁନିଗଣ ! ଏଥିପାଇଁ ସର୍ଗ, ବିସର୍ଗ, ବୃତ୍ତି, ରକ୍ଷା, ମନ୍ୱନ୍ତର, ବଂଶ, ବଂଶାନୁଚରିତ, ସଂସ୍ଥା, ହେତୁ ଓ ଅପାଶ୍ରୟ ଏହି ଦଶଟିର ବର୍ଣ୍ଣନା ଯେଉଁଥିରେ କରାଯାଇଥାଏ, ତାହାକୁ ପୁରାଣ କୁହାଯାଏ । ଅଷ୍ଟାଦଶ ପୁରାଣର ନାମ ମୁଁ ପୂର୍ବରୁ ଆପଣମାନଙ୍କୁ କହିଛି । ବ୍ରହ୍ମ, ପାଦ୍ମ, ବୈଷ୍ଣବ, ଶୈବ, ଲୈଙ୍ଗ, ଗାରୁଡ଼, ନାରଦୀୟ, ଭାଗବତ, ଆଗ୍ନେୟ, ସ୍କନ୍ଦ, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ମାର୍କଣ୍ଡେୟ, ବାମନ, ବରାହ, ମତ୍ସ୍ୟ, କୌର୍ମ ଓ ବ୍ରହ୍ମାଣ୍ଡ ଏହା ହେଉଛି ଅଷ୍ଟାଦଶ ପୁରାଣ । ମୋର ପିତା ଭଗବାନ ବ୍ୟାସଙ୍କ ନିକଟରୁ ଏ ସମସ୍ତ ଶିକ୍ଷା କରିଥିଲେ । ମୁଁ ମୋ ପିତାଙ୍କଠାରୁ ଓ ଅନ୍ୟାନ୍ୟ ଋଷିଙ୍କଠାରୁ ଏ ସମସ୍ତ ଶିକ୍ଷା କରିଅଛି । ସେହିପରି ବ୍ୟାସଙ୍କ ଶିଷ୍ୟ ପ୍ରଶିଷ୍ୟଙ୍କଦ୍ୱାରା ପ୍ରସ୍ତୁତ ହୋଇଥିବା ବୈଦିକ ତଥା ପୌରାଣିକ ଶାଖାଗୁଡ଼ିକର ବିସ୍ତାର ସମ୍ବନ୍ଧରେ ମୁଁ ଆପଣଙ୍କୁ କହିଲି । ଯେ କେହି ଏହି ଶାଖାବିସ୍ତାରକୁ ପାଠ କରନ୍ତି ବା ଶ୍ରବଣ କରନ୍ତି, ସେମାନଙ୍କର ବ୍ରହ୍ମତେଜ ବୃଦ୍ଧି ହୁଏ । ଯିଏ ବେଦର ଶାଖାଗୁଡ଼ିକୁ ନ ପଢ଼ିପାରେ, ସିଏ ଏହି ଶାଖାବିସ୍ତାର ନାମକ ଅଧ୍ୟାୟଗୁଡ଼ିକୁ ଶ୍ରବଣ କରିବା ନିତ୍ୟାନ୍ତ ଆବଶ୍ୟକ । ଏହି ଋଷିମାନଙ୍କର ନାମକୀର୍ତ୍ତନ ମଧ୍ୟ ଅତ୍ୟନ୍ତ ପୁଣ୍ୟଫଳପ୍ରଦ । ମୁଁ ଅତି ସଂକ୍ଷେପରେ ଏହା ଆପଣମାନଙ୍କୁ କହିଲି । ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଇଚ୍ଛା କରୁଛନ୍ତି କହନ୍ତୁ । ଯେହେତୁ ଆପଣମାନେ ମୋ କଥାକୁ ଅତ୍ୟନ୍ତ ମନଯୋଗ ସହକାରେ ଶୁଣୁଛନ୍ତି, ଭଗବାନଙ୍କ କୃପାରୁ ଆପଣମାନେ ମାର୍କଣ୍ଡେୟ ଋଷିଙ୍କ ଭଳି ଦୀର୍ଘାୟୁ ହୁଅନ୍ତି ।''

ଏହା ଶୁଣି ଶୌନକ ପଚାରିଲେ—''ହେ ସୂତ ! ଆପଣ ଭଲ କଥାଟିଏ ସ୍ମରଣ କରାଇଦେଲେ । ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ । ଆପଣ ସମସ୍ତ ବକ୍ତାଙ୍କଠାରୁ ଶ୍ରେଷ୍ଠ ହୁଅନ୍ତୁ । ଆପଣଙ୍କର ଜ୍ଞାନ ଅମୋଘ ହେଉ । ଆପଣଙ୍କର ସ୍ମରଣଶକ୍ତି ଅଦ୍ଭୁତ । ପରମପିତା ପରମାତ୍ମାଙ୍କ ପାଦପଦ୍ମରେ ଆମ୍ଭେମାନେ ପ୍ରାର୍ଥନା କରୁଛୁ, ଆପଣ ଦୀର୍ଘାୟୁ ହୁଅନ୍ତୁ । ଆପଣ ମଧ୍ୟ ମାର୍କଣ୍ଡେୟ ସଦୃଶ ଚିରଜୀବୀ ହୁଅନ୍ତୁ । ବହୁଦିନରୁ ଆମ୍ଭମାନଙ୍କର ଶଙ୍କା ରହି

ଆସିଥିବା ମାର୍କଣ୍ଡେୟ ଋଷିଙ୍କ ବିଷୟ ସ୍ମରଣ କରାଇ ଆପଣ ଆମ୍ଭମାନଙ୍କ ଶଙ୍କାକୁ ଉଜ୍ଜୀବିତ କରାଇଲେ । ଏବେ ଆପଣ ତାହା ସମାଧାନ କରନ୍ତୁ । କାରଣ ଆପଣ ଅପାର ସଂସାର ସାଗରରେ ଉବୁଟୁବୁ ହେଉଥିବା ପ୍ରାଣୀମାନଙ୍କର ପଥପ୍ରଦର୍ଶକ ଅଟନ୍ତି । ଆପଣ ଆଜ୍ଞା ଦେଲେ ଆମ୍ଭେମାନେ ସେହି ଶଙ୍କା ବିଷୟ ଆପଣଙ୍କ ଆଗରେ ଉପସ୍ଥାପିତ କରିବୁ ।''

ସୂତ କହିଲେ—''ମହାରାଜ ! ଆପଣ କହନ୍ତୁ ମୁଁ ମୋ ଗୁରୁଙ୍କଠାରୁ ଯାହାକିଛି ଶିକ୍ଷା କରିଛି, ତାହା କହି ଆପଣମାନଙ୍କ ଶଙ୍କା ସମାଧାନ କରିବାକୁ ଚେଷ୍ଟା କରିବି । ଆପଣ ତାହା ପ୍ରକାଶ କରନ୍ତୁ ।''

ଶୌନକ କହିଲେ—''ହେ ସୂତ ! ଆମ୍ଭମାନଙ୍କର ଏହି ଶଙ୍କା ଯେ, ସମସ୍ତେ କହନ୍ତି ମାର୍କଣ୍ଡେୟ ଋଷି ଚିରାୟୁ । ଆମ୍ଭେମାନେ ଶୁଣିଛୁ ଯେ, ପ୍ରଳୟ କାଳରେ ଏହି ଚରାଚର ବିଶ୍ୱ ବିଲୀନ ହୋଇଯାଏ । ସେତେବେଳେ କିଛିହେଲେ ନ ଥାଏ । ପୁନଶ୍ଚ ଶୁଣିଛୁ ଯେ, ସେହି ପ୍ରଳୟ କାଳରେ ମାର୍କଣ୍ଡେୟ ଋଷି କେବଳ ରହିଥାଆନ୍ତି । ସେ ଏହିପରି ଅନେକ ପ୍ରଳୟ ଦେଖିଛନ୍ତି । କଳ୍ପ ଶେଷରେ ତ ପ୍ରଳୟ ହୁଏ । ଗୋଟିଏ କଳ୍ପରେ ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗ ଏହି ଚାରିଯୁଗ ସହସ୍ର ସହସ୍ରଥର ଭୋଗ ହୁଏ । କିନ୍ତୁ ମାର୍କଣ୍ଡେୟ ଋଷିଙ୍କର ଜନ୍ମ ତ ଏହି କଳ୍ପରେ ହୋଇଛି । ଆମ ଭାର୍ଗବ କୁଳରେ ତ ସେ ଜନ୍ମଲାଭ କରିଛନ୍ତି । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ କୌଣସି ପ୍ରଳୟ ତ ହୋଇ ନାହିଁ । ତାହା ହୋଇଥିଲେ ମଧ୍ୟ ପ୍ରଳୟ ହେବାର ସମୟ ମଧ୍ୟ ତାହା କଦାପି ହୋଇ ନ ପାରେ ? ତାହାହେଲେ ସେ ପୁଣି ପ୍ରଳୟକାଳୀନ ଜଳରେ କିପରି ଏକାକୀ ବିଚରଣ କରୁଥିଲେ ? ବଟପତ୍ର ଉପରେ ଶୟନ କରିଥିବା ବାଳମୁକୁନ୍ଦ ଭଗବାନଙ୍କର ଦର୍ଶନ ସେ କିପରି ଅବା କରୁଥିଲେ ? ସେ କିପରି ତାଙ୍କ ଶ୍ୱାସରେ ତାଙ୍କ ଉଦରରେ ପ୍ରବେଶ କଲେ ? ଏହି ବିଷୟଗୁଡ଼ିକ ଉପରେ ଆମ୍ଭମାନଙ୍କର ସନ୍ଦେହ ଜାତ ହେଉଛି । ହେ ସୂତ ! ଆପଣ ପୌରାଣିକମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ତେଣୁ ଆପଣ ଆମ୍ଭମାନଙ୍କର ଏହି ସନ୍ଦେହକୁ ମୋଚନ କରନ୍ତୁ । ତାହା ଶ୍ରବଣ କରିବା ପାଇଁ ଆମ୍ଭେମାନଙ୍କର ଅତ୍ୟନ୍ତ ଉତ୍କଣ୍ଠା ଜାତ ହୋଇଛି । ତେଣୁ କୃପାକରି ଏହି ସମସ୍ତ ପ୍ରଶ୍ନର ଉତ୍ତର ଦେଇ ଆମ୍ଭମାନଙ୍କର ସଂଶୟ ଦୂର କରନ୍ତୁ ।''

ଏହି ପ୍ରଶ୍ନ ସବୁ ଶୁଣି ସୂତ ହସି ହସି କହିଲେ—''ମହାରାଜ ! ମୁଁ ଆପଣମାନଙ୍କ ପ୍ରଶ୍ନର ଅଭିପ୍ରାୟ ବୁଝି ପାରୁଛି । ଏବେ ଆପଣମାନେ ପୁରାଣାଚାର୍ଯ୍ୟ ଭଗବାନ୍ ମାର୍କଣ୍ଡେୟଙ୍କର ଚରିତ୍ର ଶୁଣିବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ପୁରାଣକଥାର ଅନ୍ତଃରେ ମାର୍କଣ୍ଡେୟ ଋଷି କିପରି ଚିରଜୀବୀ ଥିଲେ ତାହା ଆପଣମାନଙ୍କର ଶୁଣିବାକୁ ଇଚ୍ଛା । ଏହା ଶୁଣିବାଦ୍ୱାରା ଶ୍ରୋତା ଓ ବକ୍ତା ସମସ୍ତେ ଚିରାୟୁ ହୁଅନ୍ତି । ତାହାହେଲେ ଠିକ୍ ଅଛି, ମୁଁ ଆପଣମାନଙ୍କୁ ମହର୍ଷି ମାର୍କଣ୍ଡେୟଙ୍କ ଚରିତ୍ର ଶୁଣାଉଛି, ଆପଣମାନେ ତାହା ମନଧ୍ୟାନ ଦେଇ ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ବ୍ରହ୍ମବିବର୍ତ୍ତ ପୁରାନ ଲୈଙ୍ଗ ବାରାହ ପୁରାତନ ।
ପୁନି ଇସ୍କନ୍ଧ ପୁରାନ ହୁ ବାମନ କୂର୍ମ ସନାତନ ।।
ମତ୍ସ୍ୟ, ଗରୁଡ଼, ବ୍ରହ୍ମାଣ୍ଡ ଅଠାରହ ସଦ ମିଲି ହୋଵୈଂ ।
ପଦ୍ମୈଂ ସୁନୈଂ ନର ନାରି ସହଜ ଜନମନି ଅଘଯୋବୈଂ ।।
ବେଦ ପୁରାନନି ଭେଦ କୂଁ, ନାମ ମାତ୍ର ହୂ ଜେ ରଟୈଂ ।
ପଢ଼ୈଂ ପ୍ରେମ ତୈଂ ନିୟମଯୁତ, ତିନିକେ ସବ ପାତକ ଜଟୈଂ ।।



# ମାର୍କଣ୍ଡେୟ ମୁନିଙ୍କ ତପସ୍ୟା

**ପ୍ରାପ୍ତଦ୍ୱିଜାତିସଂସ୍କାରୋ ମାର୍କଣ୍ଡେୟଃ ପିତୁଃ କ୍ରମାତ୍ ।**
**ଛନ୍ଦାଂସ୍ୟଧୀତ୍ୟ ଧର୍ମେଣ ତପଃସ୍ୱାଧ୍ୟାୟସଂଯୁତଃ ॥** ☆
(ଶ୍ରୀ ଭା: ୧୨ସ୍କ: ୮ଅ: ୭ଶ୍ଳୋକ)

ଷଟ୍‌ପଦୀ

ଶୌନକ ବୋଲେ—ସୂତ ! ହୋନ୍ତୁ ଚିରଜୀବୀ ଭାଇ ।
ଭଟକି ରହେ ଜଗମାହିଁ ଶୈଳ ଅତି ସରଲ ଦିଖାଇ ॥
ମାର୍କଣ୍ଡେୟ ଚିରାୟୁ ତାତ ! କୈସେ କହଲାବେଂ ।
କଲ୍ପ ପ୍ରଲୟ ନହିଁ ଭଇ ପ୍ରଲୟ ଜଲ ମଧ୍ୟ ତୈରାବେଂ ॥
ସୂତ କହେ—ଶୌନକ ! ସୁନହୁ, ମାୟା ମେଂ ସମ୍ଭବ ସକଲ ।
ମାୟା କୀ ହୀ ପ୍ରଲୟ ମେଂ, ଭୟେ ମହାମୁନି ଅତି ବିକଲ ॥

ବିଦ୍ୟା ବିନୟ ପ୍ରଦାନ କରେ । ବିଦ୍ୟା ଅଧ୍ୟୟନ କରି ଯାହାର ବିନୟ ଭାବ ନାହିଁ, ସେ ସେହି ଭାରୀ ବୃକ୍ଷ ସମାନ, ଯାହାକି ବହୁତ ବଢ଼ିଯାଇଥାଏ, କିନ୍ତୁ ଫଳ ଫଳି ନ ଥାଏ । ବିନମ୍ର ହିଁ ବିଦ୍ୟାକୁ ଉଜ୍ଜ୍ୱଳ କରାଏ । ବିନୟ ବିନା ବିଦ୍ୟା ବ୍ୟର୍ଥ, ନିଷ୍ଫଳ ଓ ଭାର ସଦୃଶ । ଯେପରି ଫଳବାନ ବୃକ୍ଷ ନତ ହୋଇଯାଏ, ସେହିପରି ବିଦ୍ୱାନ୍‌ବ୍ୟକ୍ତି ବଡ଼ମାନଙ୍କ ସମ୍ମୁଖରେ ସର୍ବଦା ନତମସ୍ତକ ହୋଇଥାଏ । ସମସ୍ତ ଜୀବଧାରୀଙ୍କ ମଧ୍ୟରେ ମନୁଷ୍ୟ ଏପରି ଏକ ପ୍ରାଣୀ, ଯାହାର ଶିର ଊର୍ଦ୍ଧ୍ୱକୁ ଓ ତାହା ଇଚ୍ଛାନୁସାରେ ନତ କରାଯାଇପାରେ । ଯାହାର ଆଚରଣ ବିଶୁଦ୍ଧ, ତାହାର ଶିର ତ ଉଚ୍ଚ ହେବା ସ୍ୱାଭାବିକ, ଦୀନତାପୂର୍ବକ ସେ କାହାରି ନିକଟରେ ନତ ହୁଏ ନାହିଁ । ଯଦି କେବେ ଶିର ନତ କରେ, ତାହାହେଲେ ଦେବତାଙ୍କ ଆଗରେ, ଭଗବାନଙ୍କ ଆଗରେ କିମ୍ବା ପୂଜ୍ୟ ଗୁରୁଜନଙ୍କ ଆଗରେ ଅଭିବାଦନଶୀଳ ହୋଇ କରିଥାଏ । ବଡ଼ଙ୍କୁ ଦେଖିବାମାତ୍ରେ ଯାହାର ଶିର ସ୍ୱତଃ ନତ ହୋଇଯାଏ, ଦୁଇହାତର ଅଞ୍ଜଳି ସ୍ୱୟଂ ଯୋଡ଼ି ହୋଇଯାଏ, ତା ପାଇଁ ସଂସାରରେ କିଛି ହେଲେ ଅସମ୍ଭବ ନୁହେଁ । ସେ ଆୟୁ, ବିଦ୍ୟା ଓ ବଳ ସବୁକିଛି ଗୁରୁଜନଙ୍କ କୃପାରୁ ଲାଭ କରିପାରେ ।

ସୂତ କହିଲେ—"ମୁନିଗଣ ! ଆପଣମାନେ ମୋତେ ମହାମୁନି ମାର୍କଣ୍ଡେୟଙ୍କ ଚରିତ୍ର ସମ୍ବନ୍ଧରେ ପଚାରୁଛନ୍ତି । ଏ ପ୍ରଶ୍ନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଅନେକ ଲୋକ ଏହି ବିଷୟରେ ସନ୍ଦେହାନ । ତେଣୁ ଆପଣଙ୍କ ପ୍ରଶ୍ନ ଯୋଗୁ ସମସ୍ତଙ୍କର ସଂଶୟ ଦୂର ହୋଇଯିବ । ମାର୍କଣ୍ଡେୟ ମୁନିଙ୍କ ପ୍ରସଙ୍ଗରେ ହିଁ ମୋତେ ଶ୍ରୀ ନାରାୟଣଙ୍କ ମହିମା ବର୍ଣ୍ଣନା କରିବାର ଅବସର ମିଳିଯିବ । ଭଗବାନ୍ ଓ ଭକ୍ତଙ୍କ କଥା କଳିକଳ୍ମଷକୁ କାଟି ପାରିବ ।

---

☆ ବ୍ରହ୍ମାଙ୍କ ପୁତ୍ର ଭୃଗୁମୁନି । ଧାତା ବିଧାତା ସୁତ ବେନି ॥
ବିଧାତା ସୁତ ଯେ ମୃକଣ୍ଡ । ଏହାଙ୍କ ସୁତ ମାରକଣ୍ଡ ॥
ବ୍ରାହ୍ମଣ କର୍ମରେ ସଂସ୍କାର । ପିତା ତା କଲେ ତପାବର ॥
ବ୍ରହ୍ମଚର୍ଯ୍ୟ ବ୍ରତ ଯେ କଲେ । ଚାରି ବେଦ ପାଠ କଲେ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୮ଅ.)

"ଭୃଗୁ ବଂଶରେ ମୃକଣ୍ଡ ନାମକ ଜଣେ ବଡ଼ ତପସ୍ୱୀ ମୁନି ଥିଲେ । ବୃଦ୍ଧାବସ୍ଥାରେ ତାଙ୍କର ଏକ ପୁତ୍ର ହୋଇଥିଲା । ମୁନି ତାହାର ନାମ ମାର୍କଣ୍ଡେୟ ଦେଇଥିଲେ । ତାହାପରେ ମହାମୁନି ମୃକଣ୍ଡ ବନରେ ରହି ବାନପ୍ରସ୍ଥ ବ୍ରତ ପାଳନ କରିବାକୁ ଲାଗିଲେ । ବାଳକ ମାର୍କଣ୍ଡେୟ ନିଜ ପିତାଙ୍କ ସହିତ ବନରେ ରହି କ୍ରମେ ବଡ଼ ହେଲେ । ସେ ଅତ୍ୟନ୍ତ ସୁନ୍ଦର, ସରଳ ଓ ସୌମ୍ୟ ଥିଲେ । ସେ ବନରେ ମୂର୍ତ୍ତିମାନ ତପ ହିଁ ପ୍ରତୀତ ହେଉଥିଲେ । ତାଙ୍କର ସର୍ବାଙ୍ଗ ସୁନ୍ଦର ଓ ସୁଗଠିତ ଥିଲା । ସେ ଯାହା ଦେଖୁଥିଲେ, ସେଥିରେ ମୁଗ୍ଧ ହୋଇ ଯାଉଥିଲେ ଓ ତାଙ୍କୁ ଭଲ ନପାଇ ରହିପାରୁ ନଥିଲେ ।

ଦିନେ ସେ ଆଶ୍ରମରେ ପିତାଙ୍କ କୋଳରେ ବସି ଖେଳୁଥିବା ଅବସ୍ଥାରେ ସେଠାକୁ ଜଣେ ମୁନି ଆଗମନ କଲେ । ବାଳକ ମାର୍କଣ୍ଡେୟଙ୍କୁ ଦେଖି ସେ ବିମୁଗ୍ଧ ହୋଇଗଲେ । ସେହି ସୁନ୍ଦର ସରଳ ବାଳକ ହଠାତ୍ ତାଙ୍କ ଚିତ୍ତ ହରଣ କରିନେଇଥିଲା । ସେହି ମୁନି ଜ୍ୟୋତିଷ ବିଦ୍ୟାରେ ପାରଙ୍ଗମ ଥିଲେ । ହସ୍ତରେଖା ଆଦି ସାମୁଦ୍ରିକ ଶାସ୍ତ୍ର ମଧ୍ୟ ତାଙ୍କୁ ଭଲଭାବରେ ଜଣାଥିଲା ।

ମୃକଣ୍ଡ ମୁନି ତାଙ୍କୁ ବିନୀତ ଭାବରେ ପଚାରିଲେ—"ବ୍ରହ୍ମନ୍ ! ଆପଣ ମୋ ପୁତ୍ରଆଡ଼କୁ ଏପରି ଚକିତ ଦୃଷ୍ଟିରେ କାହିଁକି ଚାହିଁଛନ୍ତି ?"

ସେହି ମୁନି କହିଲେ—"ବ୍ରହ୍ମନ୍ ! ମୁଁ ସାମୁଦ୍ରିକ-ଶାସ୍ତ୍ର ଜାଣେ । ଆପଣଙ୍କ ପୁତ୍ରର ଲକ୍ଷଣମାନ ଦେଖି ମୁଁ ଚକିତ ହୋଇଯାଉଛି ।"

ଭବିଷ୍ୟତ କଥା ଜାଣିବା ପାଇଁ ତ ସହଜେ ସମସ୍ତେ ଆଗ୍ରହ ପ୍ରକାଶ କରନ୍ତି । ତେଣୁ ମୃକଣ୍ଡ ମୁନି ଅତ୍ୟନ୍ତ ଆଗ୍ରହର ସହିତ ପଚାରିଲେ—"ବ୍ରହ୍ମନ୍ ! ମୋ ପୁତ୍ରର କି କି ଲକ୍ଷଣ ଆପଣ ଦେଖି ପାରୁଛନ୍ତି ? ଆପଣ ତାହାର ହସ୍ତରେଖା ଦେଖି ତାହାର ଶୁଭାଶୁଭ ଫଳ ମୋତେ କହନ୍ତୁ ।"

ଏହା ଶୁଣି ମୁନି କହିଲେ—"ବ୍ରହ୍ମନ୍ ! ମୁଁ ଏହି ବାଳକର ଶୁଭ ଲକ୍ଷଣମାନ ଦେଖି ଆଶ୍ଚର୍ଯ୍ୟ ହେଉଛି । ଜଣେ ମନୁଷ୍ୟଠାରେ ଏକାଧାରରେ ଏତେ ଶୁଭଲକ୍ଷଣ ଦେଖାଯିବା ଅତ୍ୟନ୍ତ ବିରଳ । ଯଦି ଅନ୍ୟ କାହାଠାରେ ଏତେ ଶୁଭଲକ୍ଷଣ ଥାଆନ୍ତା, ତାହାହେଲେ ସେ ନିଶ୍ଚୟ ଅଜର ଅମର ହୁଅନ୍ତା । କିନ୍ତୁ ....." ଏତିକି କହି ସେହି ମୁନି ଚୁପ୍ ହୋଇଗଲେ ।

ମୃକଣ୍ଡ ମୁନି କହିଲେ—"ବିପ୍ରବର ! 'କିନ୍ତୁ' କହିଦେଇ ଆପଣ କାହିଁକି ଚୁପ୍ ହୋଇଗଲେ ? ତା'ପରେ କ'ଣ ହେବ କହନ୍ତୁ । ତା'ଠାରେ କ'ଣ କୌଣସି ଅଶୁଭ ଲକ୍ଷଣ ବି ରହିଛି ?"

ମୁନି ମୁହଁ ଶୁଖାଇ କହିଲେ—"ବ୍ରହ୍ମନ୍ ! ତା'ଠାରେ ଏପରି ଏକ ଅଶୁଭ ଲକ୍ଷଣ ଦୃଷ୍ଟିଗୋଚର ହେଉଛି ଯେ, ତାହାର ଫଳ ଶୁଣିଲେ ଆପଣ ଦୁଃଖିତ ହେବେ ।"

ଆଗ୍ରହ ପ୍ରକାଶ କରି ମୃକଣ୍ଡ ମୁନି ପଚାରିଲେ—"ହଁ ଆପଣ ସେହି ଅଶୁଭ ଲକ୍ଷଣ ବିଷୟ ମୋତେ କହନ୍ତୁ, ଏଥିରେ ସଂକୋଚ କରିବାର କ'ଣ ଅଛି ? ଖୋଲା ଖୋଲି ଭାବରେ ତାହା ପ୍ରକାଶ କରନ୍ତୁ ।"

ବ୍ରାହ୍ମଣ କହିଲେ—"ମୁନିବର ! ଏହା ତ କହିବାର କଥା ନୁହେଁ, କିନ୍ତୁ ନକହିଲେ ଆପଣ ସଂଶୟରେ ପଡ଼ିଯିବେ ଓ ଚିନ୍ତିତ ହେବେ । ତେଣୁ ତାହା ମୁଁ ଆପଣଙ୍କୁ କହୁଛି । ତାହାର ବିଶେଷ ରେଖା ରହିଛି । ଏହାର ଫଳ ଏହି ଯେ, ଆଜିଠାରୁ ଠିକ୍ ଛଅମାସ ପରେ ତାହାର ମୃତ୍ୟୁ ନିଶ୍ଚିତ ଭାବରେ ହେବ । ଏ କଥାକୁ ହୃଦୟଙ୍ଗମ କରି ଆପଣ ଏପରି ଯତ୍ନ କରନ୍ତୁ ଯଦ୍ଦ୍ୱାରା ଇହଲୋକ ଓ ପରଲୋକ ଉଭୟରେ ତାହାର କଲ୍ୟାଣ ହେବ ।"

ସୂତ କହିଲେ—"ମୁନିଗଣ ! ଏତିକି କହି ସେହି ବ୍ରାହ୍ମଣ ନିଜ ଇଚ୍ଛାନୁସାରେ ଅନ୍ୟତ୍ର ଚାଲିଗଲେ । ମୃକଣ୍ଡ ମୁନି ଚିନ୍ତା କରିବାକୁ ଲାଗିଲେ—'ଏପରି କି ଉପାୟ ଅଛି ଯେ, ଯଦ୍ଦ୍ୱାରା ମୋ ପୁତ୍ରର ଅଳ୍ପାୟୁର ଯୋଗ ଟଳିଯିବ ? ଏବେ ତ ତାକୁ ପାଞ୍ଚବର୍ଷ ବି ହୋଇ ନାହିଁ । ଛଅମାସ ପରେ ତାହାର ମୃତ୍ୟୁ ଯୋଗ । ପିତା ଆଗରେ ପୁତ୍ରର ମୃତ୍ୟୁ ଅତ୍ୟନ୍ତ ବିଭତ୍ସ କାର୍ଯ୍ୟ । ପିତା ଥାଉ ଥାଉ ପୁତ୍ର ଅଳ୍ପାୟୁ ହୋଇ ମୃତ୍ୟୁ ବରଣ କରିବା ଘୋର ପାପର ପରିଣାମ । ବର୍ତ୍ତମାନ ତ ସେ ବ୍ରତ ହୋଇନାହିଁ । ବ୍ରାହ୍ମଣମାନଙ୍କର ଆଶୀର୍ବାଦ ଅମୋଘ ହୁଏ । ଯଦି କୌଣସି ପ୍ରକାର ବ୍ରାହ୍ମଣମାନେ ତାକୁ ଚିରଂଜୀବୀ ହେବାପାଇଁ ଆଶୀର୍ବାଦ କରନ୍ତି, ତାହାହେଲେ ତାହାର ଅଳ୍ପାୟୁ ଯୋଗ ଟାଳି ଦିଆଯାଇ ପାରିବ ।"

ଏହିସବୁ କଥା ଚିନ୍ତାକରି ମହାମୁନି ମୃକଣ୍ଡ ବ୍ରତ ହେବାର ଅବସ୍ଥା ଆସିବା ପୂର୍ବରୁ ପୁତ୍ରର ଯଜ୍ଞୋପବୀତ ସଂସ୍କାର କରିଦେଲେ ଓ ସଦାଚାର ଶିକ୍ଷା ଦେଇ ତାକୁ କହିଲେ— "ଦେଖ ବାବୁ ! ତୁ ଯେଉଁଠାରେ ଯେପରି ଅବସ୍ଥାରେ ବ୍ରାହ୍ମଣଙ୍କୁ ଦେଖିବୁ ତାଙ୍କୁ ଶ୍ରଦ୍ଧାର ସହିତ ପ୍ରଣାମ କରିବୁ । ତୋ'ଠାରୁ ଯିଏ ବଡ଼ ହୋଇଥିବ ସମସ୍ତଙ୍କୁ ଅଭିବାଦନ କରିବୁ ।"

ବିନୟୀ ପୁତ୍ର ପିତାଙ୍କର ଆଜ୍ଞା ଶିରୋଧାର୍ଯ୍ୟ କଲା । ସେ ଯେଉଁଠାରେ ବିପ୍ରଙ୍କୁ ଦେଖିଲା, ସେଠାରେ ଅତ୍ୟନ୍ତ ଭକ୍ତିରେ ବିନୟାବନତ ହୋଇ ପ୍ରଣାମ କଲା । ସେ ଗୁରୁଜନଙ୍କୁ ପ୍ରଣାମ କରିବାରେ ଏକ ପ୍ରକାର ଆନନ୍ଦ ଲାଭ କଲା । ଏହିପରି କରୁ କରୁ ଛଅମାସ ପୂରିଯିବାକୁ ତିନିଦିନ ମାତ୍ର ବାକି ରହିଲା ।

ଦିନେ ବାଳକ ମାର୍କଣ୍ଡେୟ ଆଶ୍ରମ ବାହାରେ ଠିଆ ହୋଇଛନ୍ତି, ତାଙ୍କୁ ତୀର୍ଥଯାତ୍ରା ପ୍ରସଙ୍ଗରେ ବିଶ୍ୱାମିତ୍ର, ଯମଦଗ୍ନି, ଭରଦ୍ୱାଜ, ଗୌତମ, ଅତ୍ରି, ବଶିଷ୍ଠ ଓ କଶ୍ୟପ ଏହି ସାତଜଣ ଋଷି ଆସି ଦର୍ଶନ ଦେଲେ । ବାଳକ ମାର୍କଣ୍ଡେୟ ଅତ୍ୟନ୍ତ ଉତ୍ସାହର ସହିତ ପ୍ରସନ୍ନ ଚିତ୍ତରେ ନିଜର ନାମଗୋତ୍ର ନେଇ ସେହି ସପ୍ତର୍ଷିଙ୍କର ପାଦପଦ୍ମରେ କ୍ରମଶଃ ପ୍ରଣାମ କଲେ ଓ ସାତଜଣ ତାଙ୍କୁ ଦୀର୍ଘଜୀବୀ ହେବାକୁ ଆଶୀର୍ବାଦ ଦେଲେ । ମେଖଳା ଓ ଦଣ୍ଡ ଧାରଣ କରି ମୃଗଚର୍ମ ପରିଧାନ କରି ହସ୍ତରେ ପବିତ୍ରୀ ଓ ବ୍ରହ୍ମଦଣ୍ଡ ଧାରଣ କରି ସେଇ ବାଳବ୍ରହ୍ମଚାରୀ ମୂର୍ତ୍ତିମାନ୍ ତପ ସଦୃଶ ଦେଖା ଯାଉଥିଲେ । ସେହି ସପ୍ତର୍ଷିଙ୍କ ମଧ୍ୟରୁ ମହାମୁନି ବଶିଷ୍ଠ ଅତି ସ୍ନେହ ଦୃଷ୍ଟିରେ ତା ଆଡ଼କୁ ଚାହିଁବାକୁ ଲାଗିଲେ । ସହସା ସେ ଚମକିପଡ଼ି ସମସ୍ତ ଋଷିଙ୍କୁ ଶୁଣାଇ କହିଲେ—"ଋଷିଗଣ ! ଆମ୍ଭେମାନେ ବଡ଼ ଭୁଲ କରିପକାଇଲେ ।"

ସେହି ମୁନିଗଣ ପଚାରିଲେ—"କି ପ୍ରକାର ଭୁଲ ଆମ୍ଭେମାନେ କଲେ ?"

ବଶିଷ୍ଠ କହିଲେ—"ଦେଖନ୍ତୁ, ଆମେ ସମସ୍ତେ ଏହି ବାଳକକୁ ଦୀର୍ଘଜୀବୀ ହେବାକୁ ଆଶୀର୍ବାଦ କଲେ । କିନ୍ତୁ ଏହାର ତ ଆଜିଠାରୁ ଠିକ୍ ତିନିଦିନ ପରେ ମୃତ୍ୟୁଯୋଗ ରହିଛି । ଆମ୍ଭେମାନେ ବର୍ତ୍ତମାନ ଏପରି କାର୍ଯ୍ୟ କରିବା, ଯଦ୍ଦ୍ୱାରା ଆମ୍ଭମାନଙ୍କର ବଚନ ସତ୍ୟ ହେବ । ଆମ୍ଭେମାନେ ତ କେବେହେଲେ ହସଖୁସିରେ ବି ଅସତ୍ୟ ବଚନ କହି ନ ଥାଉଁ ।"

ସେହି ସପ୍ତର୍ଷିମାନଙ୍କ ମଧ୍ୟରୁ ଅନ୍ୟ ଜଣେ କହିଲେ—"ହଁ, ଆମ୍ଭମାନଙ୍କର ବଚନ କୌଣସି ପ୍ରକାରେ ଅସତ୍ୟ ନହେବା ଉଚିତ୍ । ବ୍ରହ୍ମାଙ୍କ ବ୍ୟତୀତ ଏହି ବାଳକର ମୃତ୍ୟୁଯୋଗ ଅନ୍ୟ କେହି ଟାଳି ଦେଇ ପାରିବେ ନାହିଁ । ତେଣୁ ତାହାକୁ ଆମ୍ଭେମାନେ ବ୍ରହ୍ମାଙ୍କ ନିକଟକୁ ଚାଲ ନେଇଯିବା ।"

ସମସ୍ତ ଋଷି ଏହି କଥାକୁ ସମର୍ଥନ କଲେ । ଏବେ ସମସ୍ତେ ସେହି ବାଳକକୁ ସଙ୍ଗରେ ନେଇ ବ୍ରହ୍ମାଙ୍କ ସଭାରେ ଯାଇ ଉପସ୍ଥିତ ହେଲେ । ବ୍ରହ୍ମା, ସମସ୍ତ ଦେବତା ଓ ଋଷିମାନଙ୍କ ଗହଣରେ ସଭାରେ ବସିଥିଲେ । ସେଠାରେ ପହଞ୍ଚି ସପ୍ତର୍ଷି ବ୍ରହ୍ମାଙ୍କ ପାଦପଦ୍ମରେ

ପ୍ରଣାମ କଲେ । ବାଳକ ମାର୍କଣ୍ଡେୟ ମଧ ଭକ୍ତିଭାବରେ ଲୋକପିତାମହ ବ୍ରହ୍ମାଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ କଲେ । ବ୍ରହ୍ମା ଅତ୍ୟନ୍ତ ପ୍ରସନ୍ନ ହୋଇ ବାଳକକୁ ସ୍ନେହ କଲେ ଓ ଦୀର୍ଘାୟୁ ହେବାକୁ ଆଶୀର୍ବାଦ କଲେ । ପୁନଶ୍ଚ ସେ ସପ୍ତର୍ଷିଙ୍କୁ କହିଲେ—''ଋଷିଗଣ ! ଆଜି ଆପଣମାନେ ସମସ୍ତେ ମିଶି କେଉଁଠାରୁ ଏଠାକୁ ଆସିଲେ ? ଏହି ବ୍ରହ୍ମଚର୍ଯ୍ୟ ବ୍ରତଧାରଣକାରୀ ସରଳ ସୌମ୍ୟ ଶିଶୁଟି କିଏ ? ଆପଣମାନେ ଏହାକୁ ସଙ୍ଗରେ ଆଣି ଏଠାକୁ ଆସିବାର ଅଭିପ୍ରାୟ କ'ଣ ?''

ବ୍ରହ୍ମାଙ୍କ କଥା ଶୁଣି ଋଷିଗଣ ଯୋଡ଼ହସ୍ତ ହୋଇ କହିଲେ—''ଭଗବନ୍ ! ଆମ୍ଭେମାନେ ତୀର୍ଥଯାତ୍ରା କରି ମୃକଣ୍ଡ ଋଷିଙ୍କ ଆଶ୍ରମକୁ ଯାଇଥିଲୁ । ସେଠାରେ ଏହି ବାଳକ ଠିଆ ହୋଇଥିବାର ଆମ୍ଭେମାନେ ଦେଖିଲୁ । ସେ ଆମ୍ଭମାନଙ୍କୁ ଶ୍ରଦ୍ଧା ଓ ଭକ୍ତିପୂର୍ବକ ପ୍ରଣାମ କଲା ଓ ଆମ୍ଭେମାନେ ମଧ ଏହାକୁ ଚିରଜୀବୀ ହେବାକୁ ଆଶୀର୍ବାଦ କଲୁ । ପରେ ତାହାର ଲକ୍ଷଣଗୁଡ଼ିକ ଦେଖି ଆମ୍ଭେମାନେ ଜାଣିଲୁ ଯେ, ଏହାର ଆଜିଠାରୁ ତିନିଦିନ ମଧରେ ମୃତ୍ୟୁ ସୁନିଶ୍ଚିତ । ତେଣୁ ତାହାର ମୃତ୍ୟୁ ନହେବା ପାଇଁ ଆମ୍ଭେମାନେ ତୀର୍ଥଯାତ୍ରା ଛାଡ଼ି ତାକୁ ସଙ୍ଗରେ ନେଇ ଆପଣଙ୍କ ସେବାପାଇଁ ଏଠାରେ ଆସି ପହଞ୍ଚିଛୁ । ଏଠାକୁ ଆସିବାକ୍ଷଣି ଆପଣ ମଧ ତାକୁ ଦୀର୍ଘଜୀବୀ ହେବାକୁ ଆଶୀର୍ବାଦ କରିଅଛନ୍ତି । ଏବେ ଆପଣଙ୍କର ଏହି ବରଦାନ ସତ୍ୟ ହେବା ଉଚିତ୍ ।''

ଏହା ଶୁଣି ବ୍ରହ୍ମା ହସି ହସି କହିଲେ—''ଋଷିଗଣ ! ଆପଣମାନେ ସତ୍ୟବାଦୀ ଅଟନ୍ତି । ଆପଣ ସ୍ୱପ୍ନରେ କହୁଥିବା କଥା ମଧ ବ୍ୟର୍ଥ ହୁଏ ନାହିଁ । ଆପଣମାନେ ଏହି ବାଳକକୁ ତ ଜାଗ୍ରତ ଅବସ୍ଥାରେ ଆଶୀର୍ବାଦ କରିଅଛନ୍ତି । ଜଣେ ନୁହେଁ ସାତଜଣଯାକ ଏହାକୁ ଚିରାୟୁ ହେବାକୁ ବରଦାନ କରିଛନ୍ତି । ତାହା କିପରି ଅନ୍ୟଥା ହେବ ? ମୋ ପ୍ରସାଦରୁ ଏହି ବାଳକ ଅଜର ଅମର ହେଉ, ବେଦ ବେଦାଙ୍ଗର ଜ୍ଞାତା, ଯଶସ୍ୱୀ, ଚିରାୟୁ ଓ ପୁରାଣାଚାର୍ଯ୍ୟ ହେବ । ଏବେ ଆପଣମାନେ ଏହାକୁ ଶୀଘ୍ର ନେଇ ପୃଥିବୀକୁ ଫେରିଯାଆନ୍ତୁ ଓ ପିତାମାତାଙ୍କ ନିକଟରେ ପହଞ୍ଚାଇ ଦିଅନ୍ତୁ ।''

ଏହା ଶୁଣି ସପ୍ତର୍ଷିଗଣ ବ୍ରହ୍ମାଙ୍କୁ ପ୍ରଣାମକରି ବାଳକକୁ ସଙ୍ଗରେ ନେଇ ପୃଥିବୀକୁ ଫେରି ଆସିଲେ ଓ ଆଶ୍ରମରେ ପିତାମାତାଙ୍କ ନିକଟରେ ବାଳକକୁ ଛାଡ଼ି ଚାଲିଗଲେ । ଏଣେ ବାଳକ ମାର୍କଣ୍ଡେୟକୁ ନ ଦେଖି ତାହାର ପିତାମାତା ବ୍ୟସ୍ତହୋଇ ତାକୁ ଚାରିଆଡ଼େ ଖୋଜୁଥିଲେ । ପୁତ୍ର ତାଙ୍କ ନିକଟରେ ଆସି ପହଞ୍ଚି ଯିବାରୁ ସେ ଦୁହେଁ ପରମ ଆନନ୍ଦ ଲାଭ କଲେ । ସେ ଦୁହେଁ ବାଳକକୁ କୋଳରେ ବସାଇ ଅତି ଆହ୍ଲାଦରେ ତାହାର ଶିର ଆଘ୍ରାଣପୂର୍ବକ ତାକୁ ଏତେ ସମୟ ପର୍ଯ୍ୟନ୍ତ କେଉଁଠି ଥିଲା ବୋଲି ପଚାରିଲେ । ମାର୍କଣ୍ଡେୟ ପିତାମାତାଙ୍କୁ ଆମୂଳଚୂଳ ସମସ୍ତ କଥା କହିଲେ । ତାହା ଶୁଣିବାମାତ୍ରେ ପିତାମାତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ପିତା ପଚାରିଲେ—''ବାବୁ ! ଏବେ ସପ୍ତର୍ଷି କେଉଁଠାକୁ ଗଲେ ?''

ମାର୍କଣ୍ଡେୟ କହିଲେ—''ପିତୃଦେବ ! ସେମାନେ ମୋତେ ଆଶ୍ରମରେ ଛାଡ଼ି ସମୀପସ୍ଥ କୁଣ୍ଡରେ ସ୍ନାନ କରିବାକୁ ଚାଲିଗଲେ ।''

ଏହା ଶୁଣିବାକ୍ଷଣି ମୃକଣ୍ଡ ମୁନି ଧାଇଁଯାଇ ସେହି କୁଣ୍ଡ ନିକଟରେ ପହଞ୍ଚିଲେ । ସେ ସେଠାରେ ସପ୍ତଋଷିଙ୍କ ଚରଣ ବନ୍ଦନା କଲେ ଓ କୃତଜ୍ଞତା ପ୍ରକାଶ କରି କହିଲେ ''ଋଷିଗଣ ! ଆପଣମାନେ ମୋର ବଡ଼ ଉପକାର କରିଛନ୍ତି । ଆପଣମାନେ ମୋର ଆତିଥ୍ୟ ଗ୍ରହଣ କରି ମୋର ଯୋଗ୍ୟ କୌଣସି ସେବା ପାଇଁ ଆଜ୍ଞା କରନ୍ତୁ ।''

ଋଷିମାନେ କହିଲେ—''ମୁନିବର ! ଏହା ସୌଭାଗ୍ୟର କଥା ଯେ, ଆପଣଙ୍କର ପୁତ୍ର ଅଜର ଅମର ହୋଇଗଲା ! ଏହା ବ୍ରହ୍ମାଙ୍କର କୃପା ! ଆପଣ ଏଠାରେ ବ୍ରହ୍ମାଙ୍କର ଏକ ମନ୍ଦିର ନିର୍ମାଣ କରାଇ ଦିଅନ୍ତୁ ।''

ଋଷିମାନଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ମୃକଣ୍ଡମୁନି ବ୍ରହ୍ମାଙ୍କର ମନ୍ଦିର ନିର୍ମାଣ କରାଇଲେ । ମାର୍କଣ୍ଡେୟ ଏହିପରି ଭାବରେ ସମସ୍ତଙ୍କୁ ପ୍ରଣାମ କରିବା ଯୋଗୁ ଦୀର୍ଘାୟୁ ହୋଇଗଲେ । ଯେତେବେଳେ ତାଙ୍କୁ ଦୀର୍ଘାୟୁ ହୋଇ ପୁରାଣାଚାର୍ଯ୍ୟ ହେବାର ଆଶୀର୍ବାଦ ମିଳିଲା, ସେତେବେଳେ ସେ ପିତାଙ୍କଠାରୁ ଅନୁମତି ନେଇ ତପସ୍ୟା କରିବାପାଇଁ ହିମାଳୟ ଯାତ୍ରା କଲେ । ପୁଣ୍ୟତୋୟା ଭଗବତୀ ପୁଷ୍ପଭଦ୍ରା ତଟରେ ଅବସ୍ଥାନ କରି ସେ ତପ ଓ ସ୍ୱାଧ୍ୟାୟରେ ନିମଗ୍ନ ରହି ଭଗବାନଙ୍କୁ ଧ୍ୟାନ କରିବାକୁ ଲାଗିଲେ । ସେ ନୈଷ୍ଠିକ ବ୍ରହ୍ମଚର୍ଯ୍ୟର ବୃହଦ୍‌ବ୍ରତ ପାଳନ କଲେ । ସେ ପ୍ରତିଦିନ ନିୟମ ଅନୁସାରେ ବେଦ ସ୍ୱାଧ୍ୟାୟ କରି ନିଜର ବ୍ରତ ପୂର୍ଣ୍ଣ କରିବାପାଇଁ ଜଟା ଧାରଣ କଲେ । ମୃଗଚର୍ମ ପରିଧାନ ପୂର୍ବକ ଦଣ୍ଡ, କମଣ୍ଡଳୁ, ବ୍ରହ୍ମଦଣ୍ଡ, ପବିତ୍ରୀ, ମୁଗାର ମେଖଳା (ଛଣପଟ କରିଆ), ରୁଦ୍ରାକ୍ଷମାଳା ଓ କୃଷ୍ଣମୃଗଛାଲର ଆସନ ଆଦି ବ୍ରହ୍ମଚାରୀଙ୍କର ଯୋଗ୍ୟ ବସ୍ତୁ ଧାରଣ କଲେ । ଉଭୟ ସମୟରେ ବେଦମନ୍ତ୍ରଦ୍ୱାରା ସୂର୍ଯ୍ୟ ଉପସ୍ଥାପନା କରି ଅଗ୍ନିହୋତ୍ର କଲେ ଓ ବ୍ରାହ୍ମଣମାନଙ୍କର ସେବାକରି ହୃଦୟରେ ଶ୍ରୀହରିଙ୍କର ଆରାଧନା କରିବାକୁ ଲାଗିଲେ । ମଧ୍ୟାହ୍ନ ଓ ସାୟଂ କାଳରେ ଭିକ୍ଷାକରି ଆଣି ତାହା ଗୁରୁଙ୍କୁ ଅର୍ପଣ କଲେ । ଗୁରୁ ତାଙ୍କୁ ଯାହା ପ୍ରଦାନ କଲେ ତାହାକୁ ସେ ଶରୀର ନିର୍ବାହପାଇଁ ଥରେ ମାତ୍ର ଭୋଜନ କରୁଥିଲେ । ସମୟ ସମୟରେ ଭିକ୍ଷାର ଅଭାବରେ ସେ ଉପବାସ ମଧ୍ୟ ରହୁଥିଲେ । ସେ ଜିହ୍ୱାଲାଳସା ଓ ଇନ୍ଦ୍ରିୟର ଚଞ୍ଚଳତା ଉପରେ ବିଜୟ ହାସଲ କରି ନେଇଥିଲେ । ତପ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନଦ୍ୱାରା କ୍ରିୟାଯୋଗର ଅନୁଷ୍ଠାନ କରି ସେ ନିରନ୍ତର ପ୍ରଭୁଙ୍କ ଧ୍ୟାନରେ ନିମଗ୍ନ ରହୁଥିଲେ । ଏହିପରି ଭାବରେ ସେ ଅଖିଳେଶ ଅଚ୍ୟୁତଙ୍କୁ ଆରାଧନା କରି କାଳଜୟୀ ହୋଇଗଲେ ଓ ମୃତ୍ୟୁ ଉପରେ ବିଜୟ ହାସଲ କରିନେଲେ ।

ମାର୍କଣ୍ଡେୟ ଏ ପ୍ରକାର ଧ୍ୟାନମଗ୍ନ ଦେଖି ବ୍ରହ୍ମା, ବିଷ୍ଣୁ, ମହାଦେବ, ଦକ୍ଷ ଓ ବ୍ରହ୍ମାଙ୍କର ଅନ୍ୟାନ୍ୟ ମାନସପୁତ୍ରଗଣ ଚକିତ ହୋଇଗଲେ । ସେମାନେ ମାର୍କଣ୍ଡେୟଙ୍କର ତପ ଓ ସ୍ୱାଧ୍ୟାୟର ଭୂରି ଭୂରି ପ୍ରଶଂସା କରିବାକୁ ଲାଗିଲେ । ଏହିପରି ଯୋଗାଭ୍ୟାସ କରୁ କରୁ ଛଅ ମନ୍ୱନ୍ତର ବିତିଗଲା । ଏକ ମନ୍ୱନ୍ତରରେ ୩୧ଥର ଚତୁର୍ଯୁଗ ଭୋଗ ହୁଏ । ଏହିପରି ଛଅ ମନ୍ୱନ୍ତର ପର୍ଯ୍ୟନ୍ତ ସେ ଧ୍ୟାନରେ ଲାଗିରହିଲେ । ଯେତେବେଳେ ସପ୍ତମ ମନ୍ୱନ୍ତର ଚାଲିଲା, ସେତେବେଳେ ଏହି ସପ୍ତମ ମନ୍ୱନ୍ତରର ଇନ୍ଦ୍ର ମୁନିଙ୍କ ତପସ୍ୟା ଉପରେ ସନ୍ଦେହ କଲେ । ଇନ୍ଦ୍ର ଚିନ୍ତା କଲେ—"ସମ୍ଭବତଃ ମୁନି ମୋର ଇନ୍ଦ୍ରାସନ ଲାଭ କରିବାକୁ ଏତେ ଘୋର ତପସ୍ୟା କରୁଛନ୍ତି ।" ଯେତେବେଳେ କାହାର କୌଣସି ବିଷୟ ଉପରେ ଶଙ୍କା ଜାତ ହୁଏ ଓ ସେଥିରେ ନିଜ ସ୍ୱାର୍ଥରେ ବ୍ୟାଘାତ ପଡ଼ିବାର ସମ୍ଭାବନା ଥାଏ, ସେତେବେଳେ ସେ ସବୁପ୍ରକାର ଉପାୟରେ ଅନ୍ୟକୁ ତଳିତଳାନ୍ତ କରିବାକୁ ଚେଷ୍ଟା କରେ । ଏ ସଂସାରର ବିଷୟ ଭୋଗରେ ଏହା ଏକ ପ୍ରଧାନ ଦୋଷ । ଭଗବାନ ତ ବିଷୟକୁ ପରିମିତ ଓ ତାହାର ଭୋଗବାସନାକୁ ଅପରିମିତ କରି ସୃଷ୍ଟି କରିଛନ୍ତି । ଯେତେ ଭୋଗସାମଗ୍ରୀ ମିଳିଗଲେ ବି ତାକୁ ସ୍ଥାୟୀ କରିବାରେ ତଥା ଅଧିକରୁ ଅଧିକ ଲାଭ କରିବାରେ ମନୁଷ୍ୟ ସତତ ପ୍ରଯତ୍ନ କରୁଥାଏ । ଦେବରାଜ ଇନ୍ଦ୍ରଙ୍କର କ'ଣ ଭୋଗସାମଗ୍ରୀ କମ୍ ? ସେ ଏହା ମଧ୍ୟ ଜାଣନ୍ତି ଯେ, ଯେ ପର୍ଯ୍ୟନ୍ତ ତାଙ୍କର ପୁଣ୍ୟ କ୍ଷୟ ନ ହୋଇ ରହିଛି, ସେ ପର୍ଯ୍ୟନ୍ତ ତାଙ୍କୁ କେହି ଇନ୍ଦ୍ରାସନରୁ ହଟାଇ ପାରିବେ ନାହିଁ । ପୁଣ୍ୟ କ୍ଷୀଣ ହେବା ମାତ୍ରେ କେହି ଚେଷ୍ଟା କଲେ ମଧ୍ୟ ତାଙ୍କୁ ସେହି ଇନ୍ଦ୍ରପଦରେ ରଖିପାରିବେ ନାହିଁ । ତଥାପି ସେ ଯାହାକୁ ଅତି ଉତ୍କଟ ତପ କରିବାର ଦେଖନ୍ତି, ସେଥିରେ ଭୟଭୀତ ହୋଇପଡ଼ନ୍ତି ଓ ସାମାନ୍ୟ ସ୍ୱାର୍ଥରେ ବଶୀଭୂତ ହୋଇ ତାଙ୍କର ଚିରକାଳ ସଞ୍ଚିତ ତପରୂପୀ ଧନକୁ ମୋହକସାମଗ୍ରୀ ପ୍ରେରଣ କରି ନଷ୍ଟ କରାଇ ଦିଅନ୍ତି । ନିଜର ସାମାନ୍ୟ ସ୍ୱାର୍ଥ ନିମିତ୍ତ

ମନୁଷ୍ୟ ବଡ଼ ବଡ଼ ଜ୍ଞାତିକୁ ନାଶ କରିଦିଏ । ସ୍ୱାର୍ଥରୂପୀ ଭୂତ ମନୁଷ୍ୟର ବିବେକ ଭ୍ରଷ୍ଟ କରିଦିଏ । ମହାମୁନି ମାର୍କଣ୍ଡେୟଙ୍କର ତପସ୍ୟାକୁ ମଧ୍ୟ ଇନ୍ଦ୍ର ଭ୍ରମରେପଡ଼ି ନଷ୍ଟ କରିଦେବା ପାଇଁ ସଙ୍କଳ୍ପବଦ୍ଧ ହେଲେ ।

ସେ କାମଦେବଙ୍କୁ ଡକାଇ କହିଲେ—"ଦେବ ! ଯେଉଁଲୋକଙ୍କୁ ମୋ ସୁଖ ମିଳେ ନାହିଁ, ସେହିମାନେ ହିଁ ତପସ୍ୟା କରି କରି ଶରୀରକୁ କ୍ଷୀଣ କରିଦିଅନ୍ତି । ଯେଉଁଲୋକ ଥରେ ମାତ୍ର ମୋର ଆନନ୍ଦ ଅନୁଭବ କରିଥାଏ, ସେ ସବୁକିଛି ଛାଡ଼ି ମୋତେ ପାଇବାପାଇଁ ଲାଗିପଡ଼େ । ସଂସାରରେ ବ୍ରହ୍ମାନନ୍ଦ ଓ ବିଷୟାନନ୍ଦ ଏ ଦୁଇଟି ଆନନ୍ଦ ରହିଛି । ବ୍ରହ୍ମାନନ୍ଦରସ ଆସ୍ୱାଦନ କରିବା ଲୋକ ଏ ସଂସାରରେ ବିରଳ । ତା ନ ହୋଇଥିଲେ ସମସ୍ତେ ମୋତେ ଲାଭ କରିବା ପାଇଁ ତପସ୍ୟା କରନ୍ତେ । ମୁଁ କାମିନୀମାନଙ୍କ ହୃଦୟରେ ଅବସ୍ଥାନ କରି ବଡ଼ ବଡ଼ ମୁନିମାନଙ୍କୁ ମଥିତ କରିଦିଏ । ଏଥିପାଇଁ ମୋର ନାମ ମନ୍ମଥ । ମୁଁ ସଙ୍ଗେ ସଙ୍ଗେ ମୋ ସୈନ୍ୟ ନେଇ ଯାଉଛି । ମୁନିଙ୍କ ମନକୁ ମଥିତ କରି ସେଠାରେ ତାଙ୍କୁ ତପରୁ ବିରତ କରାଇ ବିଷୟରେ ରତ କରାଇବି ଓ ଆପଣଙ୍କ ପାଖକୁ ଫେରି ଆସିବି ।"

ଏହା କହି ଇନ୍ଦ୍ରଙ୍କୁ ପ୍ରଣାମ କରି କାମଦେବ ନିଜର ମନ୍ତ୍ରୀ ବସନ୍ତ ମଳୟାନିଳ, ରଜୋଗୁଣ ପ୍ରିୟ ପୁତ୍ର ଲୋଭ ଓ ମଦଙ୍କୁ ସଙ୍ଗରେ ନେଇ ମୁନିଙ୍କୁ ତପରୁ ବିରତ କରାଇବା ପାଇଁ ଚାଲିଗଲେ । ନୃତ୍ୟଗୀତ କରାଇବା ପାଇଁ ସେ ସଙ୍ଗରେ ଅତ୍ୟନ୍ତ ସୁନ୍ଦରୀ ଅପ୍‌ସରାଙ୍କୁ ଓ ଅତ୍ୟନ୍ତ ନିପୁଣ ଗନ୍ଧର୍ବଙ୍କୁ ନେଲେ । ଅପ୍‌ସରାଙ୍କ ମନରେ ଅବସ୍ଥାନ କରି କାମଦେବ ମୁନିଙ୍କ ଆଶ୍ରମରେ ଯାଇ ପହଞ୍ଚିଲେ । ହିମାଳୟର ପରମ ପାବନପୁଣ୍ୟ ପ୍ରଦେଶରେ ବସନ୍ତଋତୁ ଚତୁର୍ଦ୍ଦିଗରେ ବିଭିନ୍ନ ପୁଷ୍ପ ପ୍ରସ୍ଫୁଟିତ କରାଇଦେଲା । ତାକୁ ସ୍ପର୍ଶକରି ଶୀତଳ, ମନ୍ଦ, ସୁଗନ୍ଧିତ ମଳୟ ପବନ ବହିବାକୁ ଲାଗିଲା । ଆମ୍ରକୁଞ୍ଜରେ ବସି କୋକିଳ କୁହୁ କୁହୁ ତାନରେ ବସନ୍ତର ଶୁଭାଗମନର ସୂଚନା ଦେଲା । ପ୍ରକୃତି ସ୍ତବ୍‌ଧ ଥିଲା, ଅରଣ୍ୟର ପରିବେଶ ଅତି ପ୍ରମୋଦଦାୟକ ଥିଲା । ସ୍ୱର୍ଗର ମସ୍ତ ସୁନ୍ଦରୀ ସୁରଲଳନା ନିଜ ନିଜର ନୂପୁର ଝଙ୍କାରରେ ସେହି ବନଭୂମିକୁ ମୁଖରିତ କରିବାକୁ ଲାଗିଲେ । ସେମାନେ ହାବଭାବ ଓ କଟାକ୍ଷ ଭଙ୍ଗୀରେ ଦିବ୍ୟନୃତ୍ୟ ପ୍ରଦର୍ଶନ କରିବାକୁ ଲାଗିଲେ । ଗନ୍ଧର୍ବଗଣ ତାଳରେ ତାଳ ମିଳାଇ ସ୍ୱର୍ଗୀୟ ବାଦ୍ୟ ବଜାଇଲେ । କାମଦେବ ନିଜର ସମସ୍ତ କଳାକୁ ପ୍ରଦର୍ଶିତ କରିବାକୁ ଲାଗିଲେ । ପୁଣ୍ୟତୋୟା ପୁଷ୍ପଭଦ୍ରା ନଦୀ ମଧ୍ୟ ମଦମତ୍ତ ହୋଇ କୁଳୁ କୁଳୁ ଶବ୍ଦକରି ଅପ୍‌ସରାଗଣଙ୍କ ତାଳରେ ତାଳ ମିଳାଇ ବିଭିନ୍ନ ଭଙ୍ଗୀରେ ନୃତ୍ୟ କରିବାକୁ ଲାଗିଲା । ମହାମୁନି ଚିତ୍ରା ନାମକ ଶିଳା ଉପରେ ସୁଖାସୀନ ହୋଇ ପ୍ରଭୁଙ୍କର ଧ୍ୟାନ କରୁଥିଲେ । ତାଙ୍କର ପବିତ୍ର ଆଶ୍ରମ ଅତି ମନୋହର ଥିଲା । ତାହା ଲତାକୁଞ୍ଜଦ୍ୱାରା ଆଚ୍ଛାଦିତ ଥିଲା । ହଂସ, ସାରସ, ମୟୂର, ଚକୋର ଓ ଅନ୍ୟାନ୍ୟ ପକ୍ଷୀଗଣଙ୍କ କାକଳିରେ ଆଶ୍ରମ ମୁଖରିତ ହୋଇ ଉଠୁଥିଲା । ବିଭିନ୍ନ ସ୍ଥାନରେ ପବିତ୍ର ଓ ନିର୍ମଳ ଜଳାଶୟ ସ୍ୱଚ୍ଛ, ସୁନ୍ଦର ଓ ଶୀତଳ ସଲିଳରେ ପରିପୂର୍ଣ୍ଣ ହୋଇ ମୁନିମନର ପ୍ରତିବିମ୍ବ ତହିଁରେ ପରିସ୍ଫୁଟ ହେଉଥିଲା । ସେହି ଜଳାଶୟର ଶୀତଳ, ସୁଖଦ ଜଳକଣା ପ୍ରବାହିତ ହେଉଥିବା ବାୟୁ ସହିତ ମିଶି ପ୍ରାଣୀମାନଙ୍କ ମନରେ କାମଭାବ ଉଦ୍ଦୀପ୍ତ କରୁଥିଲା । କାମଦେବଙ୍କର ସହାୟିକା ସେହି ଅପ୍‌ସରାମାନେ ମୁନିଙ୍କ ମନକୁ ମୋହିତ କରିବାପାଇଁ ମୋହମୟୀ ମାୟାର ଜାଲ ବିଛାଇବାରେ ଲାଗିଲେ । କାମଦେବ ଆମ୍ରକୁଞ୍ଜରେ ଲୁଚିରହି ନିଜର ପୁଷ୍ପବାଣକୁ ମୁନିଙ୍କ ଉପରକୁ ନିକ୍ଷେପ କଲେ । ସମସ୍ତ ଅପ୍‌ସରାଙ୍କ ମଧ୍ୟରୁ ପରମ ରୂପବତୀ ପୁଞ୍ଜିକସ୍ଥଳୀ ଅପ୍‌ସରା ବିଜୁଳୀ ଭଳି ଆଶ୍ରମର ଶାନ୍ତ ବାତାବରଣକୁ ଇତସ୍ତତ ମୁଖରିତ କରି ନୃତ୍ୟ କରୁଥିଲା । ତାହାର ବକ୍ଷସ୍ଥଳ ଉନ୍ନତ ଓ କଟିଦେଶ କ୍ଷୀଣ ହୋଇଥିବାରୁ ସେ

ସ୍ୱର୍ଗଲତିକା ଭଳି ଲୋଟି ଯାଉଥିଲା । ସେ ବ୍ରୀଣା (ଭାବଭଙ୍ଗୀ) ଓ ଚାପଲ୍ୟ ଉଭୟକୁ ପ୍ରଦର୍ଶନ କରୁଥିଲା । କ୍ରୀଡ଼ା କନ୍ଦୁକକୁ ନଚାଇ ନଚାଇ ରତିପତିଙ୍କ ମନକୁ ମଧ୍ୟ ସେ ମୁଗ୍ଧ କରି ଦେଉଥିଲା । ସେ କୌଶଳରେ ନିଜର ଉତ୍ତମାଙ୍ଗକୁ ଅନାବୃତ କରି ଦେଉଥିଲା । ତାହାର କାର୍ଯ୍ୟରେ ମଳୟାନିଳ ନିରନ୍ତର ସହଯୋଗ କରୁଥିଲା । ନାନା ପୁଷ୍ପମାଳାରେ ଗ୍ରଥିତ ତାହାର ଖୋସା (କେଶଗଚ୍ଛ) କ୍ଷୀଣ ଶାଢ଼ୀଦ୍ୱାରା ଆବୃତ୍ତ ଥିଲା । ସହସା କେଶପାଶରେ ଗ୍ରଥିତ ତାହାର ସୁଗନ୍ଧଯୁକ୍ତ ପୁଷ୍ପମାଳା ଖସିପଡ଼ିଲା । ତା ଉପରେ ପଡ଼ିଥିବା ବସ୍ତ୍ର ମଧ୍ୟ କାନ୍ଧ ଉପରକୁ ଖସି ଆସିଲା । ଏବେ ତାହାର ବେଣୀ କଳାନାଗୁଣୀ ପରି ଦୋଳିବାକୁ ଲାଗିଲା । ତାହାର କଟୀବସ୍ତ୍ର ଖୋଲିଯିବାରୁ ଏହି ଅବସରରେ ମଳୟାନିଳ ତାହାର ଅତି ସୂକ୍ଷ୍ମ ଶାଢ଼ୀକୁ ଉଡ଼ାଇ ନେଲା । କାମଦେବ ନିରନ୍ତର ପୁଷ୍ପବାଣ ବର୍ଷା କରୁଥିଲେ । ତାଙ୍କ ଉପରେ ଏ ସମସ୍ତ ଘଟଣା ପ୍ରଭାବ ପକାଇ ପାରିଲା ନାହିଁ । କାମଦେବଙ୍କର ସମସ୍ତ ପ୍ରଚେଷ୍ଟା ବିଫଳ ହୋଇଗଲା ।

କାମଦେବ ଯେତେବେଳେ ଦେଖିଲେ ଯେ ତାଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା, ସେତେବେଳେ ସେ ଭୟଭୀତ ହୋଇ ପଡ଼ିଲେ । ସେ ଏପରି ଅନୁଭବ କଲେ ଯେ, ସତେ ଯେପରି ସେ ଶୟନ କରିଥିବା ବିଷଧରକୁ ବୃଥାରେ ଜାଗ୍ରତ କରିବାକୁ ଚେଷ୍ଟା କରୁଛନ୍ତି । ବିଷଧର ଏ ପର୍ଯ୍ୟନ୍ତ ବି ଫଣା ଟୋଳୁ ନାହିଁ । ଯଦି ସେ କ୍ରୁଦ୍ଧ ହୋଇ ହଠାତ୍ ଫୁତ୍କାର ମାରିବ, ତାହାହେଲେ ତାଙ୍କର ସର୍ବନାଶ ହେବ । ଏହିସବୁ କଥା ଚିନ୍ତା କରି କାମଦେବ ନିଜର ସେନା ସହିତ ସଙ୍ଗେ ସଙ୍ଗେ ମୁନିଙ୍କ ଆଶ୍ରମରୁ ଫେରି ଆସିଲେ ।''

ଶୌନକ ପଚାରିଲେ—''ହେ ସୂତ ! କାମଦେବ ତ ଅତି ବଳବାନ୍ ; ସେ ବଡ଼ ବଡ଼ ତ୍ୟାଗୀ ତପସ୍ୱୀମାନଙ୍କୁ ପଦେ ପଦେ ବିଚଳିତ କରିଦିଅନ୍ତି । ଏପରି କି ନିଜର ପିତା ଲୋକପିତାମହ ବ୍ରହ୍ମାଙ୍କୁ ମଧ୍ୟ ଛାଡ଼ିନାହାନ୍ତି । କାମଦେବ ଏତେ ଚେଷ୍ଟା କରି ସୁଦ୍ଧା ସେ ମୁନିଙ୍କ ମନକୁ କାହିଁକି ମୋହିତ କରି ପାରିଲେ ନାହିଁ ?''

ଏହା ଶୁଣି ସୂତ କହିଲେ—''ମହାରାଜ ! ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ । ଯାହାଙ୍କ ହୃଦୟରେ କାମାରୀ ମଦନମୋହନ ଶ୍ରୀହରି ସର୍ବଦା ବିରାଜମାନ କରୁଥିଲେ, ଏପରି ଭଗବଦ୍‌ଭକ୍ତ ମହାପୁରୁଷଙ୍କ ପକ୍ଷେ କୌଣସି କଥା ଅସମ୍ଭବ ନୁହେଁ ।''

ଶୌନକ ପଚାରିଲେ—''ତା ପରେ କ'ଣ ଘଟିଲା ? କାମଦେବ ପରାଜିତ ହୋଇ ଫେରିଯିବା ପରେ ମୁନି କ'ଣ କଲେ ?''

ସୂତ କହିଲେ—''ଭଗବନ୍ ! ତାଙ୍କର ଏପରି ଘୋର ତପସ୍ୟାକୁ ଦେଖି ବଦରୀବନରେ ରହୁଥିବା ଭଗବାନ୍ ନରନାରାୟଣ ମୁନିଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ଯେପରି ମୁନିଙ୍କୁ ଦର୍ଶନ ଦେଲେ, ସେହି ପ୍ରସଙ୍ଗ ମୁଁ ପରବର୍ତ୍ତୀ ଆଲୋଚନାରେ କହିବି ।''

ଷଟ୍‌ପଦୀ

ମୁନି ମୃକଣ୍ଡ କେ ତନୟ ପୁଷ୍ପଭଦ୍ରା ତଟ ତପହିତ ।
ରହୈଁ ନଠୈଁ ବ୍ରତ ସଦା ଲଗାବେଂ ହରି ଚରନନି ଚିତ ॥
ଛୈ ମନ୍ୱନ୍ତର ଜରୀ ତପସ୍ୟା ମନ ନ ଡିଗାୟୌ ।
ଦେଖି ଘୋର ତପ ଇନ୍ଦ୍ର ହୃଦୟ ମେଂ ଭୟ ଅତି ଆୟୌ ॥
ମଲୟାନିଲ ଅରୁ ଅପସରା, କାମ, ଲୋଭ, ମଦ, ମୁନି ନିକଟ ।
ଭେଜେ ମୁନି ଆଶ୍ରମ ଜହଁ, ନରହିଁ ମହାମୁନି ତପ ବିକଟ ॥



# ମାର୍କଣ୍ଡେୟ ମୁନି ନର-ନାରାୟଣଙ୍କୁ ଦେଖିଲେ

**ତସ୍ୟୈବଂ ଯୁଞ୍ଜତଶ୍ଚିହ୍ନଂ ତପଃସ୍ୱାଧ୍ୟାୟସଂଯମୈଃ ।**
**ଅନୁଗ୍ରହାୟାବିରାସୀନ୍ନରନାରାୟଣୋ ହରିଃ ॥** ☆

(ଶ୍ରୀ ଭା: ୧୨ସ୍କ: ୮ମଅ: ୩୨ଶ୍ଳୋକ)

ଷଟ୍‌ପଦୀ

ସବ ମିଳି କୀୟୋ ଯନ୍ ମୋହ ମୁନିମନ ନହିଁ ଆୟୌ ।
କାମ ସେନ ସଁଗ ଲୌଟି ଇନ୍ଦ୍ର କୁଁ ବୃତ ସୁନାୟୋ ॥
ଭୟୋ ଇନ୍ଦ୍ର ନିସ୍ତେଜ ମନହିଁ ମନ ମୁନି ହିଁ ସରାବୈ ।
ବ୍ରହ୍ମତେଜ ତୈଂ ଡରୈ ନିକଟ ମୁନି କେ ନହିଁ ଆବୈ ॥
ମୁନି ତପ ତୈଂ ସନ୍ତୁଷ୍ଟ ହ୍ୱେ, ନର ନାରାୟନ ଆଇ କେଂ ।
ଦୟୋ ଦରଶ ଜବ ସ୍ୱୟଂ ମୁନି, ବିନୟ କରେଂ ସିର ନାଇକେଂ ॥

ବିଦ୍ୟାର ଫଳ ବିନୟ, ଧନର ଫଳ ଦାନ, ଧର୍ମର ଫଳ ଦୟା, ବଳର ଫଳ ଦୁଃଖୀମାନଙ୍କର ଦୁଃଖ ଦୂର କରିବା, ତ୍ୟାଗର ଫଳ ଶାନ୍ତି, ଯଜ୍ଞର ଫଳ ଉତ୍ତମଲୋକ ପ୍ରାପ୍ତି, ପାଣ୍ଡିତ୍ୟର ଫଳ ଜ୍ଞାନଦାନ, ଦାରାର ଫଳ ସନ୍ତାନ ଓ ତପର ଫଳ ଇଷ୍ଟ ପ୍ରାପ୍ତିରେ ସଫଳ ହୁଏ । ଯେଉଁ ତପଦ୍ୱାରା ଇଷ୍ଟ ସିଦ୍ଧି, ଯଥାର୍ଥ ଫଳପ୍ରାପ୍ତି ଓ ଇଷ୍ଟଦେବଙ୍କ ସାକ୍ଷାତ୍ ନ ହୁଏ, ସେହି ତପ କେବଳ ଇନ୍ଦ୍ରିୟ ଶୋଷଣ କରିଥାଏ । ଯେଉଁ ଇଷ୍ଟଙ୍କ ଉଦ୍ଦେଶ୍ୟରେ ତପ କରାଯାଏ, ସେହି ଇଷ୍ଟ ପ୍ରତ୍ୟକ୍ଷ ସମ୍ମୁଖରେ ଉପସ୍ଥିତ ହୋଇ ଯଦି ବର ପ୍ରଦାନ କରନ୍ତି, ତାହାହେଲେ ବୁଝିବାକୁ ହେବ ଯେ ଆମର ତପ ବିଧିବିଧାନ ପୂର୍ବକ ଯଥାର୍ଥରେ କରାଯାଇଛି । ଯେଉଁ ତପଦ୍ୱାରା ଇଷ୍ଟପ୍ରାପ୍ତି ନ ହୁଏ କିମ୍ବା ବିପରୀତ ଫଳପ୍ରାପ୍ତି ହୁଏ, ତାହାହେଲେ ବୁଝିବାକୁ ହେବ ଯେ, ସେ ତପରେ ଦମ୍ଭ ଭରି ରହିଛି । ତପସ୍ୟାରେ କାମ କ୍ରୋଧ ଆଦି ବଡ଼ ବିଘ୍ନ ଘଟାନ୍ତି । ଏଥିରେ ପ୍ରବଳ ପ୍ରଲୋଭନ ଆସେ । ଯେଉଁ ବ୍ୟକ୍ତି ଏହି ପ୍ରଲୋଭନରୁ ନିଜକୁ ଦୂରେଇ ନିଏ, ସେହି ହିଁ ଅମୃତୋପମ ଫଳ ପାଏ । ତା ନ ହେଲେ ପ୍ରଲୋଭନ ସେହି ବ୍ୟକ୍ତିକୁ ତଳିତଳାନ୍ତ କରିଦିଏ ।

ସୂତ କହିଲେ—"ମୁନିଗଣ ! କାମଦେବ ଯେତେବେଳେ ସମସ୍ତ ଶକ୍ତି ପ୍ରୟୋଗ କରି ମଧ୍ୟ ମାର୍କଣ୍ଡେୟ ମୁନିଙ୍କର ତପସ୍ୟାରେ କୌଣସି ବିଘ୍ନ ଘଟାଇ ନପାରିଲେ, ସେତେବେଳେ ସେ ଇନ୍ଦ୍ରଙ୍କ ନିକଟକୁ ଯାଇ କହିଲେ, 'ପ୍ରଭୋ ! ସେହି ମହାମୁନିଙ୍କର ତପସ୍ୟା ପ୍ରଭାବରେ ମୋର କୌଣସି ଚେଷ୍ଟା ସଫଳ ହେଲା ନାହିଁ । ମୁଁ ତାଙ୍କ ମନକୁ ମନ୍ଥନ କରିବାକୁ କ୍ଷମ ହେଲି ନାହିଁ । ସେହି ସର୍ବାନ୍ତର୍ଯ୍ୟାମୀ ପ୍ରଭୁଙ୍କୁ ଧନ୍ୟବାଦ ଯେ, ମୁଁ ସକୁଶଳରେ ଜୀବନ ଘେନି ଆପଣଙ୍କ ନିକଟକୁ ଫେରି ଆସିଲି । ତା ନ ହୋଇଥିଲେ ମୁନି ତାଙ୍କ ତପ ପ୍ରଭାବରେ ମୋତେ ଭସ୍ମ କରିଦେଇଥାଆନ୍ତେ ।"

---

☆ ତପସାଧନ ସଂଯତରେ । ସମଭାବ ବହି ମନରେ ॥
ଏମନ୍ତ ଭକ୍ତି ତାର ବାଣି । ସେ ବାସୁଦେବ ଚକ୍ରପାଣି ॥
ତାହାଙ୍କୁ ଅନୁଗ୍ରହ କଲେ । ନରନାରାୟଣ ହୋଇଲେ ॥
ଦର୍ଶନ ମାରକଣ୍ଡେ ଦେଲେ । ଶୁକ୍ଳ କୃଷ୍ଣ ଦୁଇ ବର୍ଣ୍ଣରେ ॥

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୮ମଅ.)

କାମଦେବଙ୍କ ମୁଖରୁ ମୁନିଙ୍କର ଏପରି ପ୍ରଭାବ ଶୁଣି ଦେବରାଜ ଇନ୍ଦ୍ର ଅତି ବିସ୍ମୟ ହେଲେ । ତାଙ୍କ କାର୍ଯ୍ୟ ପାଇଁ ସେ ଲଜ୍ଜା ବୋଧ କଲେ । ଏବେ ସେ ବିଶ୍ୱାସ କଲେ ଯେ, ଯେତେବେଳେ ଏତେ ଚେଷ୍ଟା କରି ମଧ୍ୟ ମୁନିଙ୍କର ହୃଦୟରେ ବିକାର ଜାତ ହେଲା ନାହିଁ, ସେତେବେଳେ ସେ ମୋ ତୁଚ୍ଛ ଇନ୍ଦ୍ରପଦ ପାଇଁ କାହିଁକି ଅବା ଇଚ୍ଛା କରିବେ !

ଏଣେ ମାର୍କଣ୍ଡେୟ ମୁନିଙ୍କର ତପସ୍ୟା ଯେତେବେଳେ ପରିପକ୍ୱ ହୋଇଗଲା ଓ ତାଙ୍କ ମନରେ କୌଣସି ପ୍ରକାରର ସାଂସାରିକ କାମନା ରହିଲା ନାହିଁ, ସେତେବେଳେ ତାଙ୍କ ତପ, ସ୍ୱାଧ୍ୟାୟ ଓ ସଂଯମରେ ସର୍ବେଶ୍ୱର ଶ୍ରୀ ନର-ନାରାୟଣ ଭଗବାନ୍ ପରମ ସନ୍ତୁଷ୍ଟ ହେଲେ । ତାଙ୍କ ଚିତ୍ତକୁ ସୁସଂଯତ ଜାଣି ତାଙ୍କ ଉପରେ ଅନୁଗ୍ରହ କରି ସେ ତାଙ୍କ ସମ୍ମୁଖରେ ଉପଗତ ହେଲେ । ତପୋଧନ ଋଷିମାନଙ୍କ ସ୍ୱରୂପ ହିଁ ପରମ ଆକର୍ଷକ ହୋଇଥାଏ । ପୁନଶ୍ଚ ସ୍ୱୟଂ ଭଗବାନ୍ ହିଁ ଦୁଇଟି ରୂପରେ ମୁନିବେଶରେ ଅବତୀର୍ଣ୍ଣ ହୋଇଥିବାରୁ ସେ ଦୁହିଁଙ୍କ ଶୋଭା ବର୍ଣ୍ଣନାତୀତ ହୋଇଥାଏ । ସେହି ନର-ନାରାୟଣ ଦୁଇଭାଇ ଏକରୂପର ଥିଲେ । ଉଭୟଙ୍କର ଚାଲିଚଳନ, ଚିତ୍ତ, ବସାଉଠା, ହସକୌତୁକ ଓ ସମସ୍ତ ଆଚରଣ ସମାନ ଥିଲା । ଉଭୟେ ଚତୁର୍ଭୁଜ ଥିଲେ । ସେ ଦୁହିଁଙ୍କ ମଧ୍ୟରେ ନର ଶୁକ୍ଳବର୍ଣ୍ଣ ଓ ନାରାୟଣ କୃଷ୍ଣବର୍ଣ୍ଣ ଥିଲେ । ଉଭୟଙ୍କର ନେତ୍ର କମଳ ସଦୃଶ ବିକସିତ ଓ ବୃହଦାକାର ଥିଲା । ଉଭୟ ମୁନି ବଲ୍‌କଳ ବସ୍ତ୍ର ପରିଧାନ କରିଥିଲେ ଓ କୃଷ୍ଣମୃଗର ବଡ଼ ଛାଲ ଦେହରେ ପକାଇଥିଲେ । ଉଭୟଙ୍କ ଅଙ୍ଗୁଳିରେ କୁଶ ବଟୁ ଶୋଭା ପାଉଥିଲା । ଉଭୟେ ସୁନ୍ଦର ତ୍ରିବୃତ୍ତ ଯଜ୍ଞୋପବୀତ ଧାରଣ କରିଥିଲେ । କଣ୍ଠଦେଶରେ ପଦ୍ମାକ୍ଷର ବଡ଼ ବଡ଼ ମାଳା ଝଟକି ଉଠୁଥିଲା । ଉଭୟଙ୍କ ହସ୍ତରେ ଜଳପୂର୍ଣ୍ଣ କମଣ୍ଡଳୁ ଥିଲା । ଉଭୟେ ସିଧା ବାଂଶଦଣ୍ଡ ଧାରଣ କରିଥିଲେ । ଉଭୟେ ପାଦତଳେ କୌଣସି ଜୀବ ମରି ନ ଯିବା ପାଇଁ ହସ୍ତରେ ପଥମାର୍ଜନୀ ଧରିଥିଲେ । ଉଭୟଙ୍କର ପିଙ୍ଗଳବର୍ଣ୍ଣର ଦିବ୍ୟ ଜଟା ସୂର୍ଯ୍ୟ କିରଣରେ ବିଦ୍ୟୁତ୍ ଭଳି ଝଟକୁଥିଲା । ଉଭୟଙ୍କର ଶ୍ରୀ ବିଗ୍ରହ ବିଶାଳ ଓ ଉନ୍ନତ ଥିଲା । ଦୂରରୁ ଦେଖିଲେ ଜଣା ପଡୁଥିଲା, ସତେ ଯେପରି ଉଭୟେ ତପର ଦୁଇ ମୂର୍ତ୍ତିଧରି ମୁନିଙ୍କ ତପରେ ତୁଷ୍ଟ ହୋଇ ତାଙ୍କୁ ଦର୍ଶନ ଦେବାକୁ ଆସୁଛନ୍ତି ।

ସେତେବେଳେ ମହାମୁନି ଧ୍ୟାନମଗ୍ନ ଥିଲେ । ହଠାତ୍ ତାଙ୍କ ଧ୍ୟାନ ଭାଙ୍ଗିଯିବାରୁ ସେ ନର-ନାରାୟଣଙ୍କୁ ତାଙ୍କ ଆଡ଼କୁ ଆସୁଥିବାର ଦେଖିଲେ । ସଙ୍ଗେ ସଙ୍ଗେ ସେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବାପାଇଁ ଉଠିପଡ଼ି ଦଣ୍ଡାୟମାନ ହେଲେ । ନିଜ ସମ୍ମୁଖରେ ତପସ୍ୱୀ ବେଶରେ ଭଗବାନଙ୍କୁ ଦର୍ଶନ କରି ମୁନି ତାଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ କଲେ । ଆଜି ତାଙ୍କ ତପସ୍ୟାର ପ୍ରତ୍ୟକ୍ଷ ଫଳ ମିଳିଗଲା । ଚିରକାଳର କାମନା ଆଜି ତାଙ୍କର ପୂର୍ଣ୍ଣ ହୋଇଗଲା । ପ୍ରଭୁଙ୍କ ଦର୍ଶନରେ ତାଙ୍କ ସମସ୍ତ ଇନ୍ଦ୍ରିୟ ଉଲ୍ଲସିତ ହୋଇଉଠିଲେ । ଶରୀର ରୋମାଞ୍ଚିତ ହୋଇଉଠିଲା । ତାଙ୍କ ନୟନ ସ୍ନେହାଶ୍ରୁରେ ଭରିଗଲା । ଅଙ୍ଗ ପ୍ରତ୍ୟଙ୍ଗ ଓ ହୃଦୟରେ ସଂଭ୍ରମ କାରଣରୁ କମ୍ପନ ସୃଷ୍ଟି ହେଲା । ଦେହ, ମନ ଓ ସମସ୍ତ ଇନ୍ଦ୍ରିୟ ସତେ ଯେପରି ଶାନ୍ତିସୁଧା ସାଗରରେ ନିମଗ୍ନ ହୋଇଗଲା । ସେ ଅପଲକ ନୟନରେ ଭଗବାନ ନର-ନାରାୟଣଙ୍କୁ ଦର୍ଶନ କରିବାକୁ ଲାଗିଲେ, ଆନନ୍ଦାଶ୍ରୁ ଏହି ଦର୍ଶନ ମଝିରେ ବାଧା ସୃଷ୍ଟି କରୁଥିଲେ ମଧ୍ୟ ସେ ତାହା ପୋଛି ପକାଇ ବାରମ୍ବାର ଦର୍ଶନ କରିବାକୁ ଲାଗିଲେ । କିନ୍ତୁ ସ୍ୱଷ୍ଟଭାବରେ ଦର୍ଶନ କରିବାରେ ନେତ୍ରନୀର ବାଧା ସୃଷ୍ଟି କଲା । ସେ ଏପରି ଆକୁଳିତ ହୋଇଉଠିଥିଲେ ଯେ, ସଙ୍ଗେ ସଙ୍ଗେ ଯାଇ ଭଗବାନଙ୍କୁ ଗାଢ଼ ଆଲିଙ୍ଗନ କରିବାରେ ଲାଗିଲେ । ଅତ୍ୟନ୍ତ ଉତ୍କଣ୍ଠାର ସହିତ ସେ ଉଠି କିଛି କହିବାକୁ ଚାହୁଁଥିଲେ କିନ୍ତୁ କହିପାରୁ ନଥିଲେ । ତାଙ୍କର କଣ୍ଠ ରୁଦ୍ଧ ହୋଇଯାଉଥିଲା । ଅତି କଷ୍ଟରେ ସେ ଏତିକି ମାତ୍ର କହିପାରିଲେ—
''ନମୋ ନମଃ, ନମୋ ନମଃ ।''

ମାର୍କଣ୍ଡେୟ ନର-ନାରାୟଣଙ୍କୁ କିଛି ସମୟ ନିର୍ନିମେଷ ନୟନରେ ଦର୍ଶନ କଲାପରେ ତାଙ୍କର ବାହ୍ୟ ଚେତନା ହେଲା । ସେ ଚିନ୍ତା କରିବାକୁ ଲାଗିଲେ—''ଆରେ ! ମୁଁ ତ ଭଗବାନଙ୍କର ପୂଜା ଏ ପର୍ଯ୍ୟନ୍ତ କରିନାହିଁ । ସେ ଅନେକ ସମୟ ହେଲା ଆସିଲେଣି, ତାଙ୍କୁ ବସିବାପାଇଁ ମଧ ମୁଁ ଆସନ ଦେଇନାହିଁ, ତାଙ୍କ ପାଦ ଧୋଇଦେଇନାହିଁ କିମ୍ବା ଅର୍ଘ୍ୟ ଓ ଆଚମନ ପାଇଁ ଜଳ ଟିକିଏ ବି ଦେଇନାହିଁ ।'' ଏହା ଚିନ୍ତାକରି ସେ କୁଟୀର ଭିତରକୁ ଧାଇଁ ଯାଇ ସୁନ୍ଦର ଆସନଟିଏ ଆଣି ତା ଉପରେ ବସିବା ପାଇଁ ଅତି ଯତ୍ନ ସହକାରେ ବିଛାଇଦେଲେ । ନର-ନାରାୟଣଙ୍କୁ ତା ଉପରେ ଆଦରରେ ବସାଇ ଗଙ୍ଗାଜଳ ଆଣି ଉଭୟଙ୍କ ଚରଣ ପ୍ରକ୍ଷାଳନ କରି ପୋଛା ପୋଛି କରିଦେଲେ । ଅର୍ଘ୍ୟ ଦେଇ ଆଚମନ କରାଇଲେ । ଚନ୍ଦନ ଘେନାଇ ଦେଲେ, ସମ୍ମୁଖରେ ଧୂପ ଲଗାଇ ସୁଗନ୍ଧିତ ପୁଷ୍ପର ମାଳା ପିନ୍ଧାଇ ଦେଲେ ଓ ଯଥାଯୋଗ୍ୟ ସାମଗ୍ରୀରେ ବିଧିବିଧାନ ଅନୁସାରେ ପୂଜାକଲେ ।

ଭଗବାନ ନର-ନାରାୟଣ ମୁନିଙ୍କ ପୂଜାକୁ ସ୍ୱୀକାର କରି ତାଙ୍କ ଉପରେ କୃପାବାରି ବୃଷ୍ଟି କରିବାପାଇଁ ବ୍ୟଗ୍ର ହୋଇଉଠିଲେ । ନିଜ ପ୍ରଭୁଙ୍କୁ ଏପରି କୃପା କରିବାକୁ ବ୍ୟଗ୍ର ହେଉଥିବାର ଦେଖି ମୁନି ତାଙ୍କ ଅରୁଣ ଚରଣାବିନ୍ଦରେ ପ୍ରଣାମକରି ଗଦ୍‌ଗଦ ବାଣୀରେ ସ୍ତୁତି କରିବାକୁ ଲାଗିଲେ ।

ସୂତ କହିଲେ—''ମୁନିଗଣ ! ଯେତେବେଳେ ମହାମୁନି ନର-ନାରାୟଣଙ୍କୁ ସ୍ତୁତି କଲେ, ସେତେବେଳେ ବଡ଼ଭାଇ ଶ୍ରୀ ନାରାୟଣ ଅତ୍ୟନ୍ତ ପ୍ରସନ୍ନ ହୋଇ ମୁନିଙ୍କୁ ସମ୍ବୋଧନ କରି କହିଲେ—'ମୁନିବର ! ଆପଣ ବ୍ରହ୍ମର୍ଷିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ଆପଣ ନିଜର ସଦ୍‌ଗୁଣଦ୍ୱାରା ସିଦ୍ଧି ଲାଭ କରିଅଛନ୍ତି । ବ୍ରହ୍ମନ୍ ! ତପସ୍ୟା କରି ସିଦ୍ଧି ଲାଭ କରିବା ଅତ୍ୟନ୍ତ କଠିନ । କାରଣ ତପସ୍ୟାରେ ବଡ଼ ବଡ଼ ବିଘ୍ନ ଉପସ୍ଥିତ ହୁଏ । ତପସ୍ୟା କରିବା ଦ୍ୱାରା ଇନ୍ଦ୍ରିୟଗୁଡ଼ିକର ଶକ୍ତି ବଢ଼ିଯାଏ । ସାମର୍ଥ୍ୟ ଅଧିକ ବି ବଢ଼ିଯାଏ । ନରକକୁ ଆଉ ଭୟ ରହେ ନାହିଁ । ଆପଣ ସମସ୍ତ ବିଘ୍ନକୁ ଜୟ କରିଛନ୍ତି । ଆପଣଙ୍କ ଚିତ୍ତର ଏକାଗ୍ରତା ବଢ଼ିଯାଇଛି । ମୋଠାରେ ଆପଣଙ୍କର ଭକ୍ତିଭାବ ଅକ୍ଷୁଣ୍ଣ ରହିଛି । ଏହିସବୁ କାରଣରୁ ଆପଣ ସୁଦୁର୍ଲଭ ସିଦ୍ଧି ଲାଭ କରିଛନ୍ତି । କାମଦେବ ଆପଣଙ୍କ ନିକଟରେ ହାର ମାନିଛନ୍ତି । ତେଣୁ ମୁଁ ଆପଣଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ।''

ମାର୍କଣ୍ଡେୟ ହାତଯୋଡ଼ି କହିଲେ—''ପ୍ରଭୋ ! ମୋର କି ଶକ୍ତି ଅଛି ଯେ, ମୁଁ ଏତେ ଅସାଧ କାର୍ଯ୍ୟରେ ଜୟଯୁକ୍ତ ହେବି ? ସବୁକିଛି ଆପଣ କରି କରାଇଛନ୍ତି । ଆପଣ ଯାହାକୁ ଉଦ୍ଧାର କରିବାକୁ ଚାହାନ୍ତି, ତା ହାତଧରି ଉଦ୍ଧାର କରନ୍ତି । ଯାହାକୁ ଜାଲରେ ପକାଇବାକୁ ଚାହାନ୍ତି, ତାହାକୁ ମାୟାଜାଲରେ ପକାଇ ଦିଅନ୍ତି । ନାରଦ ଓ ପର୍ବତ ତ ଅମ୍ବରୀଷ ରାଜାଙ୍କର କନ୍ୟା ଶ୍ରୀମତୀଙ୍କ ଫାନ୍ଦରେ ପଡ଼ି ଯାଇଥିଲେ । ଆପଣ ତାଙ୍କୁ ଧନୁର୍ବାଣ ଧାରଣ କରି ଉଦ୍ଧାର କରିଥିଲେ । ସୌଭାରି ଋଷି ତ ଜଗତରୁ ଅଦୃଶ୍ୟ ହୋଇ ଯମୁନାଜଳ ଭିତରେ ହଜାରବର୍ଷ ପର୍ଯ୍ୟନ୍ତ ତପସ୍ୟା କରିଥିଲେ, ଆପଣ ତାଙ୍କୁ ପଚାଶକନ୍ୟା ବିବାହ କରାଇଥିଲେ । ନୈଷ୍ଠିକବ୍ରତ ପାଳନ କରିବାରେ ମୋର ଅବା କି ସାମର୍ଥ୍ୟ ଥିଲା, ଆପଣ ହିଁ ତାହା ପାଳନ କରିବାରେ ସହାୟକ ହେବାରୁ ମୁଁ ସେଥିରେ କୃତକାର୍ଯ୍ୟ ହେଲି ।''

ଭଗବାନ୍ ନାରାୟଣ କହିଲେ—''ମୁନିବର ! ଆପଣ ଯାହା କହିଲେ, ତାହା ସତ୍ୟ । ମୋଠାରେ ଯାହାଙ୍କର ଅଚଳା ଭକ୍ତି ରହେ, ତାଙ୍କର କେବେହେଲେ ପତନ ହୁଏ ନାହିଁ । ମୁଁ ଆପଣଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ମୋ ଆଶୀର୍ବାଦରୁ ଆପଣଙ୍କର ସର୍ବଦା ମଙ୍ଗଳ ହେବ । ଏବେ ଆପଣ ମୋତେ ଆପଣଙ୍କର ଅଭୀଷ୍ଟ ବର ମାଗିନିଅନ୍ତୁ ।''

ମାର୍କଣ୍ଡେୟ କହିଲେ—" ପ୍ରଭୋ ! ଆପଣ ସମସ୍ତ ଦେବତାଙ୍କର ଅଧୀଶ୍ୱର ଦେବେନ୍ଦ୍ରଙ୍କର ମଧ୍ୟ ଈଶ୍ୱର ଅଟନ୍ତି । ଆପଣ ନିଜର ଶରଣାଗତଙ୍କର ଭୟ ଭଞ୍ଜନ କରନ୍ତି । ଆପଣ ଅନାଦି, ଅଚ୍ୟୁତ ଓ ଅଖିଳେଶ୍ୱର । ଆପଣ ମୋତେ ବର ମାଗିବାକୁ ଆଜ୍ଞା କରିବା ହେଉଛି ଆପଣଙ୍କର ମହତ ପଣ । ଆପଣ ଯେତେବେଳେ ସମସ୍ତ ଜଗତର ଈଶ୍ୱର ହୋଇ ମୋ ଉପରେ ପ୍ରସନ୍ନ ହୋଇଛନ୍ତି, ମୋର ଅନ୍ୟ ତୁଚ୍ଛ ସାଂସାରିକ ବରଲାଭ କରିବା କି ଆବଶ୍ୟକ ? ଆପଣଙ୍କର କୃପାଦୃଷ୍ଟି ସର୍ବଦା ମୋ ଉପରେ ପଡୁଥାଉ, ଏହି ବର ମୋ ପାଇଁ ଯଥେଷ୍ଟ ।"

ଭଗବାନ୍ କହିଲେ—"ମୁନିବର ! ଆପଣଙ୍କ ଉପରେ ମୋ କୃପାବାରି ବୃଷ୍ଟି ହେଉଥିଲେ ମଧ୍ୟ ସଂସାରରେ ଯେତେ ବରଦାନକାରୀ ଅଛନ୍ତି ମୁଁ ସମସ୍ତଙ୍କର ଈଶ୍ୱର । ଯେତେବେଳେ ସର୍ବସାଧାରଣ ସ୍ୱାମୀମାନେ ସେମାନଙ୍କ ସେବକମାନଙ୍କୁ କିଛି ନଦେଲେ ମନରେ ଆନନ୍ଦ ଲାଭ ହୁଏ ନାହିଁ, ସେତେବେଳେ କିଛି ବର ପ୍ରଦାନ ନକଲେ ମୋ ମନ କିପରି ସନ୍ତୁଷ୍ଟ ହେବ ? ଆପଣ ମୋତେ କିଛି ନା କିଛି ବର ମାଗନ୍ତୁ ।"

ମାର୍କଣ୍ଡେୟ ବିନୀତ ଭାବରେ କହିଲେ—"ପ୍ରଭୋ ! ମୁଁ କି ବର ମାଗିବି ତାହା ଭାବିପାରୁ ନାହିଁ । ଆପଣ ମୋତେ ଦର୍ଶନ ଦେଲେ, ଏହାଠାରୁ ବଳି ଆଉ ଅଧିକ କ'ଣ ଲାଭ ହୋଇପାରେ ? ବଡ଼ ବଡ଼ ଦେବଗଣ ସମାଧିରେ ଯାହାଙ୍କର ଚରଣାବିନ୍ଦ ଧ୍ୟାନ କରନ୍ତି ଓ ଧ୍ୟାନ କରି କରି ଯେତେବେଳେ ସେମାନଙ୍କର ମନ ଯୋଗଧାରଣାରେ ପୂର୍ଣ୍ଣ ପରିପକ୍ୱ ହୋଇଯାଏ, ସେତେବେଳେ ସେମାନେ ଆପଣଙ୍କର ଦିବ୍ୟ ଚିନ୍ମୟ ଚରଣାରବିନ୍ଦକୁ ଦର୍ଶନ କରନ୍ତି । କିନ୍ତୁ ମୋ ନେତ୍ର ସମ୍ମୁଖରେ ତ ଆପଣ ପ୍ରତ୍ୟକ୍ଷରେ ବିରାଜମାନ କରିଛନ୍ତି । ତେଣୁ ମୋର ଏବେ ଆଉ କି ବର ମାଗିବାର ଆବଶ୍ୟକତା ରହିଲା ?"

ଭଗବାନ୍ କହିଲେ—"ହଁ ତାହା ତ ସତ କଥା, ତଥାପି ଆପଣ ମୋ ଆଜ୍ଞାରେ ଆପଣଙ୍କର କୌଣସି ଇପ୍ସିତ ବର ମାଗି ନିଅନ୍ତୁ । ଏଥିରେ ମୁଁ ଅତ୍ୟନ୍ତ ଆନନ୍ଦିତ ହେବି ।"

ଭଗବାନଙ୍କର ଏପରି ଆଗ୍ରହ ଦେଖି ମହାମୁନି ବିବଶ ହୋଇପଡ଼ି କିଛି ସମୟ ଚିନ୍ତାକରି କହିଲେ—"ଭଗବନ୍ ! ଆପଣଙ୍କର ଯଦି ଏକାନ୍ତ ଆଗ୍ରହ, ତାହାହେଲେ ଆପଣଙ୍କ ମାୟାକୁ ମୋତେ ଦର୍ଶନ କରାଇ ଦିଅନ୍ତୁ । ମୁଁ ତ ଆପଣଙ୍କ କୃପାରୁ ଆପଣଙ୍କୁ ଦର୍ଶନ କଲି, କିନ୍ତୁ ଆପଣଙ୍କ ମାୟା ଦର୍ଶନ କରିନାହିଁ । ମୁଁ ଏବେ ଆପଣଙ୍କ ମାୟାକୁ ଦର୍ଶନ କରିବାକୁ ଇଚ୍ଛାକରୁଛି ।"

ଏହା ଶୁଣି ଭଗବାନ୍ ହସି ହସି କହିଲେ—"ମୁନିବର ! ମୋର ମାୟା ତ ଅତି ଦୁର୍ବୋଧ । ତାଙ୍କୁ ଦର୍ଶନ କରିବାରେ ଆପଣଙ୍କର କି ଲାଭ ହେବ ? ମୋର ଦର୍ଶନ ଲାଭ କଲ, ତାହା ହିଁ ପର୍ଯ୍ୟାପ୍ତ । ମାୟା ଦର୍ଶନରେ କିଛି ମିଳିବାର ନାହିଁ । ଯଦି ଦେଖିବାକୁ ଏକାନ୍ତ ଇଚ୍ଛା, ତାହାହେଲେ ମୁଁ ଦେଖାଇ ପାରିବି ।"

ମାର୍କଣ୍ଡେୟ କହିଲେ—"ଭଗବନ୍ । ଏହା ମୋ ପକ୍ଷେ କୌତୂହଳ ବିଷୟ ଯେ, ଲୋକପାଳଙ୍କ ସହିତ ଏହି ସମଗ୍ର ଲୋକ ଆପଣଙ୍କର ମାୟାରେ ମୋହିତ ହୋଇ ହିଁ ସତ୍ୟ ବସ୍ତୁରେ ଭେଦଭାବ ଦେଖୁଛନ୍ତି ।"

ଭଗବାନ୍ କହିଲେ—"ଆଚ୍ଛା, ଠିକ୍ ଅଛି, ଆପଣ ଯେତେବେଳେ ଇଚ୍ଛା କରୁଛନ୍ତି ତେବେ ମାୟାଙ୍କ ଦର୍ଶନ ପାଇଯିବେ । ଏହା କହି ଭଗବାନ ବିଦାୟ ହୋଇ ଯିବାକୁ ପ୍ରସ୍ତୁତ ହୋଇଗଲେ ।"

ସୂତ କହିଲେ—"ମୁନିଗଣ ! ଯେତେବେଳେ ମାର୍କଣ୍ଡେୟ ଦେଖିଲେ ଭଗବାନ୍

ଯିବାକୁ ପ୍ରସ୍ତୁତ ହେଲେଣି, ସେତେବେଳେ ସେ ଭଗବାନଙ୍କୁ ପୁନଶ୍ଚ ପୂଜାର୍ଚ୍ଚନା କଲେ । ମୁନିଙ୍କ ପୂଜା ସ୍ୱୀକାର କରି ଅତ୍ୟନ୍ତ ପ୍ରସନ୍ନ ହୋଇ ନର-ନାରାୟଣ ଉଭୟେ ବଦରିକାଶ୍ରମକୁ ଫେରି ଆସିଲେ । ଏହା ପରେ ମାର୍କଣ୍ଡେୟ ଯେପରି ମାୟା ଦର୍ଶନ କଲେ, ସେ କଥା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ କହିବି ।''

ଷଟ୍‌ପଦୀ

ମୁନି କୀ ଇସ୍ତୁତି ସୁନି କହତ ନାରାୟନ ଲାଗେ ।
ସିଦ୍ଧ ଭୟେ ମୁନିରାଜ ! ତିହାରେ ସବ ଭୟ ଭାଗେ ॥
ମାଁଗୋ ଜୋ ବରଦାନ ଦେହିଁ ହମ ଜୋ ତୁମ ଚାଓ ।
ହମକୁଁ କଛୁ ନ ଅଦେୟ ନ ମନ ମେଂ ମୁଦି ସକୁଚାଓ ॥
ଭୟେ ଦରଶ ସବ ବର ମିଲେ, ପରସେ ପଦ ପୁନି କା କହୁଁ ।
ତୁମରୀ ମାୟା ମୋହିନୀ, କମଲ ନୟନ ! ଦେଖନ ଚହୁଁ ॥



# ମାର୍କଣ୍ଡେୟ ମୁନିଙ୍କର ମାୟା ଦର୍ଶନ

**ତସୈକଦା ଭୃଗୁଶ୍ରେଷ୍ଠ ପୁଷ୍ପଭଦ୍ରାତଟେ ମୁନେଃ ।**
**ଉପାସୀନସ୍ୟ ସନ୍ଧ୍ୟାୟାଂ ବ୍ରହ୍ମନ୍ ବାୟୁରଭୂନ୍ମହାନ୍ ॥** ☆

(ଶ୍ରୀ ଭା: ୧୨ସ୍କ: ୯ଅ: ୧୦ଶ୍ଲୋକ)

ଷଟ୍‌ପଦୀ

ଏବମସ୍ତୁ କହି ଭୟେ ତିରୋହିତ ନର ନାରାୟନ ।
ମୁନି ପ୍ରସନ୍ନ ଅତି ଭୟେ କରେ୍ୟା ବ୍ରତକୋ ପାରାୟନ ॥
ଅତି ଉତ୍କଣ୍ଠିତ ଭୟେ ନିହାରୁଁ ମାୟା ଅବଇ ।
ବରଷା ଭଇ ପ୍ରଚଣ୍ଡ ଚରାଚର ଡୂବେ ସବଇ ॥
ସୁତ ମୃକଣ୍ଡ କେ ହୀ ବଚେ, ବହତ ପ୍ରଲୟ ଜଲ ମେ ସତତ ।
ସବରୋ ଜଗ ଜଲମୟ ଭୟୋ, ଭୂଖ ପ୍ୟାସ ତେଂ ମୁନି ଦୁଖିତ ॥

---

☆ ଆପଣା ଆଶ୍ରମରେ ଥାଇ । କିଛିଦିନ ଯେ ଶେଷ ହୋଇ ॥
ପୁଷ୍ପଭଦ୍ରା ନଦୀ ତଟରେ । ସ୍ନାନ ସନ୍ଧ୍ୟା ସାରି ତ୍ରିକାଳେ ॥
ଯୋଗଧ୍ୟାନରେ ବସିଛନ୍ତି । ବାସୁଦେବଙ୍କୁ ହୃଦେ ଚିନ୍ତି ॥
ଏମନ୍ତେ ପ୍ରଚଣ୍ଡ ପବନ । ବହେ ମହାଘୋର ଶବ୍ଦେଣ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୯ମଅ.)

ଭଗବାନଙ୍କ ମାୟା ବିଚିତ୍ର । ଭଗବାନ ନିଜେ ମଧ୍ୟ ତାଙ୍କ ମାୟାର ଆଦି ଅନ୍ତ ପାଆନ୍ତି ନାହିଁ । ସେ କ୍ଷେତ୍ରରେ ଦେବ, ଗନ୍ଧର୍ବ, ଯକ୍ଷ, ରାକ୍ଷସ, ଗୁହ୍ୟକ, କିଂପୁରୁଷ, କିନ୍ନର, ଦାନବ ଦୈତ୍ୟ ଅସୁର, ଋଷି, ମୁନି ଏପରିକି ଲୋକ-ପିତାମହ-ବ୍ରହ୍ମା ମଧ୍ୟ ଏହାର ଅନ୍ତ ପାଇ ନାହାନ୍ତି । ବୃନ୍ଦାବନବିହାରୀଙ୍କର ବଣରେ ବାଲ୍ୟକ୍ରୀଡ଼ା ଅବଲୋକନ କରି ଚତୁର୍ମୁଖ ବ୍ରହ୍ମା ମଧ୍ୟ ମାୟାଫାନ୍ଦରେ ପଡ଼ିଗଲେ । ଇନ୍ଦ୍ର ମଧ୍ୟ ମାୟାଫାନ୍ଦରେ ପଡ଼ିଗଲେ । ମାୟାରେ କୌଣସି କଥା ଅସମ୍ଭବ ନୁହେଁ, ଯେପରି ଆମେ ମନେ ମନେ ମିଠା ତିଆରି କଲାବେଳେ ସେଥିରେ କିଛି ଜିନିଷ ଆବଶ୍ୟକ ହୁଏନାହିଁ, ସ୍ୱପ୍ନରେ କ୍ଷଣକ ମଧ୍ୟରେ ଅନେକ କଥା ହୋଇଯାଏ, ଏଥିରେ କିଛି ପ୍ରୟାସ ନାହିଁକି ପ୍ରଯତ୍ନ ନାହିଁ; ସେହିପରି ମାୟାରେ କ୍ଷଣକ ମଧ୍ୟରେ ଜଗତର ସୃଷ୍ଟି ହୋଇଯାଏ ବା ବିନାଶ ହୋଇଯାଏ । କେତେକ ଦାର୍ଶନିକଙ୍କ ମତରେ ମାୟା ଶବ୍ଦର ଅର୍ଥ ଯାହା ସତ ନହୋଇ ମଧ୍ୟ ସତ ବୋଲି ପ୍ରତୀୟମାନ ହୁଏ । ଯେପରି କୁହୁକିଆ ସଙ୍ଗେ ସଙ୍ଗେ ଆମ୍ବଟାକୁଆରୁ ଗଛ ସୃଷ୍ଟି କରି ତାହାକୁ ପତ୍ର, ପୁଷ୍ପ ଓ ଫଳରେ ଭରିଦିଏ, ମାତ୍ର ପ୍ରକୃତରେ କିଛି ହୋଇ ନଥାଏ । ଏହିପରି ମାୟାରେ ସବୁକିଛି ପ୍ରତୀୟମାନ ହୋଇଥାଏ ମାତ୍ର ପ୍ରକୃତରେ ବିଚାର କଲେ ତାହା କିଛି ନୁହେଁ ।

ସୂତ କହିଲେ—"ମୁନିଗଣ ! ଯେତେବେଳେ ନର-ନାରାୟଣ ମହାମୁନି ମାର୍କଣ୍ଡେୟଙ୍କୁ ମାୟା ଦର୍ଶନର ବରଦାନ ଦେଇ ବଦ୍ରିକାଶ୍ରମ ଚାଲିଗଲେ, ସେତେବେଳେ ମୁନି ମାର୍କଣ୍ଡେୟ ନିଜ ଆଶ୍ରମରେ ସୁଖରେ ରହିଲେ । ତାଙ୍କ ମନ ଭଗବାନଙ୍କ ମାୟା ଦର୍ଶନ କରିବା ପାଇଁ ବ୍ୟାକୁଳ ହେଉଥାଏ ।

ସେ ସବୁବେଳେ ନିୟମାନୁସାରେ ପୂର୍ବଭଳି ସୂର୍ଯ୍ୟ, ଚନ୍ଦ୍ରମା, ପୃଥିବୀ, ଜଳ, ତେଜ, ବାୟୁ, ଆକାଶକୁ ପୂଜାକଲେ ଓ ମନରେ ହରିଙ୍କୁ ଧ୍ୟାନକଲେ । ସେତେବେଳକୁ ସେ କୃତକୃତ୍ୟ ହୋଇ ସାରିଥିଲେ । ତାଙ୍କୁ ଭଗବାନଙ୍କର ଦର୍ଶନ ମିଳି ସାରିଥିଲା, ତେଣୁ ତାଙ୍କର ହୃଦୟ ପ୍ରେମରେ ପରିପୂର୍ଣ୍ଣ ହୋଇଗଲା । ବେଳେ ବେଳେ ପୂଜା କରିବା ସମୟରେ ତାଙ୍କ ହୃଦୟରେ ପ୍ରେମର ଏପରି ପ୍ରବାହ ହେଉଥିଲା ଯେ, ସେଥିରେ ସେ ବିହ୍ୱଳିତ ହୋଇ ପ୍ରେମାର୍ଣ୍ଣବରେ ନିମଗ୍ନ ହେଉଥିଲେ । ସେତେବେଳେ ତାଙ୍କୁ ବାହ୍ୟ ଜଗତର ସ୍ମରଣ ମଧ୍ୟ ହେଉ ନଥିଲା । ସେ ବାହ୍ୟ ପୂଜାପାଠ ଇତ୍ୟାଦି ସମସ୍ତ କାର୍ଯ୍ୟକୁ ଭୁଲି ଯାଉଥିଲେ । କିନ୍ତୁ ମାୟା ଦର୍ଶନ ପାଇଁ ସେ ସବୁବେଳେ ଆଗ୍ରହୀ ରହୁଥିଲେ ।

ଦିନକର ଘଟଣା, ସେ ସେଦିନ ସନ୍ଧ୍ୟା ସମୟରେ ସନ୍ଧ୍ୟା କରିବା ନିମିତ୍ତ ପୁଣ୍ୟ-ସଲିଳା ଭଗବତୀ ପୁଷ୍ପଭଦ୍ରା କୂଳରେ ବସିଥିଲେ ଓ ଭଗବାନଙ୍କୁ ଧ୍ୟାନ କରିବାରେ ମଗ୍ନ ଥିଲେ, ତାଙ୍କୁ ସେହି ସମୟରେ ଦେଖାଗଲା ଯେ, ପ୍ରବଳ ବେଗରେ ଝଡ଼ ଆସୁଛି । ଝଡ଼ତୋଫାନର ପ୍ରଚଣ୍ଡ ବେଗ ଦଶଦିଗ ବ୍ୟାପୀ ଯାଇଛି । ଯଦି କେବଳ ଝଡ଼ତୋଫାନ ବ୍ୟାପକ ବେଗରେ ହୋଇଥାଆନ୍ତା, ତେବେ କିଛି କଥା ନଥିଲା । ସେହି ପ୍ରଚଣ୍ଡ ମହାଭୟଙ୍କର ବାୟୁର ପ୍ରକୋପ ସଙ୍ଗେ ସଙ୍ଗେ ଆକାଶରେ ସଜଳ କଳାମେଘମାଳା ହାତୀ ଗର୍ଜନ ପରି ଗର୍ଜନ କରି ଘୋଟିଆସିଲା । ତା ମଧ୍ୟରେ ଏପରି ବିଜୁଳି ଚମକୁଥିଲା, ସତେଯେପରି ଘୋର ଅନ୍ଧକାରରେ ଉଲ୍‌କାମୁଖପ୍ରେତ ନୃତ୍ୟ କରୁଛି । କିଛି ମସୟ ମଧ୍ୟରେ ଅତି ଭୟଙ୍କର ମୂଷଳ ଧାରାରେ ବର୍ଷା ହେବାକୁ ଲାଗିଲା । କ୍ଷଣକ ମଧ୍ୟରେ ସାରା ବିଶ୍ୱ ଜଳମୟ ହୋଇଗଲା । ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷଲତା, ପର୍ବତ ଓ ଅନ୍ୟାନ୍ୟ ପାର୍ଥିବ ପଦାର୍ଥସବୁ ଅଦୃଶ୍ୟ ହୋଇଗଲା । ଚାରି ସମୁଦ୍ର ମିଶି ଏକ ହୋଇଗଲେ । ବାୟୁର ପ୍ରବଳ ବେଗରେ ଉଠୁଥିବା ଉତ୍ତାଳ ତରଙ୍ଗ ଆକାଶକୁ ସ୍ପର୍ଶ କରୁଥିଲା । ସମୁଦ୍ର ଗର୍ଜନରେ ଚତୁର୍ଦ୍ଦିଗ ମୁଖରିତ ହୋଇ ଉଠୁଥିଲା । ସମଗ୍ର

ବିଶ୍ୱ ଜଳାର୍ଣ୍ଣବ ହୋଇ ଯାଇଥିଲା । ପଶୁ, ପକ୍ଷୀ, ମନୁଷ୍ୟ ଓ ବୃକ୍ଷଲତା ଆଦି ଚାରି ପ୍ରକାରର ଜୀବ ଜଳ ମଧ୍ୟରେ ବିଲୀନ ହୋଇଗଲେ । ପ୍ରଚଣ୍ଡ ପବନ, ମେଘ ଗର୍ଜନ, ବିଦ୍ୟୁତ୍‌ର ଭୟପ୍ରଦ ଚମକରେ ମହାମୁନି ମାର୍କଣ୍ଡେୟ ଅତ୍ୟନ୍ତ ବ୍ୟଥିତ ହେଲେ । ସେ ପୁଷ୍ପଭଦ୍ରା ତଟରେ ବସିଥିଲେ । ସେ ଚାହୁଁ ଚାହୁଁ ଚରାଚର ଜଗତ ତାଙ୍କ ଆଗରେ ଜଳରେ ବିଲୀନ ହେଉଥିଲା, କିନ୍ତୁ ସେ ସାବଧାନ ହୋଇ ନିଜ ଆଶ୍ରମ ନିକଟରେ ଥିବା ନଦୀତଟରେ ଅଟଳ ଆସନ କରି ଏହିସବୁ ଦୃଶ୍ୟ ଦେଖୁଥିଲେ ।

ପ୍ରଳୟର ରୋମାଞ୍ଚକାରୀ ଦୃଶ୍ୟ ସେ ସ୍ୱଚକ୍ଷୁରେ ଏବେ ଦେଖିପାରିଲେ । ସେ ପ୍ରଥମେ ଦେଖିଲେ, ଅତି ପ୍ରବଳ ବେଗରେ ପବନ ବହୁଛି, ମୂଷଳ ଧାରାରେ ବର୍ଷା ହେଉଛି । ଚାରିଆଡ଼ ଜଳାର୍ଣ୍ଣବ । ପ୍ରଳୟକାଳୀନ ଅପାର ଜଳରାଶି ତୋଫାନ ହେଉଥିବା କାରଣରୁ କ୍ଷୁଭିତ ହେଉଅଛି । ଉଚ୍ଚ ଉଚ୍ଚ ଲହଡ଼ି ଗର୍ଜନକରି ଦ୍ୱୀପ ଓ ସ୍ଥଳଭାଗର ସୀମା ଅତିକ୍ରମ କରୁଅଛି । ପୃଥ୍ୱୀ, ଅନ୍ତରୀକ୍ଷ, ସ୍ୱର୍ଗ, ଗ୍ରହ, ନକ୍ଷତ୍ର, ତାରାଗଣ ତଥା ଦଶଦିଗ ସମସ୍ତ ଏକାକାର । ଯେଉଁଆଡ଼କୁ ଚାହିଁବ ସର୍ବତ୍ର କେବଳ ଜଳ । ମାର୍କଣ୍ଡେୟ ଦେଖିଲେ, କେବଳ ତାଙ୍କୁ ଛାଡ଼ି ସଂସାରରେ ଆଉ କିଛି ନାହିଁ । ସାରା ସଂସାରରେ କେବଳ ସେହି ହିଁ ବଞ୍ଚିଛନ୍ତି । ଏହି ସମୟରେ ଏକ ପ୍ରକାଣ୍ଡ ଲହରୀ ମାଡ଼ିଆସି ସ୍ୱୟଂ ମାର୍କଣ୍ଡେୟଙ୍କୁ ବି ଭସାଇ ନେଲା । ଏବେ ମୁନି ଅପାର ସମୁଦ୍ର ମଧ୍ୟରେ ଏପରି ଭାସିବାକୁ ଲାଗିଲେ, ଯେପରି କୌଣସି ଜଳଜନ୍ତୁ ସମୁଦ୍ର ପାର ହେବାକୁ ଚେଷ୍ଟାକରୁଛି । ମୁନିଙ୍କର ବଡ଼ ବଡ଼ ସୁନେଲି ଜଟା ଇତସ୍ତତଃ ଦୋଳାୟମାନ ହେଉଥାଏ । ସେ ଏହା ବୁଝିପାରୁ ନଥାନ୍ତି ଯେ, କେଉଁଠାକୁ ସେ ଯାଉଛନ୍ତି ଓ କାହିଁକି ଭାସି ଯାଉଛନ୍ତି ? ଭଗବାନଙ୍କ ମାୟାରୁ ବୁଡ଼ିଯାଉ ନଥାନ୍ତି ସତ, କିନ୍ତୁ ପ୍ରଚଣ୍ଡ ତରଙ୍ଗ ଆଘାତରେ ଏଣେ ତେଣେ ଭାସି ଯାଉଥାଆନ୍ତି । ତାଙ୍କର ଦିଗ ଜ୍ଞାନ ଆଦୌ ନ ଥାଏ । କର୍ମ କରିବାର ଶକ୍ତି ନଷ୍ଟ ହୋଇଯାଇଥାଏ । ସେ ଜଡ଼ାନ୍ଧବତ୍ ଏଣେ ତେଣେ ଭାସି ଚାଲିଥାଆନ୍ତି ।

ସମୁଦ୍ରରେ ସ୍ଥାନେ ସ୍ଥାନେ ବଡ଼ ବଡ଼ ମାଛ ତାଙ୍କର ଦୃଷ୍ଟିଗୋଚର ହେଉଥାଆନ୍ତି । ସ୍ଥାନେ ସ୍ଥାନେ ଦ୍ୱୀପ ଆକାରରେ ମକର, କଚ୍ଛପ, ତିମିଙ୍ଗିଳ ଆଦି ଭୟଙ୍କର ଜୀବଜନ୍ତୁ ଦୃଷ୍ଟିଗୋଚର ହେଉଥାଆନ୍ତି । ଚତୁର୍ଦ୍ଦିଗ ପ୍ରଳୟଙ୍କରୀ ବର୍ଷାର ଘୋର ଅନ୍ଧକାରରେ ତୋଫାନ-ଅପହତ ଅପାର ଅନ୍ଧକାରରେ ଦୈବବଳରୁ ସେ କେବଳ ଭାସମାନ ଅବସ୍ଥାରେ ରହିଥାଆନ୍ତି । କ୍ଷୁଧା ପିପାସାରେ ସେ ଅତ୍ୟନ୍ତ ବ୍ୟାକୁଳିତ ହେଉଥାଆନ୍ତି । ମକର, ତିମିଙ୍ଗିଳଙ୍କ ଭୟରେ ଭୟଭୀତ ହେଉଥାଆନ୍ତି । ତରଙ୍ଗ ଆଘାତରେ ଶ୍ରାନ୍ତ ହୋଇ ପଡ଼ିଥାଆନ୍ତି । ଅପ୍ରତ୍ୟାଶିତ ଘଟଣାରେ ସେ ବିମୂଢ଼ ହୋଇପଡ଼ି ଥାଆନ୍ତି । ଏହି ପ୍ରକାର ସେ ପୃଥିବୀ ତଥା ଆକାଶଜ୍ଞାନ ବିହୀନ ହୋଇ ଜଳ ପ୍ରବାହରେ ପ୍ରବାହିତ ହୋଇ ଚାଲିଥାଆନ୍ତି । ସମୟ ସମୟରେ ତାଙ୍କୁ ଜଳର ଭୟଙ୍କର ଆବର୍ତ୍ତରେ ଘୂରିବାକୁ ପଡୁଥାଏ ଓ ପୁନଶ୍ଚ ସମୟ ସମୟରେ ଉତ୍ତାଳ ତରଙ୍ଗରେ ତାଡ଼ିତ ହୋଇ ତଟ ଅନ୍ୱେଷଣ କରିବାକୁ ପଡୁଥାଏ । କିନ୍ତୁ ତଟ ଅବା ମିଳିବ କେଉଁଠୁ ? ସର୍ବତ୍ର ତ ଅଗାଧ ଜଳରାଶି । ଚତୁର୍ଦ୍ଦିଗ ଜଳମୟ ଦେଖି ସେ ସମୟ ସମୟରେ ଶୋକାକୁଳ ହୋଇ ପଡୁଥାଆନ୍ତି । ତାଙ୍କର ଆଶ୍ରମ କଥା ମନେ ପଡ଼ିଯାଉଥାଏ । ଭଜନ ପୂଜନର ବିରତ ହୋଇଥିବା କାରଣରୁ ତାଙ୍କର ସମ୍ମୋହ ଜାତ ହୋଇଥାଏ । ସେ ଜଳଜନ୍ତୁଙ୍କ ଭୟରେ ଭୀତତ୍ରସ୍ତ ହୋଇ ନିଜକୁ ଅତି ଦୁର୍ଦ୍ଦଶାଗ୍ରସ୍ତ ବୋଲି ମନେ କରୁଥାଆନ୍ତି । ସେ ଆଶ୍ଚର୍ଯ୍ୟ ହେଉଥାଆନ୍ତି ଯେ, ତାଙ୍କୁ ପ୍ରକାଣ୍ଡ ଲହରୀମାଳା କେବଳ ଭସାଇ ଭସାଇ ଉଠାପକା କରୁଛନ୍ତି, ଅଥଚ ସେ ଜଳରେ ବୁଡ଼ିଯାଉ ନାହାନ୍ତି କିମ୍ବା ତାଙ୍କ ମୁଖ ନାସାରେ ପାଣି ଭରିଯାଉ ନାହିଁ । ତାଙ୍କୁ କୌଣସି ଜଳଜନ୍ତୁ ବି ଭକ୍ଷଣ କରୁନାହାନ୍ତି । ଏହି କଥା ଚିନ୍ତା କରିବାଦ୍ୱାରା ତାଙ୍କୁ

ସମୟ ସମୟରେ ଆନ୍ତରିକ ସୁଖ ମିଳୁଥାଏ ତ ସମୟ ସମୟରେ ଅପାର ଜଳରାଶିକୁ ଦେଖି ତାଙ୍କ ଶରୀରରେ କମ୍ପନ ଜାତ ହେଉଥାଏ । ସମୟ ସମୟରେ ସେ ଏପରି ଅନୁଭବ କରୁଥାଆନ୍ତି, ସତେ ଯେପରି ସେ ମୃତ୍ୟୁମୁଖରେ ପଡ଼ିବାକୁ ଯାଉଛନ୍ତି; କିନ୍ତୁ ବଞ୍ଚିଯାଇ ଅଳ୍ପକେ ରକ୍ଷା ପାଇଯାଉଛନ୍ତି । ତାଙ୍କ ଦେହରେ ଜ୍ୱାଳାପୋଡ଼ା ସେ ସମୟ ସମୟରେ ଅନୁଭବ କରୁଥାଆନ୍ତି । ସମୟ ସମୟରେ ତାଙ୍କ ଶରୀର ଜଳରେ ଶୂନ୍ୟପରି ଜଣା ପଡୁଥାଏ । ପୁନଶ୍ଚ ସମୟ ସମୟରେ ଶରୀର ବ୍ୟାଧିଗ୍ରସ୍ତ ଭଳି ସେ ଅନୁଭବ କରୁଥାଆନ୍ତି । ସେ ନାନା ପ୍ରକାର ବ୍ୟାଧିରେ ପ୍ରପୀଡ଼ିତ ଲୋକଙ୍କ ଭଳି ବ୍ୟଥା ଅନୁଭବ କରି ଅତି ବ୍ୟାକୁଳ ହେଉଥାଆନ୍ତି ।

ସୂତ କହିଲେ—''ମୁନିଗଣ ! ମାର୍କଣ୍ଡେୟ ମୁନି ଏହିପରି ଭାବରେ ପ୍ରଳୟ ଜଳ ମଧ୍ୟରେ ଲକ୍ଷେବର୍ଷ ଭାସି ଭାସି ଚାଲିଲେ । କେତେ ଯୁଗ ହେବ ପ୍ରଳୟଜଳରେ ଭାସୁଛନ୍ତି, ଏକା ସେ ନିଜେ ବି ଜାଣି ପାରିଲେ ନାହିଁ ।''

ଦିନକର ଘଟଣା, ମହାମୁନି ସେହି ଅଗାଧ ଜଳରାଶିରେ ଭାସି ଭାସି ବହୁତ ଦୂର ଚାଲି ଯାଇଥାଆନ୍ତି । ଏକ ସ୍ଥାନରେ ସମୁଦ୍ର ମଧ୍ୟରେ ତାଙ୍କୁ ଏକ ପାହାଡ଼ ଥିବା ଭଳି ଦେଖାଗଲା । ଚିରକାଳ ପରେ ଭୂପୃଷ୍ଠ (ପାହାଡ଼) ଦେଖିବା ମାତ୍ରେ ମୁନିଙ୍କର ମନମୁକୁର ପ୍ରସନ୍ନ ହୋଇଉଠିଲା । ସେ ଧ୍ୟାନପୂର୍ବକ ଦେଖିଲେ ସେହି ପାହାଡ଼ ଉପରେ ନୀଳ ନୀଳ ପତ୍ର ବିଶିଷ୍ଟ ଏକ କ୍ଷୁଦ୍ର ବଟବୃକ୍ଷ ରହିଛି । ସେଥିରେ ଅତ୍ୟନ୍ତ କୋମଳ ଚୌଡ଼ା ଚୌଡ଼ା ଦୁଇ ତିନୋଟି ନବୀନ ପତ୍ର ଅଛି । ସେହି ଅକ୍ଷୟବଟ ଏତେ ସୁନ୍ଦର ମନୋହର ଥିଲା ଯେ, ତାହାକୁ ଦର୍ଶନ କରିବା ମାତ୍ରେ ମୁନିଙ୍କର ସମସ୍ତ ତାପସନ୍ତାପ ଦୂର ହୋଇଗଲା । ସେହି ବଟବୃକ୍ଷର ଉତ୍ତରପୂର୍ବ ଶାଖାରେ ଏକ ପୁଟ ପତ୍ରରେ ମୁନି ଏକ କୋମଳ ଶିଶୁ କ୍ରୀଡ଼ା କରୁଥିବାର ଦେଖିଲେ । ବଟ-ପୁଟପତ୍ର ଉପରେ ନିଜର କରାରବିନ୍ଦରେ ପଦାରବିନ୍ଦକୁ ଧରି ମୁଖାରବିନ୍ଦରେ ରଖି ବୃଦ୍ଧାଙ୍ଗୁଳିକୁ ଚୁଚୁମୁଥିବା ସେହି ଅଦ୍ଭୁତ ଅତି ସୁନ୍ଦର ଶିଶୁକୁ ଦେଖି ମୁନି ଅତ୍ୟନ୍ତ ବିସ୍ମିତ ହେଲେ ।

ସେହି ବାଳକ ଅଦ୍ଭୁତ ଥିଲା, ତାହାର ଶୋଭା ଥିଲା ଅବର୍ଣ୍ଣନୀୟ । ଦେଖିବାକୁ ଅତ୍ୟନ୍ତ ସୁନ୍ଦର । ସେ ତାହାର ଦିବ୍ୟକାନ୍ତିରେ ସେହି ଅଞ୍ଚଳର ଅନ୍ଧକାରକୁ ଦୂର କରୁଥିଲା । ତାହାର ନିର୍ମଳ ବର୍ଣ୍ଣ ମହା ମରକତ ମଣି ସଦୃଶ ଶ୍ୟାମବର୍ଣ୍ଣ ଥିଲା । ମୁଖପଦ୍ମ ଅତ୍ୟନ୍ତ ଆକର୍ଷକ ଥିଲା । ଛୋଟ ସୁନ୍ଦର ଗ୍ରୀବା ଶଙ୍ଖ ଭଳି ଉନ୍ନତ ଥିଲା । ଅନ୍ୟାନ୍ୟ ଅଙ୍ଗ ଅପେକ୍ଷା ତାହାର ବକ୍ଷସ୍ଥଳ ବିଶାଳ ଓ ଶୋଭାଯୁକ୍ତ ଥିଲା । ତାହାର ବଡ଼ ବଡ଼ ଉତ୍‌ଫୁଲ୍ଲ ନୟନଦ୍ୱୟର ଉପରଭାଗକୁ ଥିବା ଧନୁଷାକାର ଭ୍ରୂଲତାଦ୍ୱୟ ଓ ନାସିକା ଅତ୍ୟନ୍ତ ସୁନ୍ଦର ପ୍ରତୀତ ହେଉଥିଲା । ତାହାର ମନ୍ଦ ମନ୍ଦ ହସରେ ଦିବ୍ୟ ଶୋଭା ଭରି ରହିଥିଲା । ତାହାର ସୁନ୍ଦର ଉଦର ପିପ୍ପଳ ପତ୍ର ସଦୃଶ ଗୋଲ ଓ ମନୋହର ଥିଲା । ସେଥିରେ ବଳୟାକାର ଗମ୍ଭୀର ନାଭି ଅତି ମନୋହର ଦିଶୁଥିଲା । ବାରମ୍ବାର ଶ୍ୱାସ ପ୍ରଶ୍ୱାସ ନେବାଦ୍ୱାରା ତାହାର ଉଦରରେ ପଡ଼ିଥିବା ତ୍ରିବଳୀ ଦୋଳାୟମାନ ହେଉଥିଲା । ମୁନି ଦେଖିଲେ, ସେହି ଛୋଟ ବାଳକଟି ନିର୍ଭୟରେ ସେହି ବଟପୁଟର ପତ୍ର ଉପରେ ଶୟନ କରି ନିଜ ହାତରେ ପାଦର ବୁଢ଼ା ଆଙ୍ଗୁଠିକୁ ଧରି ମୁଖରେ ଦେଇ ସ୍ୱାଦ ସହିତ ତାକୁ ଚୁଚୁମୁଥିଲା । ମୁନି ଏହା ନିର୍ଣ୍ଣୟ କରି ପାରିଲେ ନାହିଁ ଯେ, ଏହି ବାଳକଟି କିଏ ? ଏହି ବଟବୃକ୍ଷର ପତ୍ର ଉପରେ ସେ ଏକାକୀ କାହିଁକି ଶୋଉଛି ? ସେ ନ କାନ୍ଦି କାହିଁକି ସର୍ବଦା ହସୁଛି ? ସେ ଆଦୌ ଭୟ କରୁନାହିଁ, କିନ୍ତୁ ସମସ୍ତ ଭୟକୁ ଦୂରେଇ ଦେଉଛି ।

ସେହି ବାଳକକୁ ଦର୍ଶନ କରିବା ମାତ୍ରେ ମୁନିଙ୍କର ଶୋକ, ମୋହ, ଦୁଃଖ, ଭୟ ଓ ସମସ୍ତ ପ୍ରକାରର ତାପସନ୍ତାପ ନଷ୍ଟ ହୋଇଗଲା । ଏତେ ଦିନ ପର୍ଯ୍ୟନ୍ତ ସେ ଉତ୍ତାଳ ତରଙ୍ଗର ଆଘାତ ପାଇ ପାଇ ଶ୍ରମିତ ହୋଇ ପଡ଼ିଥିଲେ । ଏବେ ତାଙ୍କର ସମସ୍ତ ଶ୍ରମ ଦୂର ହୋଇଗଲା ।

ତାଙ୍କ ହୃଦୟ ଆନନ୍ଦରେ ବିଭୋର ହୋଇଉଠିଲା । ତାଙ୍କର ମଳିନମୁଖ ପ୍ରଫୁଲ୍ଲିତ ତଥା ବିକସିତ ହୋଇଉଠିଲା । ନେତ୍ର ଆନନ୍ଦରେ ଉଜ୍ଜ୍ୱଳ ଦେଖାଗଲା । ତାଙ୍କ ଶରୀର ରୋମାଞ୍ଚିତ ହୋଇଗଲା । ବାଳକଟି ଦେଖିବାକୁ ତ ଖୁବ୍ ଛୋଟ ଥିଲା, କିନ୍ତୁ ତାହାର ସମସ୍ତ ଚେଷ୍ଟା ଅଲୌକିକ ଥିଲା ଓ ସମସ୍ତ ଭାବଭଙ୍ଗୀ ଅଦ୍ଭୁତ ଥିଲା । ଏବେ ମୁନି ତାକୁ କିଛି ପଚାରିବା ପାଇଁ ମନରେ ଚିନ୍ତା କରିବାକୁ ଲାଗିଲେ ।

ସୂତ କହିଲେ—"ମୁନିଗଣ ! ଏହାପରେ ମାର୍କଣ୍ଡେୟ ମୁନିଙ୍କୁ ଯେପରି ବାଳମୁକୁନ୍ଦ ଭଗବାନଙ୍କ ଉଦର ମଧ୍ୟରେ ବିଶ୍ୱରୂପ ଦର୍ଶନ ହେଲା, ସେହି ପ୍ରସଙ୍ଗ ମୁଁ ପରବର୍ତ୍ତୀ ଅଧ୍ୟାୟରେ ଆପଣମାନଙ୍କୁ କହିବି । ଆପଣମାନେ ସମାହିତ ଚିତ୍ତରେ ଏହି ପୁଣ୍ୟ ପ୍ରସଙ୍ଗକୁ କୃପାକରି ଶ୍ରବଣ କରିବେ ।"

ଷଟ୍‌ପଦୀ

ନିରଖ୍ୟୋ ତବ ବଟ ବୃକ୍ଷ ଫିରତ ଜବ ଇତ ଉତକତ ।
ମରକତ ମନି କେ ସରିସ ସୁଧର ଶିଶୁ ତାପୈ ବିହରତ ।।
ପରେ ପତ୍ର ପୁଟ ଶ୍ୟାମ ଚରନ କୁଁ ମୁଖ ମେଁ ଚୂସତ ।
ଚିତବତ ହ୍ୱୈ ଅତି ଚକିତ ପ୍ରଭା ତେଂ ସବ ଅଙ୍ଗ ବିକସତ ।।
କରି ଦରଶନ ସଂତାପ ଶ୍ରମ, ଶୋକ, ମୋହ ସବ ନସି ଗୟେ ।
ଶ୍ୟାମ ସଲୌନେ ସୁଧର ଶିଶୁ, ମୁନି କେ ମନ ମେଂ ବସିଗୟେ ।।



# ବାଳମୁକୁନ୍ଦଙ୍କ ଉଦରରେ ବିଶ୍ୱରୂପ ଦର୍ଶନ

**ତାବଚ୍ଛିଶୋର୍ବୈ ଶ୍ୱସିତେନ ଭାର୍ଗବଃ**
**ସୋଽନ୍ତଃଶରୀରଂ ମଶକୋ ଯଥାବିଶତ୍ ।**
**ତତ୍ରାପ୍ୟଦୋ ନ୍ୟସ୍ତମଚଷ୍ଟ କୃତ୍ସ୍ନଶୋ**
**ଯଥା ପୁରାମୁହ୍ୟଦତୀବ ବିସ୍ମିତଃ ।। ☆**

(ଶ୍ରୀ ଭା: ୧୨ସ୍କ: ୯ଅ: ୨୭ଶ୍ଲୋକ)

---

☆ ବାଳକ ନିକଟେ ପ୍ରବେଶି । ଉଭା ହୋଇଲେ ସେହି ଋଷି ।।
ବାଳକ ନିଃଶ୍ୱାସ ପବନ । ବାଜେ ମାରକଣ୍ଡ ଦେହେଣ ।।
ମୁଖ ବିସ୍ତାର କରି ହରି । ଗିଳିଲେ ମଶା ପ୍ରାୟ କରି ।।
ହୃଦୟ ଭିତରେ ପଶିଲେ । ତହିଁରେ ବୁଲିଣ ଦେଖିଲେ ।।
ପୂର୍ବ ପରାୟେ ସୃଷ୍ଟି ଅଛି । ଦେଖିଲେ ମୃକଣ୍ଡର ବତ୍ସି ।।
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୯ମଅ.)

ଷଟ୍‌ପଦୀ

ଜ୍ୟୋଂ ହୀ ସନ୍ମୁଖ ଗୟେ ଶ୍ୱାଁସ ତବ ଶିଶୁ ନେ ଲୀନ୍‌ହୀଂ ।
ଘୁସେ ନାସିକାଦ୍ୱାର ସୃଷ୍ଟି ଭୀତର ସବ ଚୀନ୍‌ହୀଂ ॥
ଭୂ ନଭ, ଗ୍ରହ, ଗିରି, ଦ୍ୱୀପ, ଅସୁର ସୁର ସବ ହିଁ ନିହାରେ ।
ମୁନି ଅତି ବିସ୍ମିତ ଭୟେ ଶ୍ୱାଁସ ତଜି ଫେରି ନିକାରେ ॥
ଦେଖ୍ୟୋ ମୁନି ବଟ ପ୍ରଲୟ ଜଲ, ଶିଶୁ ମନହର କ୍ରୀଡ଼ା କରତ ।
ଦୌରେ ଆଲିଙ୍ଗନ ନିମିତ, ଲୀନ ଭୟୋ ବଟ ଶିଶୁ ତୁରତ ॥

ଯିଏ ସର୍ବଜ୍ଞ, ସର୍ବମୟ ଅଟନ୍ତି ତାଙ୍କଠାରେ ଭିତର ବାହାରର ଭେଦଭାବ ରହେ ନାହିଁ । ଅଗ୍ନିରେ ଜଳୁଥିବା ଅଙ୍ଗାରର ଭିତରେ ଅଗ୍ନି ଓ ବାହାରେ ବି ଅଗ୍ନି ଥାଏ । ଜଳ ଜମାଟ ବାନ୍ଧିଗଲେ ବରଫଖଣ୍ଡ ହୁଏ । ସେହି ବରଫଖଣ୍ଡର ବାହାରେ ଓ ଭିତରେ ଉଭୟ ସ୍ଥାନରେ କେବଳ ଜଳ । ଜଳ ବ୍ୟତୀତ ସେଥିରେ ଅନ୍ୟ କିଛି ବି ନଥାଏ । ଭିତର ବାହାରର ଭେଦ କେବଳ କଳ୍ପିତ ମାତ୍ର । ସେହିପରି ଏ ଜଗତରେ ଭିତର ବାହାର ସର୍ବତ୍ର ସେହି ଶ୍ରୀହରି ହିଁ ବ୍ୟାପ୍ତ । ଲୋକମାନେ ତାଙ୍କର ମୋହିନୀ ମାୟାର ଫାନ୍ଦରେ ପଡ଼ି ଜଗତକୁ ଶ୍ରୀହରିଙ୍କଠାରୁ ଭିନ୍ନ ଦେଖନ୍ତି । ଯିଏ ମାୟାର ସ୍ୱରୂପକୁ ଉତ୍ତମରୂପେ ଜାଣନ୍ତି, ସେ ମାୟାଧୀଶଙ୍କୁ ବି ଜାଣିପାରନ୍ତି ; ସଂସାରରେ ଦେଶ, କାଳ ତଥା କାର୍ଯ୍ୟକାରଣ ଭାବର କଳ୍ପନା ମାୟାରୁ ହିଁ ହୋଇଥାଏ । ଶୁଦ୍ଧ ବ୍ରହ୍ମରେ ତ ଦେଶ, କାଳ କିମ୍ବା କାର୍ଯ୍ୟ କାରଣ କିଛି ନାହିଁ । ବ୍ରହ୍ମରେ ତ କେବଳ ଆନନ୍ଦ ହିଁ ଭରି ରହିଛି । ନିରାନନ୍ଦର ସୃଷ୍ଟି ତ ଏହି ମାୟା ହିଁ କରିଥାଏ । ଏହି ଠକିଣୀ ମାୟାକୁ ଯିଏ ଭଲଭାବେ ଜାଣିଯାଏ, ତା ପାଖକୁ ସେ ଲାଜରେ ଆସେ ନାହିଁ । ତା ପାଖରେ ସେ ମୁହଁ ଦେଖାଇ ପାରେ ନାହିଁ । ସେ ପଳାଇଯାଇ ଘରେ ଆତ୍ମଗୋପନ କରେ ।

ସୂତ କହିଲେ—''ମୁନିଗଣ ! ମହାମୁନି ଯେତେବେଳେ ପ୍ରଳୟ ସାଗରରେ ବାଳମୁକୁନ୍ଦ ଭଗବାନଙ୍କୁ ବଟପତ୍ର ଉପରେ ଦର୍ଶନ କଲେ, ସେତେବେଳେ ସେ ତାଙ୍କୁ କିଛି ପଚାରିବା ପାଇଁ ତାଙ୍କ ନିକଟକୁ ଗଲେ । ସେ କିଛି ପଚାରିବାକୁ ଚାହୁଁଥିବା ସମୟରେ ସେହି ବାଳକ ଏକ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ । ନିଃଶ୍ୱାସ ଛାଡ଼ି ଯେତେବେଳେ ସେ ପ୍ରଶ୍ୱାସ ନିଅନ୍ତି, ସେତେବେଳେ ମାର୍କଣ୍ଡେୟ ମୁନି ମଶା ସଦୃଶ ତାଙ୍କ ନାସିକାଦ୍ୱାର ଦେଇ ତାଙ୍କ ଉଦର ମଧ୍ୟକୁ ଚାଲିଗଲେ ।

''ମୁନିଙ୍କର ସ୍ମୃତି ନଷ୍ଟ ହୋଇ ନଥିଲା । ତାଙ୍କର ସମସ୍ତ ଜ୍ଞାନ ଥିଲା । ପ୍ରଳୟକାଳୀନ ଏକାର୍ଣ୍ଣବ ସଲିଳରେ ଅନେକ ଦିନ ଭାସି ଭାସି ତାଙ୍କର ମଧ୍ୟ ସେ ସମସ୍ତ ବୋଧ ରହିଥିଲା । ଏବେ ନାସିକାଦ୍ୱାର ଦେଇ ଏହି ମନୋହର ବାଳକର ଉଦର ମଧ୍ୟକୁ ପ୍ରବେଶ କରିବା ଘଟଣା ତାଙ୍କୁ ବି ଜ୍ଞାତ ଥିଲା । ସେ ଭିତରକୁ ଯାଇ ଯାହାସବୁ ଦେଖିଲେ, ସେଥିରେ ସେ ଅତ୍ୟନ୍ତ ବିସ୍ମିତ ହୋଇଗଲେ । ପ୍ରଳୟ ପୂର୍ବରୁ ଯେପରି ସେ ସଂସାରକୁ ବାହାରେ ଦର୍ଶନ କରିଥିଲେ, ଠିକ୍ ସେହିପରି ସଂସାର ସେ ଶିଶୁର ଉଦର ମଧ୍ୟରେ ଥାଇ ଦର୍ଶନ କଲେ । ସେ ଦେଖିଲେ ଆକାଶ, ପବନ, ସୂର୍ଯ୍ୟ, ଚନ୍ଦ୍ର, ଜଳଭରା ସମୁଦ୍ର ଓ ଅଗ୍ନି ଆଦି ସେହିପରି ବିଦ୍ୟମାନ । ଶସ୍ୟଶାମଳା ଓ ଅନୁର୍ବର ଭୂମି ପୂର୍ବଭଳି ସେହିପରି ରହିଛି । ପୁର ପଲ୍ଲୀ, ନଗର, ବଜ୍ର, ଘୋଷ ଓ ଅରଣ୍ୟ ଆଦି ପୂର୍ବଭଳି ବିଦ୍ୟମାନ । ସ୍ୱର୍ଗ, ଗ୍ରହ, ନକ୍ଷତ୍ର, ତାରାଗଣ, ପର୍ବତ, ସାଗର, ଦ୍ୱୀପ, ବର୍ଷ, ଦିଗ, ବିଦିଗ, ଦେଶ, ପୁର, ପତ୍ତନ, ଆଶ୍ରମ, ବର୍ଣ୍ଣ, ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ସରୀସୃପ, ଯକ୍ଷ, ବ୍ୟାପାର, ଶାସନ, ନୀତି, ସେବା, ଶବ୍ଦ, ରୂପ, ରସ,

ଗନ୍ଧ, ସ୍ୱର୍ଣ୍ଣ ଏପରିକି ସଂସାରରେ ଯେତେ ଯାହା ରହିବା କଥା, ସେ ସମସ୍ତ ସେହି ବାଳକର ଉଦରରେ ଅବସ୍ଥିତ । ପଞ୍ଚଭୂତ ତଥା ଭୂତରେ ନିର୍ମିତ ଭୌତିକ ପଦାର୍ଥ କ୍ଷଣ, ଲବ, ନିମେଷ, ପଳ, ଘଡ଼ି, ପ୍ରହର, ଦିନ, ରାତି, ପକ୍ଷ, ମାସ, ବର୍ଷ, ଯୁଗ, ମନ୍ୱନ୍ତର ତଥା କଳ୍ପର କଳ୍ପନାରେ ଯୁକ୍ତ କାଳର ବ୍ୟବହାର ସେଠାରେ ହେଉଅଛି । ସେ ଯାହାସବୁ ଦେଖିଲେ, ସେ ସମସ୍ତ ତାଙ୍କୁ ସତ୍ୟ ପ୍ରତୀତ ହେଲା । ସେଥିରେ ଟିକିଏ ହେଲେ ବ୍ୟତିକ୍ରମ ନଥିଲା । ବାଳକର ଉଦର ମଧ୍ୟରେ ସେ ବଡ଼ ବଡ଼ ଶୃଙ୍ଗ ବିଶିଷ୍ଟ ହିମାଳୟ ପର୍ବତମାଳା ଦେଖିବାକୁ ପାଇଲେ, ଯେଉଁଥିରୁ କି ଅସଂଖ୍ୟ ଝରଣା ଝରି ଆସୁଥିଲା ଓ ବହୁତ ନଦୀ ବାହାରିଥିଲା ; ସେହି ନଦୀମାନଙ୍କ ମଧ୍ୟରେ ସେ ପୁଷ୍ପଭଦ୍ରା ନଦୀକୁ ବି ଦେଖିଲେ । ସେହି ନଦୀତଟରେ ଯେଉଁ ଯେଉଁ ମୁନି ନିବାସ କରୁଥିଲେ, ସେମାନଙ୍କୁ ମଧ୍ୟ ସେଠାରେ ଦେଖିଲେ । ସମଗ୍ର ଚରାଚର ବିଶ୍ୱ ସେ ବାଳମୁକୁନ୍ଦ ଭଗବାନଙ୍କ ଉଦର ମଧ୍ୟରେ ଦେଖିବାକୁ ପାଇଲେ । ସେ ଚକିତ ଦୃଷ୍ଟିରେ ଏ ସମସ୍ତ ନିରୀକ୍ଷଣ କରୁଥିବା ସମୟରେ ବାଳମୁକୁନ୍ଦ ନିଃଶ୍ୱାସ ଛାଡ଼ିଲେ । ତାଙ୍କ ନିଃଶ୍ୱାସ ସହିତ ନାସିକାଦ୍ୱାର ଦେଇ ମୁନି ବାହାରକୁ ଚାଲି ଆସିଲେ । ସେ ବାହାରକୁ ଆସି ଦେଖିଲେ ଯେ, ସେହି ପ୍ରଳୟକାଳୀନ ସମୁଦ୍ର ପୂର୍ବପରି ଲହଡ଼ି ମାରୁଛି । ସେ ସମୁଦ୍ର ଜଳରେ ପଡ଼ିଗଲେ । ତାଙ୍କୁ ପୂର୍ବପରି ସେହି ସମୁଦ୍ର ମଧ୍ୟସ୍ଥ ପାହାଡ଼, ତା ଉପରେ ଥିବା କ୍ଷୁଦ୍ର ବଟବୃକ୍ଷ, ବୃକ୍ଷର ପତ୍ରପୁଟରେ ଶୟନ କରିଥିବା ସେହି କୌତୁକିଆ ଶିଶୁ ଦେଖାଗଲା । ଶିଶୁଟି ପୁନଶ୍ଚ ପ୍ରଶ୍ୱାସ ନେବାରୁ ସେ ପୁନଶ୍ଚ ତା ଉଦର ମଧ୍ୟକୁ ନିଃଶ୍ୱାସରେ ଚାଲିଗଲେ । ସେ ଯେତେବେଳେ ଆଉ ଥରେ ନିଃଶ୍ୱାସ ଛାଡ଼ିଲା, ମୁନି ପୁନଶ୍ଚ ବାହାରକୁ ଚାଲିଆସିଲେ । ଏହିପରି ସେ କେତେଥର ଭିତର ବାହାର ହେଲେ । ସପ୍ତମବାର ସେ ବାହାରକୁ ଆସିବାକ୍ଷଣି ସେହି ବାଳକକୁ ଦେଖିଲେ ଯେ, ପ୍ରେମାମୃତମୟୀ ମଧୁର ହସର କଟାକ୍ଷ ଦୃଷ୍ଟିରେ ମୁନିଙ୍କୁ ଚାହିଁଛି । ସେ ଏପରି ପ୍ରେମ ପ୍ରକାଶ କରୁଛି, ସତେ ଯେପରି ମୁନିଙ୍କୁ ପ୍ରେମପାଶରେ ଆବଦ୍ଧ କରି ପକାଇବ । ବାଳକର ସେହି ଅଦ୍ଭୁତ ଛଟା ନିଜ ନୟନଦ୍ୱାରା ହୃଦୟ ମଧ୍ୟରେ ପ୍ରବେଶ କଲା । ସେ ନିଜର ପ୍ରେମାବେଗକୁ ସମ୍ଭାଳି ରଖିବାରେ କ୍ଷମ ହୋଇ ପାରିଲେ ନାହିଁ । ସେ ଧାଇଁ ଯାଇ ଯେତେବେଳେ ଶିଶୁଟିକୁ କୋଳାଗ୍ରତ କରିବାକୁ ଚାହିଁଲେ ତଥା ଦୃଢ଼ ଆଲିଙ୍ଗନ କରିବାକୁ ଅଗ୍ରସର ହେଲେ, ସେତେବେଳେ ସେଠାରେ ସେହି ବାଳକ ନଥିଲା, ପାହାଡ଼ ନଥିଲା କିମ୍ବା ବଟବୃକ୍ଷ ବି ନ ଥିଲା । ସେହିଠାରେ ସମ୍ପୂର୍ଣ୍ଣ ଲୀଳାର ପରିସମାପ୍ତି ଘଟିଲା । ଅତି କ୍ଷୁଧାର୍ତ୍ତବ୍ୟକ୍ତି ସମ୍ମୁଖରେ ପରିବେଷଣ କରାଯାଇଥିବା ଅନ୍ନଥାଳିକୁ କେହି ଉଠାଇ ନେଇଗଲେ ତାହାର ଅବସ୍ଥା ଯେପରି ହୁଏ, କୌଣସି ଦରିଦ୍ର ଲୋକକୁ ବହୁ ଧନ ପ୍ରଦାନ କରିବାକ୍ଷଣି ତାହା ପୁନଶ୍ଚ ନେଇଯିବାଦ୍ୱାରା ତାହାର ଅବସ୍ଥା ଯେପରି ହୁଏ, କୌଣସି କାମାତୁରା ସ୍ତ୍ରୀ ସମ୍ମୁଖରେ ତାହାର ପତିକୁ ନେଇଯିବାଦ୍ୱାରା ତାହାର ଅବସ୍ଥା ଯେପରି ହୁଏ, କୌଣସି ତୃଷାର୍ତ୍ତ ବ୍ୟକ୍ତି ନିକଟରେ ସୁନ୍ଦର ଶୀତଳ ଜଳ ଦେଖାଇ ତାହା ନେଇଗଲେ ତାହାର ଅବସ୍ଥା ଯେପରି ହୁଏ, ମହାମୁନି ମାର୍କଣ୍ଡେୟଙ୍କ ଦଶା ସେତେବେଳେ ଠିକ୍ ସେହିପରି ଥିଲା । ସେ ନିଜ ସମ୍ମୁଖରେ ବଟପତ୍ର ପୁଟଶାୟୀ ଶ୍ୟାମବର୍ଣ୍ଣ ଶିଶୁକୁ ନ ଦେଖି ତାଙ୍କ ମୁଣ୍ଡ ଘୂରିଗଲା । ସେ ଏଣେ ତେଣେ ତାଙ୍କୁ ଖୋଜିବାକୁ ଦୃଷ୍ଟି ଫେରାଇଲେ । ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ଯେ, ଏବେ ତାଙ୍କ ସମ୍ମୁଖରେ ପ୍ରଳୟକାଳୀନ ସମୁଦ୍ର ନାହିଁ କିମ୍ବା ସମୁଦ୍ର ମଧ୍ୟସ୍ଥ ପାହାଡ଼ ଉପରେ ସେହି ବଟପତ୍ର ପୁଟରେ ଶୟନ କରୁଥିବା ବାଳକ ନାହିଁ । ମୁନିବର ମାର୍କଣ୍ଡେୟ ପୂର୍ବପରି ନିଜ ଆଶ୍ରମ ସମ୍ମୁଖସ୍ଥ ପୁଷ୍ପଭଦ୍ରା ନଦୀତଟରେ ବସି ସନ୍ଧ୍ୟା କରୁଛନ୍ତି । ପ୍ରଳୟଦୃଶ୍ୟ ଦେଖିବା ପୂର୍ବରୁ ସେ ପୁଷ୍ପ ସହିତ ଯେଉଁ ଅର୍ଘ୍ୟ ଦେଉଥିଲେ, ସେହି ଅର୍ଘ୍ୟ, ପୁଷ୍ପ ପୁଷ୍ପଭଦ୍ରା ନଦୀରେ ମଳାମଳା ହୋଇ ଭାସୁଥାଏ ।

କେତେବେଳେ ଏ ମଧ୍ୟରେ ସାତଥର ପ୍ରଳୟ ହୋଇଗଲାଣି, କୋଟି କୋଟି ବର୍ଷ ବିତିଗଲାଣି କିନ୍ତୁ ତାଙ୍କୁ ଏବେ ଜଣା ପଡୁଛି, ଏକ କ୍ଷଣ ବି ଏପର୍ଯ୍ୟନ୍ତ ବିତି ନାହିଁ । ସେ ସେଠାରୁ ଉଠି ସଙ୍ଗେ ସଙ୍ଗେ ନିଜ ଆଶ୍ରମକୁ ଚାଲିଗଲେ । ଆଶ୍ରମସ୍ଥିତ ମୁନିଗଣ ତାଙ୍କୁ ପଚାରିଲେ—''ବ୍ରହ୍ମନ୍ ! ଆଜି ଆପଣ ଏତେ ଶୀଘ୍ର କିପରି ନଦୀ ତଟରୁ ଫେରି ଆସିଲେ, ପ୍ରତ୍ୟହ ତ ବହୁତ ସମୟ ସେଠାରେ ବିତାଇ ଫେରନ୍ତି, ଆଜି କ'ଣ ଆପଣ ସାୟଂକାଳୀନ ଜପ ତପ କଲେ ନାହିଁ ?''

ସୂତ କହିଲେ, ''ମୁନିଗଣ ! ନିଜ ଆଶ୍ରମର ଋଷିଗଣଙ୍କ ମୁଖରୁ ଏ ପ୍ରକାର ପ୍ରଶ୍ନ ଶୁଣି ମାର୍କଣ୍ଡେୟ ଆହୁରି ଅଧିକ ବିସ୍ମୟ ହେଲେ । ଏବେ ସେ ବୁଝି ପାରିଲେ, ଏ ସମସ୍ତ ଶ୍ରୀମନ୍ନାରାୟଣଙ୍କର ସୃଷ୍ଟ ଯୋଗମାୟାଙ୍କର ବୈଭବ । ଏହା ହିଁ ଭଗବାନଙ୍କର ଦୈବୀମାୟା । ମୁଁ ଭଗବାନଙ୍କର ମାୟା ଦର୍ଶନ କରିବାକୁ ଯେଉଁ ଇଚ୍ଛା କରିଥିଲି, ସେ ମୋ ଉପରେ କୃପାକରି ତାହା ପୂର୍ଣ୍ଣ କରାଇଲେ । ମୁଁ ଏବେ ସେହି ମାୟାଧୀଶଙ୍କର ଶରଣ ନେବାକୁ ଯାଉଛି । ସେହି ହିଁ ମୋତେ ରକ୍ଷା କରିବେ । ସେ ମୋତେ ତାଙ୍କ ପାଦପଦ୍ମରେ ଆଶ୍ରୟ ଦେବେ । ''ହେ ପ୍ରଭୋ ! ଆପଣଙ୍କର ମାୟା ଅପରମ୍ପାର, ବ୍ରହ୍ମାଦି ଦେବତାଗଣ ମଧ୍ୟ ଆପଣଙ୍କ ମାୟାରେ ମୋହିତ ହୋଇ ଯାଆନ୍ତି । କାରଣ ଏହି ମାୟା ସର୍ବଥା ସତ୍ୟଭଳି ପ୍ରତୀତ ହୁଏ । କେହିହେଲେ ଏହି ଭ୍ରମର ଭେଦ ପାଇପାରନ୍ତି ନାହିଁ । କିନ୍ତୁ ଯେଉଁମାନେ ଶରଣାଗତ, ଯେଉଁମାନେ କେବଳ ଆପଣଙ୍କୁ ଏକମାତ୍ର ଆଶ୍ରୟ ମନେକରି ଆପଣଙ୍କ ଚରଣରେ ଶରଣ ନିଅନ୍ତି, ଏହି ମାୟା ସେମାନଙ୍କର କିଛି କ୍ଷତି କରିପାରେ ନାହିଁ । କାରଣ ଆପଣଙ୍କର ନାମ ''ଶରଣାଗତ ପ୍ରତିପାଳକ'' । ଯେଉଁମାନେ ସବୁକିଛି ଛାଡ଼ି ଏକମାତ୍ର ଆପଣଙ୍କ ପାଦପଦ୍ମରେ ଶରଣ ପଶନ୍ତି, ସେମାନଙ୍କ ପ୍ରତିପାଳନ ପାଇଁ ଆପଣ ସର୍ବଦା ବ୍ୟସ୍ତ ରହନ୍ତି । ସେମାନଙ୍କ ଦୁଃଖ ଦୂର କରିବା ପାଇଁ ତ ଆପଣ ବାଧ୍ୟ ହୁଅନ୍ତି । ଆପଣଙ୍କ ଯୁଗଳ ମୃଦୁଳ ପାଦପଦ୍ମରେ ଶରଣାଗତଙ୍କୁ ସର୍ବଦା ଆଶ୍ରୟ ମିଳିଥାଏ । ତେଣୁ ମୁଁ ସେହି ପାଦପଦ୍ମରେ ଶରଣ ପଶୁଛି । ହେ ହରି ! ମୋତେ ଆପଣ ରକ୍ଷା କରନ୍ତୁ । ମୁନିବର ମାର୍କଣ୍ଡେୟ ମନ ମଧ୍ୟରେ ଏହିପରି ଭାବରେ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ । ଭଗବାନ ନାରାୟଣଙ୍କ କୃପାରୁ ହିଁ ମୁନି ମାୟା ଦର୍ଶନ କରିଥିଲେ । ସେ ଭଗବାନଙ୍କଠାରୁ ଏହି ବର ପାଇଥିଲେ । ମୁନିଙ୍କ ଉପରେ ଭଗବାନ ଯେପରି କୃପା କଲେ, ସେହିପରି ସଦାଶିବ ଭୋଳାନାଥ ପାର୍ବତୀପତି ହର ମଧ୍ୟ କୃପା କରିଥିଲେ । ମାୟାଦର୍ଶନ ପରେ ସେ ପାର୍ବତୀଙ୍କ ସହିତ ବୃଷଭଧ୍ୱଜ ଭଗବାନ୍ ଶଙ୍କରଙ୍କୁ ମଧ୍ୟ ଦର୍ଶନ କରିଥିଲେ । ଭଗବାନ୍ ଘନଶ୍ୟାମଙ୍କର ଯାହାଙ୍କ ପ୍ରତି କୃପା ହୁଏ, ସମସ୍ତ ଦେବଦେବୀ ତାଙ୍କ ଉପରେ କୃପା କରନ୍ତି । ସମସ୍ତେ ତାଙ୍କ ଉପରେ ଅନୁଗ୍ରହ ବୃଷ୍ଟି କରନ୍ତି ।''

ଏହା ଶୁଣି ଶୌନକ ପଚାରିଲେ—''ହେ ସୂତ ! ଆମର ବଂଶଜ ମହାମୁନି ମାର୍କଣ୍ଡେୟଙ୍କ ଉପରେ ଭଗବାନ୍ ମହାଦେବ କିପରି କୃପା କଲେ ? ପାର୍ବତୀଙ୍କ ସହିତ ପରମେଶ୍ୱର କିପରି ତାଙ୍କୁ ଦର୍ଶନ ଦେଲେ ? ଆପଣ କୃପାକରି ଏହି ପୁଣ୍ୟପ୍ରସଙ୍ଗକୁ ଆମ୍ଭମାନଙ୍କୁ ଶୁଣାନ୍ତୁ । ଏହା ପରମ ହିତକର, ଏହା ଶ୍ରବଣ କରିବାଦ୍ୱାରା ମାୟାଜନିତ ସଂସାରର ନିବୃତ୍ତି ହୋଇଥାଏ । ଭଗବାନ୍ ବାସୁଦେବଙ୍କ ଚରଣରେ ଅନୁରାଗ ଜାତ ହୁଏ ।''

ସୂତ କହିଲେ—''ଆଚ୍ଛା ଠିକ୍ ଅଛି, ମହାରାଜ ! ଭଗବାନ ଶଙ୍କର ମାର୍କଣ୍ଡେୟ ମୁନିଙ୍କ ଉପରେ କିପରି କୃପା କରିଥିଲେ, ଏବେ ମୁଁ ସେହି ପୁଣ୍ୟପ୍ରସଙ୍ଗ ଶୁଣାଉଅଛି । ଆପଣମାନେ ସମାହିତ ଚିତ୍ତରେ ତାହା ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ପ୍ରଳୟ ସଲିଳ ନହିଁ ରହୋ। ପୂର୍ବବତ ଜଗତ ଲଖାୟୌ ।
ମାୟା ଦରଶନ ସମୁଝି ଶ୍ୟାମ ଚରନନି ସିର ନାୟୌ ।।
ଅକ୍ଷୟବଟ ପୁଟ ପତ୍ର କରେଁ କ୍ରୀଡ଼ା ଶିଶୁ କେ ସମ ।
ଉଦର ମାଁ-ହିଁ ସବ ଦୃଶ୍ୟ ହୋହିଁ ମାୟାତେ ଜଗଭ୍ରମ ।।
ମାୟା ଲଖୀ ମହେଶ ଜୀ, ଭୟେ ଫେରି ମୁନି ଭ୍ରମ ରହିତ ।
ତବ ବୃଷ ଚଢ଼ି ଶଙ୍କର ତହାଁ, ଆୟେ ପାରବତୀ ସହିତ ।।



# ମାର୍କଣ୍ଡେୟ ମୁନିଙ୍କ ଉପରେ କପର୍ଦ୍ଦୀଙ୍କର କୃପା

**ତମେବଂ ନିଭୃତାତ୍ମାନଂ ବୃଷେଣ ଦିବି ପର୍ଯ୍ୟଟନ୍ ।**
**ରୁଦ୍ରାଣ୍ୟା ଭଗବାନ୍ ରୁଦ୍ରୋ ଦଦର୍ଶ ସ୍ୱଗଣୈର୍ବୃତଃ ।। ☆**

(ଶ୍ରୀ ଭା: ୧୨ସ୍କ: ୧୦ଅ: ୩ଶ୍ଳୋକ)

ଷଟ୍‌ପଦୀ

ଶିବା କହେଂ—"ପରମେସ ! ଭକ୍ତ ମୁନି କୁଁ ବର ଦେବୈଂ ।
ଶିବ ବୋଲେ—"ୟେ ଭକ୍ତ ମୋକ୍ଷ ତକ କୁଁ ନହିଁ ଲେବୈଂ ।।
ହରି ହିୟ ଧାରେ ଇନନି ଫେରି କା ଇନିକୁଁ ଦୁଙ୍ଗୋ ।
ସାଧୁ ସମାଗମ ଲୋଭ ବାତ କଛୁ ସୁଖଦ କରୁଙ୍ଗୋ ।।
ମୁନି ଧାବୈଂ ପରବେଶ କୁଁ, ଇଷ୍ଟ ନହୀଂ ଜବ ହିୟ ଲଖେ ।
ଖୋଲି ନୟନ ସମ୍ମୁଖ ତବହିଁ, ଶିବା ସହିତ ଶଂକର ଦିଖେ ।।

ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଭକ୍ତକୁ ହିଁ ବଡ଼ ବୋଲି କୁହାଯାଇଛି । କାରଣ ଭଗବାନ୍ ଭକ୍ତଠାରୁ କିଛି ଚାହାନ୍ତି । ଭଗବାନ୍ ଚାହାନ୍ତି, ଭକ୍ତ ନିଜର ତନ, ମନ, ଧନ ତଥା ଅନ୍ୟ ସମସ୍ତ ବସ୍ତୁ ମୋତେ ସମର୍ପଣ କରିଦେଉ । ମାତା, ପିତା, ଭାଇ, ବନ୍ଧୁ, କୁଟୁମ୍ବ,

---

☆ ଜଗତ ବାସୁଦେବ ଜାଣି । ସର୍ବେ ଏକତ୍ୱ ପରିମାଣି ।।
ଏମନ୍ତ ସମୟେ ମହେଶ । ପାର୍ବତୀ ଶିବଗଣ ଶିଷ୍ୟ ।।
ଏମାନେ ବେଷ୍ଟିତ ହୋଇଣ । କରି ବୃଷଭ ଆରୋହଣ ।।
କୈଳାସ ପର୍ବତରୁ ଖସି । ହିମବନ୍ତ ଉତ୍ତରେ ଆସି ।।
ପୁଷ୍ପଭଦ୍ରା ନଦୀ ତଟରେ । ମାର୍କଣ୍ଡ ଆଶ୍ରମେ ମିଳିଲେ।।
ମାର୍କଣ୍ଡେୟଙ୍କୁ ସେ ଦେଖିଲେ । ପାର୍ବତୀ .........

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୦ମଅ.)

ପରିବାର ସମସ୍ତଙ୍କ ମମତା ତୁଟାଇ ମୋ ସହିତ ସମ୍ବନ୍ଧ ସ୍ଥାପନ କରୁ । ସମର୍ପଣରେ ଯଦି ଟିକିଏ ହେଲେ ତ୍ରୁଟି ରହିଯାଏ, ତାହାହେଲେ ଭଗବାନ୍‌ଙ୍କ ମୁଣ୍ଡ ଘୂରିଯାଏ । ଦାନବରାଜ ବାଳୀଙ୍କୁ ବାନ୍ଧିବା ସମୟରେ ବ୍ରହ୍ମାଙ୍କୁ ଭଗବାନ୍ ସ୍ପଷ୍ଟ ଭାବରେ କହି ଦେଇଥିଲେ—''ବ୍ରହ୍ମନ୍ ! ମୁଁ ଯାହା ଉପରେ କୃପା କରେ, ତାହାର ସମସ୍ତ ଧନ ଅପହରଣ କରିନିଏ । କାରଣ ଧନମଦରେ ଉନ୍ମତ୍ତ ହୋଇ ପୁରୁଷ ମୋର ତଥା ପୁଣ୍ୟଶ୍ଳୋକଙ୍କର ତିରସ୍କାର କରିବାକୁ ଲାଗେ ।'' ଭଗବାନ୍ ଜଣେ ପକ୍କା ବେପାରୀ, ଯେ ପର୍ଯ୍ୟନ୍ତ ଦୁଇ ଆଙ୍ଗୁଳିର ବି ତ୍ରୁଟି ଥାଏ, ସେ ପର୍ଯ୍ୟନ୍ତ ସେ ବନ୍ଧରେ ପକାନ୍ତି ନାହିଁ । ସେ କହନ୍ତି—''ଦେଖ ଭାଇ ! ମୋତେ ଛନ୍ଦ କପଟ ଭଲଲାଗେ ନାହିଁ, ମୋତେ ତ ନିର୍ମଳ ମନ ବିଶିଷ୍ଟ ପୁରୁଷ ଭଲ ଲାଗନ୍ତି । ମୁଁ ଯାହା ଉପରେ କୃପା କରେ, ସର୍ବପ୍ରଥମେ ତାହାର ସର୍ବସ୍ୱ ଅପହରଣ କରେ ।''

ଭଗବାନ୍ ଏହି ପ୍ରକାର ଭକ୍ତର ସର୍ବସ୍ୱ ଚାହାନ୍ତି, କିନ୍ତୁ ଭକ୍ତ ଭଗବାନଙ୍କଠାରୁ କିଛି ହେଲେ ଚାହେଁ ନାହିଁ । ଯିଏ ଭଗବାନଙ୍କଠାରୁ ଯେତେ ଅଧିକ ପାଇବା ପାଇଁ ଆଶା କରେ, ତାହାର ଭକ୍ତିରେ ସେତେ ଅଧିକ ତ୍ରୁଟି ରହିଥାଏ । ଭଗବାନ୍ ପ୍ରହ୍ଲାଦ ଉପରେ ପ୍ରସନ୍ନ ହୋଇଥିଲେ ଓ ତାଙ୍କୁ ବର ମାଗିବାକୁ କହିଥିଲେ । ସେ ମନା କରି କହିଥିଲେ—''ପ୍ରଭୋ ! କୃପାକରି ମୋତେ କୌଣସି ବର ମାଗିବାକୁ କହନ୍ତୁନାହିଁ । ମୋର କୌଣସି ବର ଆବଶ୍ୟକ ନାହିଁ ।'' ଭଗବାନ୍ ନୀରବ ରହିଲେ । ସେ ଶେଷକୁ ଅତି ବିନୀତ ଭାବରେ କହିଲେ—''ବାବୁ ! କିଛି ହେଲେ ମାଗିନିଅ । ନିଜ ପାଇଁ ନହେଲେ ନାହିଁ, ମୋ ପ୍ରତି କୃପାକର । ତୁମେ କିଛି ମାଗିନେଲେ ତ ମୋର ମନ ସନ୍ତୋଷ ହେବ ।''

ଭଗବାନଙ୍କର ମନ ଅସ୍ଥିର ହେଉଥିଲା ଯେ, ମୁଁ ଯେଉଁଠାକୁ ଯାଉଛି ସେଠାରେ ହାତ ପ୍ରସାରି ଦେଉଛି, ଯଦି ଭକ୍ତ ମୋତେ କିଛି ନମାଗେ, ତାହାହେଲେ ମୋର ଆଖି ସଦା ନିମ୍ନମୁଖୀ ହେବ । ମାଗନ୍ତାଙ୍କର ଆଖି ଉପରକୁ ଉଠିପାରେ ନାହିଁ । ହଁ ବଦଳରେ ସେ ଯଦି କିଛିହେଲେ ମାଗିନିଏ, ତାହାହେଲେ ଉଭୟପକ୍ଷ ସମାନ ହୋଇଯାଆନ୍ତି । ଭଗବାନ୍ ଯୋରଦେଇ ଏହା କହିବାକୁ ଚାହୁଁଥିଲେ ଯେ, ପ୍ରହ୍ଲାଦ କିଛି ନା କିଛି ମାଗି ନେଉ । ଏଥିପାଇଁ ସେ ବାରମ୍ବାର ତାଙ୍କୁ ବର ମାଗିବାକୁ ଆଗ୍ରହ ପ୍ରକାଶ କରି କହିଥିଲେ ।''

ଭଗବାନ୍ ଯେତେବେଳେ ତାଙ୍କୁ ଅତି ବାଧ କଲେ, ସେତେବେଳେ ପ୍ରଥମେ ପ୍ରହ୍ଲାଦ ଏକ ମଧୁର ସମୁଚିତ ଜବାବ ଦେଲେ । ସେ କହିଲେ—''କ'ଣ ମହାରାଜ ! ଆପଣ ମୋତେ ତ ବର ମାଗିବାପାଇଁ ବାରମ୍ବାର କହୁଛନ୍ତି, ତେଣୁ ମୁଁ ଭାବୁଛି ଆପଣ ମୋତେ ବଣିଆ ବୋଲି ମନେକରୁଛନ୍ତି । ଏହା ତ ମୂଳଚାଲ ଭାବ । ସଉଦା ନେବାଲୋକ ସର୍ବଦା କ୍ଷତିଗ୍ରସ୍ତ ହୁଏ । କାରଣ ଯିଏ ବିକ୍ରି କରେ, ସେ ଟଙ୍କାକର ବସ୍ତୁକୁ ଟଙ୍କାଏ ଚାରଣାରେ ବିକ୍ରୟ କରେ । ଟଙ୍କାକରୁ ଚାରିଅଣା କମ୍ କରି ନିଏ ନାହିଁ । ଭକ୍ତି ବଦଳରେ ଯିଏ ଆପଣଙ୍କଠାରେ କାମନା ପୂର୍ଣ୍ଣକରିବାର ଇଚ୍ଛା ରଖେ, ସିଏ ତ ସେବକ ନୁହେଁ, ପୂରା ବେପାରୀ ।''

ଭଗବାନ୍ ଏ କଥାରେ ବିସ୍ମିତ ହୋଇଗଲେ ଓ କହିଲେ—''ଆରେ ଭାଇ ! ଏପରି କଥା ନୁହେଁ । ମୋଠାରୁ ତୁମେ କିଛି ନା କିଛି ଅବଶ୍ୟ ମାଗି ନେବାକୁ ହେବ । ମୁଁ ଏବେ ଦ୍ୱନ୍ଦ୍ୱରେ ପଡ଼ିଛି । କିଛି ଦେବାପାଇଁ ମୁଁ ବ୍ୟାକୁଳ ହେଉଛି ।''

ପ୍ରହ୍ଲାଦ କହିଲେ—''ଆଚ୍ଛା, ଆପଣ ଯଦି ମୋତେ ଏତେ ବାଧ୍ୟ [illegible] ତାହାହେଲେ ମୋତେ ଏହି ବର ପ୍ରଦାନ କରନ୍ତୁ ଯେ, ମୋ ମନରେ [illegible] ବସ୍ତୁ ମାଗିବାର କାମନା ଯେପରି ନହୁଏ ।''

ଭଗବାନ୍ ନୃସିଂହ ନିଜର ବଡ଼ ବଡ଼ ତୀକ୍ଷ୍ଣ ନଖବିଶିଷ୍ଟ [illegible]

ଆଘାତ କଲେ, ସେ ମନେ କଲେ, 'ଇଏ ତ ମୋର ଏକ ବାବାଗୁରୁ । ଇଏ ତ ମୂଳକୁ କାଟି ଦେଉଛି ।' ଭଗବାନ୍ ନୃସିଂହଙ୍କର ଆଖି ଏଥିରେ ନିମ୍ନାଭିମୁଖୀ ହୋଇଗଲା । ଏଥିପାଇଁ ଭଗବାନ୍ ଭକ୍ତଙ୍କ ସମ୍ମୁଖକୁ କେବେହେଲେ ଆସନ୍ତି ନାହିଁ । ସମ୍ମୁଖକୁ ଆସିବାକୁ ସେ ଲାଜ କରନ୍ତି । ଭକ୍ତଙ୍କଠାରେ ଋଣୀ ହୋଇଥିବାରୁ ସେ ଭକ୍ତଙ୍କ ଆଖିରେ ଆଖି ମିଳାଇ ପାରନ୍ତି ନାହିଁ । ଚୁପ୍ ଚାପ୍ ହୋଇ ସେ ଭକ୍ତଙ୍କ ପଛେ ପଛେ ଚାଲନ୍ତି । ଭକ୍ତଙ୍କର ଚରଣଧୂଳିକୁ ନିଜର କୁଞ୍ଚିତ କଳାକଳା କେଶବିଶିଷ୍ଟ ମସ୍ତକରେ ଧାରଣ କରନ୍ତି । ଯେପରି ଭକ୍ତ ଭଗବାନଙ୍କୁ ନିଜର ଇଷ୍ଟ ବୋଲି ମାନେ, ସେହିପରି ଭଗବାନ୍ ମଧ୍ୟ ଭକ୍ତଙ୍କୁ ନିଜର ଇଷ୍ଟ ବୋଲି ମନେ କରନ୍ତି । ତାଙ୍କ କାର୍ଯ୍ୟକରି ପ୍ରସନ୍ନ ହୁଅନ୍ତି । ତାଙ୍କର ଛୋଟରୁ ଅତି ଛୋଟ ସେବା ବି ସହର୍ଷ ବଦନରେ କରିଥାଆନ୍ତି । ଏଥିପାଇଁ କୁହାଯାଏ—''ରାମ୍ ସେ ବଡ଼ା ରାମ୍‌କା ଦାସ ହୈ ।''

ସୂତ କହିଲେ—''ମୁନିଗଣ ! ମହାମୁନି ମାର୍କଣ୍ଡେୟ ମାୟା ଦର୍ଶନ କରିବାପରେ ତାଙ୍କ ମନ ଶାନ୍ତ ହୋଇଗଲା । ଆଉ ତାଙ୍କ ମନରେ କୌଣସି ଇଚ୍ଛା ରହିଲା ନାହିଁ । ସେ ନିଜ ଆଶ୍ରମରେ ଏକାଗ୍ର ଚିତ୍ତରେ ବସିଥିଲେ । ସେହି ସମୟରେ ନିଜର ଗଣପରିବେଷ୍ଟିତ ହୋଇ ନନ୍ଦୀ ନାମକ ବୃଷଭ ଉପରେ ବସି ପାର୍ବତୀଙ୍କ ସହିତ ଭଗବାନ୍ ସଦାଶିବ ସେଠାରେ ଆସି ପହଞ୍ଚିଲେ । ସନ୍ଧ୍ୟା ସମୟରେ ଭଗବାନ୍ ଶିବ ସମସ୍ତ ପ୍ରାଣୀଙ୍କୁ ଦେଖିବା ପାଇଁ ନିଜର ଭୂତପ୍ରେତାଦିଗଣଙ୍କ ସହିତ ତିନିଲୋକରେ ଭ୍ରମଣ କରନ୍ତି । ଦୟାମୟୀ ମା ପାର୍ବତୀ ପ୍ରାଣୀମାନଙ୍କର ଦୁଃଖ ଦେଖି ନିଜର ପ୍ରାଣନାଥଙ୍କୁ ସେମାନଙ୍କର ଦୁଃଖ ଦୂର କରିବାକୁ ପ୍ରାର୍ଥନା କରନ୍ତି । ଅମାପ ଦାନୀ ଆଶୁତୋଷ ନିଜ ପ୍ରିୟାଙ୍କର ଆଗ୍ରହକୁ ଭାଙ୍ଗନ୍ତି ନାହିଁ । ତେଣୁ ସେ ସମୟ ସମୟରେ ଅଯୋଗ୍ୟଙ୍କୁ ବି ବିପୁଳ ସମ୍ପତ୍ତି ପ୍ରଦାନ କରନ୍ତି । ଏହିପରି ଅନେକ ଘଟଣା ଘଟିଛି ଯେଉଁଥିରେ କି ପାର୍ବତୀଙ୍କର ଅନୁରୋଧରେ ଶିବଙ୍କର ଅନିଚ୍ଛା ସତ୍ତ୍ୱେ ବି ଦୁଃଖୀଙ୍କର ଦୁଃଖ ଦୂର ହୋଇଯାଇଛି । ଭକ୍ତଙ୍କ ଉପରେ ମଧ୍ୟ କୃପା କରିବା ପାଇଁ ଦୟାମୟୀ ମା ଭଗବତୀ ଗୌରୀ ଶିବଙ୍କୁ ପ୍ରେରଣା ଦିଅନ୍ତି । ଏଥିପାଇଁ ଭକ୍ତଗଣ ଶଙ୍କରଙ୍କୁ ପୂଜା ଉପାସନା କରିବା ପୂର୍ବରୁ ଭଗବତୀ ଗୌରୀଙ୍କର ନାମ ଜପ କରିଥାଆନ୍ତି । ପ୍ରଥମେ ମାତା ଓ ପରେ ପିତା । ମାତାଙ୍କର ହୃଦୟ ହିଁ ଅତ୍ୟନ୍ତ ମମତାପୂର୍ଣ୍ଣ ।

ମହାମୁନି ମାର୍କଣ୍ଡେୟ ଶାନ୍ତଭାବରେ ଆସନରେ ବସି ଭଗବାନଙ୍କୁ ଧ୍ୟାନ କରୁଥିଲେ, ସେହି ସମୟରେ ସ୍ୱର୍ଗରୁ ଶିବ-ପାର୍ବତୀ ଆସି ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ମା ପାର୍ବତୀଙ୍କର ଦୃଷ୍ଟି ପ୍ରଥମେ ମୁନିଙ୍କ ଉପରେ ପଡ଼ିଲା । ମୁନି ଶାନ୍ତ ଗମ୍ଭୀର ଭାବରେ ଧ୍ୟାନରେ ବସିଥିବାର ଦେଖି ପାର୍ବତୀ ଶିବଙ୍କୁ କହିଲେ—''ପ୍ରଭୋ ! ଆପଣ ଏହି ତପସ୍ୱୀ ମୁନିଙ୍କୁ ଦେଖନ୍ତୁ, ସେ କିପରି ପୁଷ୍ପଭଦ୍ରା ନଦୀ ତଟରେ ବସି ତପସ୍ୟାମଗ୍ନ ଅଛନ୍ତି ।''

ଭଗବାନ୍ ଶଙ୍କର କହିଲେ—''ଏଥିରେ ଏତେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଏହିପରି ବହୁତ ମୁନିଋଷି ତ ତପସ୍ୟା କରୁଛନ୍ତି, ସିଏ ମଧ୍ୟ ତପସ୍ୟା କରୁଛନ୍ତି, ଏଥିରେ ବିଶେଷତ୍ୱ କ'ଣ ଅଛି ?''

ପାର୍ବତୀ କହିଲେ—''ମହାରାଜ ! ଆପଣ ଧ୍ୟାନପୂର୍ବକ ଦେଖନ୍ତୁ, ଏହି ତପସ୍ୱୀଙ୍କର ଚିତ୍ତ କେତେ ଶାନ୍ତ । ପୁଷ୍କରିଣୀରେ ମାଛମାନେ ଯେତେବେଳେ ଏଣେତେଣେ ଡିଆଁଡେଇଁ କରନ୍ତି, ସେତେବେଳେ ଜଳରେ ଚଞ୍ଚଳତା ସୃଷ୍ଟି ହୋଇ ତରଙ୍ଗ ଉଠିବାରେ ଲାଗେ । ଯେତେବେଳେ ମାଛମାନେ ଶାନ୍ତ ହୋଇଯାଆନ୍ତି ଓ ବାୟୁ ସ୍ଥିର ଥାଏ, ସେତେବେଳେ ପୁଷ୍କରିଣୀର ଜଳ ଯେପରି ଶାନ୍ତ ହୋଇଯାଏ, ସେହିପରି ଏହି ବ୍ରାହ୍ମଣଙ୍କ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣ ଉର୍ମିରହିତ ହୋଇଯାଇଛି । ସେ ନିଜର ମନକୁ ଜୟ କରିଅଛନ୍ତି । ମନକୁ ଜୟ କରିବା ସବୁଠାରୁ କଠିନ କାର୍ଯ୍ୟ ।

ଶିବ କହିଲେ—''ତାହାହେଲେ ତୁମର ଅଭିପ୍ରାୟ କ'ଣ ?''

ପାର୍ବତୀ କହିଲେ—''ପ୍ରଭୁ ! ମୁଁ ଏହା ଚାହୁଁଛି, ଆପଣ ସମସ୍ତ କର୍ମର ଫଳଦାତା ହୋଇଥିବାରୁ ଏହି ବ୍ରାହ୍ମଣଙ୍କର ତପସ୍ୟା ଆଡ଼କୁ ମଧ୍ୟ ଦୃଷ୍ଟିପାତ କରନ୍ତୁ ଓ ତାଙ୍କ ତପସ୍ୟାର ପ୍ରତ୍ୟକ୍ଷ ଫଳ ପ୍ରଦାନ କରନ୍ତୁ । ଆପଣ ସମସ୍ତ ସିଦ୍ଧିର ସ୍ୱାମୀ ଅଟନ୍ତି । ଏହାଙ୍କୁ ଆପଣ କିଛି ସିଦ୍ଧି ପ୍ରଦାନ କରନ୍ତୁ ।''

ପାର୍ବତୀଙ୍କ କଥା ଶୁଣି ଭଗବାନ୍ ଶଙ୍କର ହସିଲେ ଓ ହସିହସି କହିଲେ—''ପ୍ରିୟେ ! ଏ ମହାତ୍ମାଙ୍କୁ ମୁଁ ଯଦି କିଛି ଦେଇପାରନ୍ତି, ତାହାହେଲେ କୃତାର୍ଥ ହୋଇଯାଆନ୍ତି ।''

ପାର୍ବତୀ କହିଲେ—''ତାହାହେଲେ ଦେଉ ନାହାନ୍ତି କାହିଁକି ? ତାଙ୍କୁ କିଛି ଦେଇ ଦିଅନ୍ତୁ ।''

ଶିବ ଏ କଥା ଉପରେ ଜୋରଦେଇ କହିଲେ—''କିପରି ଦେବି ? ଯଦି ସେ ନେବେ, ତାହାହେଲେ ସିନା ଦେବି ।''

ପାର୍ବତୀ ପଚାରିଲେ—''ସେ ନେବେ ନାହିଁ କାହିଁକି ? କିଛି ପାଇବା ପାଇଁ ତ ତପସ୍ୟା କରାଯାଏ । ଲୋକ ଇନ୍ଦ୍ରପଦ, ବ୍ରହ୍ମପଦ ତଥା ସ୍ୱର୍ଗୀୟସୁଖ ଲାଭ କରିବା ପାଇଁ ତ ତପସ୍ୟା କରନ୍ତି ।''

ଶିବ କହିଲେ—''ହଁ, ସକାମ ତପ କରୁଥିବା ଲୋକ ଭୋଗ ଇଚ୍ଛାରେ ହିଁ ତପସ୍ୟା କରନ୍ତି, କିନ୍ତୁ ଇଏ ତ ନିଷ୍କାମ ତପସ୍ୱୀ ଅଟନ୍ତି । ଇଏ ସ୍ୱପ୍ନରେ ସୁଦ୍ଧା କେବେହେଲେ ଭୋଗର ଇଚ୍ଛା କରିନାହାନ୍ତି ।''

ପାର୍ବତୀ କହିଲେ—''ଭୋଗ ଇଚ୍ଛା ନ କରୁଥିଲେ ବି ଆପଣ ତ ମୋକ୍ଷଦାତା ଅଟନ୍ତି । ଏବେ ଆପଣ ତାଙ୍କୁ ମୋକ୍ଷ ବର ପ୍ରଦାନ କରନ୍ତୁ ।''

ଶିବ ହସି ହସି କହିଲେ—''ପ୍ରିୟେ ଇଏ ମୋକ୍ଷ ବି ଚାହାନ୍ତି ନାହିଁ ।''

ପାର୍ବତୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—''ମହାରାଜ ! ସେ ମୋକ୍ଷ ଯଦି ଚାହାନ୍ତି ନାହିଁ, ଆଉ କ'ଣ ଚାହାନ୍ତି ? ଧର୍ମ, ଅର୍ଥ ଓ କାମ ଏହି ତିନିଟି ଯଦି ଚ ପୁରୁଷାର୍ଥ, ମୋକ୍ଷଠାରୁ ବଳିତ ପୁରୁଷାର୍ଥ ଆଉ ଅନ୍ୟ କିଛି ନାହିଁ । ଏ ସଂସାରରେ ମୋକ୍ଷ ହିଁ ଅନ୍ତିମ ପୁରୁଷାର୍ଥ ।''

ଶିବ କହିଲେ—''ପ୍ରିୟେ ! ମୋକ୍ଷଠାରୁ ବଳି ଅନ୍ୟ ଏକ ବସ୍ତୁ ବି ଅଛି । ତାହାକୁ ପଞ୍ଚମ ପୁରୁଷାର୍ଥ କୁହାଯାଏ । ତାହା ହିଁ ପୁରୁଷୋତ୍ତମଙ୍କର ପରାଭକ୍ତି ବା ପ୍ରେମଭକ୍ତି କୁହାଯାଏ । ଯେଉଁ ବ୍ୟକ୍ତି ଭଗବାନଙ୍କର ଏହି ପରାଭକ୍ତି ଲାଭ କରନ୍ତି, ଏହି ଚାରି ପ୍ରକାର ମୁକ୍ତିକୁ ଭଗବାନ ନିଜେ ତାଙ୍କୁ ଯାଚିଲେ ମଧ୍ୟ ସେ ଗ୍ରହଣ କରନ୍ତି ନାହିଁ । ସେବା ବିନା ସେହି ଭକ୍ତ ମୁକ୍ତିକୁ ସ୍ୱୀକାର କରନ୍ତି ନାହିଁ । ସେହି ଭକ୍ତ ତ କିଛି ପାଇବାକୁ ଆଶା କରନ୍ତି ନାହିଁ । ସେ ଚାହାନ୍ତି କେବଳ ସର୍ବଦା ଭଗବାନଙ୍କ ସେବାରେ ହିଁ ନିଜକୁ ନିଯୁକ୍ତ ରଖିଥିବେ ।''

ପାର୍ବତୀ କହିଲେ—''ଏହି ଭକ୍ତ ଯଦି ଏପରି ନିସ୍ପୃହ ଭାବରେ କିଛି ଚାହାନ୍ତି ନାହିଁ, ତାହାହେଲେ କ'ଣ ଆପଣ ତାଙ୍କ ସହିତ କଥାବାର୍ତ୍ତା କରିବା ମନା ?''

ଶଙ୍କର ସଙ୍ଗେ ସଙ୍ଗେ କହିଲେ—''ନା' ଦେବି ! ସେକଥା ନୁହେଁ ୀ ତଥାପି ଇଏ କିଛି ଚାହୁଁ ନଥିଲେ ବି ମୁଁ ଏହାଙ୍କ ସହିତ ବାର୍ତ୍ତାଳାପ କରିବି ।''

ପାର୍ବତୀ କହିଲେ—''ଯିଏ କିଛି ଚାହୁଁ ନାହାନ୍ତି, ତାଙ୍କ ସହିତ ବାର୍ତ୍ତାଳାପ କରିବା କି ଆବଶ୍ୟକ ?''

ଶିବ ହସି ହସି କହିଲେ—''ଦେବି ! ଧନ ଦୌଲତ ପ୍ରାପ୍ତି ବା ମାନ, ସମ୍ମାନ, ପ୍ରତିଷ୍ଠା, ସ୍ୱର୍ଗ ଅପବର୍ଗ ପାଇବାରେ ଏହାଙ୍କର କିଛି ଲାଭ ନାହିଁ । ସଂସାରରେ ସବୁଠାରୁ

ବଡ଼ ଲାଭ ହେଉଛି ସାଧୁ ସମାଗମ । ଯାହାଙ୍କର ସାଧୁ ଦର୍ଶନ ହୋଇଯାଇଛି, ତାଙ୍କ ଜୀବନ ଧନ୍ୟ । ଯିଏ ସାଧୁଙ୍କୁ ସ୍ପର୍ଶକରି ପାରିଛନ୍ତି, ତାଙ୍କର ଶରୀର ଶୁଦ୍ଧ ହୋଇଯାଇଛି । ଯିଏ ସାଧୁଙ୍କ ସହିତ ବାର୍ତ୍ତାଳାପ କରିଛନ୍ତି, ତାଙ୍କ ମନ ବିଶୁଦ୍ଧ ହୋଇଯାଇଛି ଓ ଯେଉଁମାନେ ସାଧୁସେବାର ସୁଯୋଗ ପାଇ ପାରିଛନ୍ତି, ସେମାନଙ୍କର ମନୁଷ୍ୟ ଜନ୍ମ ସାର୍ଥକ ହୋଇପାରିଛି ଏବଂ ସେମାନେ ପୂର୍ଣ୍ଣ ଫଳ ପାଇଛନ୍ତି । ମହାମୁନି ମାର୍କଣ୍ଡେୟ ହେଉଛନ୍ତି ସାଧୁଗଣଙ୍କ ମଧ୍ୟରେ ଶ୍ରେଷ୍ଠ । ତାଙ୍କ ସହିତ ବାର୍ତ୍ତାଳାପ କଲେ ମୋର ବହୁତ ଲାଭ ହେବ ।''

ପାର୍ବତୀ କହିଲେ—''ତାହାହେଲେ ଠିକ୍ ଅଛି, ଚାଲନ୍ତୁ, ମୁଁ ମଧ୍ୟ ଆଜି ଭକ୍ତ ଓ ଭଗବାନଙ୍କ ମିଳନ ଦର୍ଶନ କରିବି । ଭକ୍ତ ଟିକିଏ ହେଲେ ଆପଣଙ୍କ ପ୍ରଶଂସା ନ କରୁଣୁ ଆପଣ ଭକ୍ତର ପ୍ରଶଂସା କରିଚାଲିଛନ୍ତି । ଏଥିରୁ ଆପଣ ବଡ଼ କି ଭକ୍ତ ବଡ଼ ମୁଁ ନିର୍ଣ୍ଣୟ କରି ପାରୁନାହିଁ । ଚାଲନ୍ତୁ, ମୁଁ ମଧ୍ୟ ଏହି ଭକ୍ତଙ୍କର କଥା ଶୁଣିବାପାଇଁ ବ୍ୟଗ୍ର ହୋଇ ଉଠିଲିଣି ।''

ସୂତ କହିଲେ—''ମୁନିଗଣ ! ପାର୍ବତୀ ଯେତେବେଳେ ଅତି ଆଗ୍ରହରେ ଶିବଙ୍କୁ ଯିବାପାଇଁ ଅନୁରୋଧ କଲେ, ଯେତେବେଳେ ଶିବ ପାର୍ବତୀଙ୍କୁ ସଙ୍ଗରେ ନେଇ ମୁନିଙ୍କ ସମୀପକୁ ଗଲେ । ଆପଣମାନେ ଚିନ୍ତା କରି ଦେଖନ୍ତୁ ଭକ୍ତଙ୍କର କେତେ ଉଚ୍ଚ ପଦବୀ । ଯେଉଁ ଶଙ୍କର ସର୍ବବିଦ୍ୟାର ପ୍ରବର୍ତ୍ତକ, ଚରାଚରେ ବିଶ୍ୱର ସମସ୍ତ ପ୍ରାଣୀଙ୍କର ଯିଏକି ଏତାଦୃଶ ପଶୁମାନଙ୍କର ପତି, ସେହି ହିଁ ସାଧୁଗଣଙ୍କର ଏକମାତ୍ର ଆଶ୍ରୟ ଅଟନ୍ତି । ସେହି ପଶୁପତି ଭୋଳାନାଥ ଆଜି ଆନନ୍ଦ ମନରେ ସାଧୁଦର୍ଶନ ପାଇଁ ଯାଉଛନ୍ତି । ଶିବ ଆଶ୍ରମରେ ପହଞ୍ଚି ଦେଖିଲେ, ମାର୍କଣ୍ଡେୟ ମୁନି ପାଷାଣ ପ୍ରତିମା ସଦୃଶ ସ୍ଥିର ହୋଇ ବସିଅଛନ୍ତି । ଟିକିଏ ହେଲେ ସୁଦ୍ଧା ହଲଚଲ ନାହିଁ । ତାଙ୍କର ନିଜ ଶରୀରପ୍ରତି କିମ୍ବା ବାହ୍ୟ ଜଗତପ୍ରତି ଧ୍ୟାନ ନାହିଁ । କାରଣ ସେ ନିଜ ଅନ୍ତଃକରଣରେ ସମସ୍ତ ବୃତ୍ତିକୁ ଯୋଗବଳରେ ନିରୋଧ କରି ଥିଲେ ଓ ସମାଧି-ସୁଖ ଅନୁଭବ କରୁଥିଲେ । ଧ୍ୟାନମଗ୍ନ ହୋଇଥିବାରୁ ତାଙ୍କୁ ସେଠାରେ ଶିବଙ୍କର ଆବିର୍ଭାବ କଥା ଜଣାପଡ଼ି ନଥିଲା । ଶିବ ପାର୍ବତୀଙ୍କ ସହିତ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇଥିଲେ ଓ ସେ ସ୍ଥିର ଭାବରେ ସମାଧିସ୍ଥ ଥିଲେ ।

ଶିବ ତ ସମସ୍ତ ଯୋଗର ଏକମାତ୍ର ଆଚାର୍ଯ୍ୟ । ସେ ଜାଣି ପାରିଲେ ଯେ ମୁନି ଧ୍ୟାନମଗ୍ନ । ତେଣୁ ସେ ନିଜର ଯୋଗମାୟା ପ୍ରଭାବରେ ତାଙ୍କ ହୃଦୟାକାଶରେ ଏପରି ପ୍ରବେଶ କରିଗଲେ, ଯେପରି ରିକ୍ତ ସ୍ଥାନରେ ବାୟୁ ପ୍ରବେଶ କରିଥାଏ । ଏବେ ମୁନି ନିଜ ହୃଦୟ ମଧ୍ୟରେ ସାକ୍ଷାତ୍ ଶଙ୍କରଙ୍କର ଦିବ୍ୟଦର୍ଶନ କରିବାକୁ ଲାଗିଲେ । ସେ ଦେଖିଲେ ବିଦ୍ୟୁତ୍ ଭଳି ଝଟକୁଥିବା ଏକ ମନୋହର ଦେବତା ତାଙ୍କ ହୃଦୟ ମଧ୍ୟରେ ରହି ହସୁଅଛନ୍ତି । ତାଙ୍କର ପିଙ୍ଗଳବର୍ଣ୍ଣର ଜଟା ବିଦ୍ୟୁତ୍ ଆଲୋକରେ ଜାଜ୍ୱଲ୍ୟମାନ ହୋଇ ଉଠୁଛି । ତାଙ୍କର ମନୋହର ମୁଖାରବିନ୍ଦ ବାଳସୂର୍ଯ୍ୟ ସଦୃଶ ଶୋଭା ପାଉଅଛି । ଅତି ମନୋହର ଉନ୍ନତ କାୟ ଉପରେ ବ୍ୟାଘ୍ରଚର୍ମର ଶୋଭା ବର୍ଣ୍ଣନାତୀତ । ସେ ତାଙ୍କର ଦଶ ହସ୍ତରେ ତ୍ରିଶୂଳ, ଧନୁ, ବାଣ, ଖଡ୍ଗ, ଢାଲ, ଅକ୍ଷ-ମାଳା, ଡମ୍ବରୁ, କପାଳ ଓ ପରଶୁ ଧାରଣ କରିଅଛନ୍ତି । ଏକ ହସ୍ତରେ ଭକ୍ତଙ୍କୁ ଅଭୟ ଦାନ କରୁଅଛନ୍ତି । ତାଙ୍କର ମନୋହର ମୁଖାକୃତି ଅତ୍ୟନ୍ତ ଶୋଭା ପାଉଛି । ସେ କେବଳ ବିଶ୍ୱର କଲ୍ୟାଣ ଚିନ୍ତା କରୁଛନ୍ତି ।

ଏପରି ଦିବ୍ୟମୂର୍ତ୍ତିଙ୍କୁ ସହସା ନିଜ ହୃଦୟ ମଧ୍ୟରେ ଦର୍ଶନ କରି ମହାମୁନି ପରମ ବିସ୍ମିତ ହେଲେ । ସେ ବାରମ୍ବାର ଚିନ୍ତା କରିବାକୁ ଲାଗିଲେ, 'ଏ କିଏ ? ସହସା ମୋ ଅନ୍ତଃକରଣରେ କିପରି ଆବିର୍ଭାବ ହେଲେ ?' ଏହା ଚିନ୍ତା କରୁ କରୁ ସଙ୍ଗେ ସଙ୍ଗେ ସେହି ମନୋହର ମୂର୍ତ୍ତି ଅନ୍ତର୍ହିତ ହୋଇଗଲେ । ସେ ବିଚଳିତ ହେବାରୁ ତାଙ୍କ ସମାଧି ଭଗ୍ନ

ହୋଇଗଲା । ମୁନି ଆଖିଖୋଲି ଦେଖିଲେ ଯେଉଁ ମୂର୍ତ୍ତି ତାଙ୍କୁ ନିଜ ଅନ୍ତଃକରଣରେ ଦର୍ଶନ ଦେଉଥିଲେ, ସେହି ମୂର୍ତ୍ତି ପ୍ରତ୍ୟକ୍ଷ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ । ପାର୍ବତୀଙ୍କ ସହିତ ପରମେଶ୍ୱରଙ୍କୁ ପ୍ରସନ୍ନ ବଦନରେ ନିଜ ସମ୍ମୁଖରେ ପର୍ବତ ଶିଖର ଭଳି ନନ୍ଦୀଶ୍ୱରଙ୍କ ପୃଷ୍ଠଦେଶରେ ବିରାଜମାନ କରିଥିବାର ସେ ଦେଖିଲେ । ଶିବଙ୍କର ଗଣମାନେ ନନ୍ଦିକେଶ୍ୱରଙ୍କର ଚତୁଃପାର୍ଶ୍ୱରେ ଘେରି ଠିଆ ହୋଇଥିବାର ମଧ୍ୟ ସେ ଦେଖିଲେ ।

ନିଜ ସମ୍ମୁଖରେ ଶିବଙ୍କୁ ଦେଖି ମୁନି ସଙ୍ଗେ ସଙ୍ଗେ ଉଠିପଡ଼ି ଭୂମିରେ ଲୋଟିଗଲେ ଓ ଭୂତନାଥ ଭଗବାନ ଶିବଙ୍କର ପାଦପଦ୍ମରେ ସାଷ୍ଟାଙ୍ଗ ପ୍ରଣାମ କଲେ । ଉପସ୍ଥିତ କର୍ତ୍ତବ୍ୟ କର୍ମ କ'ଣ ହେବା ଉଚିତ ତାହା ମୁନି ହଠାତ୍ ସ୍ଥିର କରିପାରିଲେ ନାହିଁ । କେବଳ ବାରମ୍ବାର ପ୍ରଣାମ କରି ଭୂମିରେ ଲୋଟିବାରେ ସେ ଲାଗିଥାଆନ୍ତି । ଶିବ ନନ୍ଦୀଶ୍ୱରଙ୍କ ପିଠି ଉପରୁ ତଳକୁ ଓହ୍ଲାଇ ତାଙ୍କ ସମ୍ମୁଖରେ ଆସି ଠିଆ ହେଲେ । ପାର୍ବତୀ ମଧ୍ୟ ତଳକୁ ଓହ୍ଲାଇ ଆସିଲେ । ଏବେ ମୁନି ତାଙ୍କର ପୂଜାର୍ଚ୍ଚନା କରିବା ପାଇଁ ଧାଇଁଯାଇ ଆଶ୍ରମରୁ ଆସନ, ଅର୍ଘ୍ୟ, ଫଳ, ଫୁଲ ଯାହାକିଛି ଆବଶ୍ୟକ ସମସ୍ତ ନେଇ ଆସିଲେ । ଆସନ, ପାଦ୍ୟ, ଅର୍ଘ୍ୟ, ଗନ୍ଧ, ଧୂପ, ପୁଷ୍ପ, ମାଳା, ବିଲ୍ୱପତ୍ର, ଦୀପ, ନୈବେଦ୍ୟ ଓ ଫଳ ଆଦିରେ ପାର୍ବତୀ ଓ ପରମେଶ୍ୱରଙ୍କୁ ବିଧିମୁତାବକ ପୂଜାର୍ଚ୍ଚନା କଲେ । ତାହାପରେ ହାତଯୋଡ଼ି ସେ ଶିବଙ୍କୁ ସ୍ତୁତି କରିବାକୁ ଲାଗିଲେ । ସେ ପ୍ରେମାଶ୍ରୁ ନେତ୍ରରେ ଏହି ସ୍ତୁତି ଗାଉଥିଲେ :—

ମାର୍କଣ୍ଡେୟଙ୍କ ଶିବ ସ୍ତୁତି :

ତୁମ୍ଭେ ଯେ ଅଟ ପୂର୍ଣ୍ଣକାମ । ଜଗତେ ବରଦାତା ନାମ ॥
ଜଗତ ନିର୍ମାଣ ତୋ ରୂପ । ହେ ଦେବଦେବ ବିଶ୍ୱରୂପ ॥
ସତ୍ତ୍ୱ ରଜ ତମ ଗୁଣକ । ମୃତ୍ୟୁରୂପ ପବିତ୍ରାତ୍ମକ ॥
ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭେ ଯେ ଅବ୍ୟକ୍ତ ଈଶ୍ୱର ॥

ସୂତ କହିଲେ—''ମୁନିଗଣ ! ଯେତେବେଳେ ମହାମୁନି ମାର୍କଣ୍ଡେୟ ପୂଜାର୍ଚ୍ଚନା ସମାପ୍ତ କରି ଶେଷରେ ଭଗବାନ୍ ଆଶୁତୋଷଙ୍କୁ ଏ ପ୍ରକାର ସ୍ତୁତି କଲେ, ସେତେବେଳେ ତାଙ୍କ ସ୍ତୁତିରେ ପରମ ସନ୍ତୁଷ୍ଟ ହୋଇ ସାଧୁପୁରୁଷମାନଙ୍କର ଏକମାତ୍ର ଗତି ଭଗବାନ ଆଦିଦେବ-ମହାଦେବ ହସି ହସି ମୁନିଙ୍କୁ କହିଲେ—''ମୁନିବର ! ମୁଁ ତୁମ ନିୟମ ବ୍ରତ ଓ ସଦାଚାର ଆଦିରେ ତୁମ ଉପରେ ପରମ ସନ୍ତୁଷ୍ଟ, ଏବେ ତୁମେ ତୁମ ଇଚ୍ଛାନୁସାରେ ମୋଠାରୁ ବର ମାଗିନିଅ ।''

ବରଦାନ କଥା ଶୁଣି ମୁନି ସଙ୍କୋଚରେ ପଡ଼ିଲେ ଓ ଲଜ୍ଜିତ ହୋଇ କହିଲେ—''ପ୍ରଭୋ ! ମୁଁ କି ବର ମାଗିବି ?''

ଶିବ କହିଲେ—''ତୁମର ଯାହା ଇଚ୍ଛା, ସେହି ବର ମାଗ, ମୁଁ ସମସ୍ତ ବର ଦେଇପାରିବି । ମୋତେ 'ଅମୋଘ ଦର୍ଶନ' କୁହାଯାଏ । ମୋର ଦର୍ଶନ କେବେହେଲେ ବ୍ୟର୍ଥ ହୁଏ ନାହିଁ । ଏଥିପାଇଁ ତୁମେ ମୋଠାରୁ କିଛି ନା କିଛି ଅବଶ୍ୟ ମାଗିନିଅ ।''

ଏହା ଶୁଣି ମହାମୁନି ମାର୍କଣ୍ଡେୟ କହିଲେ—''ପ୍ରଭୋ ! ଆପଣଙ୍କୁ ସର୍ବଦା ପୂଜା, ବନ୍ଦନା ଓ ଭଜନ କରିବାରେ ମୁଁ ନିଜକୁ ଯେପରି ନିୟୋଜିତ କରିପାରିବି, ମୋତେ ଆପଣ ଏହି ବର ଦିଅନ୍ତୁ ।''

ଭଗବାନ୍ ଶଙ୍କର ଏହା ଶୁଣି ହସି ହସି କହିଲେ—''ମୁନିବର ! ଆପଣ ନିଜେ ତ ସମସ୍ତ ଜୀବଙ୍କଦ୍ୱାରା ପୂଜିତ, ବନ୍ଦିତ ଓ ଉପାସନାଯୋଗ୍ୟ ଅଟନ୍ତି ।''

ମୁନି କହିଲେ—''ପ୍ରଭୋ ! ଆପଣ ଏପରି ବିପରୀତ କଥା କାହିଁକି କହୁଛନ୍ତି ?''

ଶଙ୍କର କହିଲେ—"ମୁନିବର ! ମୁଁ ବିପରୀତ କଥା କହୁ ନାହିଁ, ସତ୍ୟ କଥା ହିଁ କହୁଛି । ଯେଉଁ ବ୍ରାହ୍ମଣ ସଜ୍ଜନ, ଶାନ୍ତସ୍ୱଭାବ, ସମସ୍ତ ପ୍ରକାର ସଙ୍ଗରହିତ, ଯିଏ ବିନା ଭେଦଭାବରେ ସମସ୍ତ ପ୍ରାଣୀଙ୍କ ଉପରେ କୃପା କରନ୍ତି, ଯିଏ ସରଳ ସାଧୁସ୍ୱଭାବ ତଥା ସର୍ବଭୂତ ହିତରେ ରତ, ଯିଏ କେବେହେଲେ କାହାରିଠାରେ ବୈରଭାବ ରଖନ୍ତି ନାହିଁ, ଯିଏ ଶତ୍ରୁ ମିତ୍ର ତଥା ଉଦାସୀନ ସମସ୍ତଙ୍କୁ ସମଦୃଷ୍ଟିରେ ଦେଖନ୍ତି, ଯିଏ ମୋର ଅନନ୍ୟ ଉପାସକ ଅଟନ୍ତି, ଏପରି ସାଧୁପୁରୁଷଙ୍କର ବନ୍ଦନା, ପୂଜା ଓ ଉପାସନା ତ ସମସ୍ତ ଲୋକପାଳଙ୍କ ସହିତ ପ୍ରତ୍ୟେକ ପ୍ରାଣୀ କରନ୍ତି । ତାଙ୍କୁ ସର୍ବପୂଜ୍ୟ ବୋଲି ମାନିବାକୁ ହୁଏ । ମୁଁ ନିଜେ ତ ଏପରି ସରଳ ସନ୍ଥଙ୍କୁ ସର୍ବଦା ଭଜନ କରୁଛି । କେବଳ ମୁଁ କାହିଁକି, ଲୋକପିତାମହ ବ୍ରହ୍ମା ଓ ଭଗବାନ୍ ବିଷ୍ଣୁ ମଧ୍ୟ ଏପରି ସନ୍ଥଙ୍କୁ ଭଜନ କରନ୍ତି । ସାରକଥା ହେଲା, ସନ୍ଥଜନଙ୍କ ଦୃଷ୍ଟିରେ ଦ୍ୱୈତଭାବର ପ୍ରଶ୍ନ ନାହିଁ । ସେ ମୋଠାରେ, ପଦ୍ମଗର୍ଭ ବ୍ରହ୍ମାଙ୍କଠାରେ, ପଦ୍ମନାଭ ବିଷ୍ଣୁଙ୍କଠାରେ ତଥା ସମସ୍ତ ପ୍ରାଣୀଙ୍କଠାରେ ଏବଂ ନିଜଠାରେ ଅଣୁମାତ୍ର ଭେଦଭାବ ରଖନ୍ତି ନାହିଁ । ଯାହାଙ୍କର ଭେଦଭାବ ଚିରଦିନ ପାଇଁ ଲୋପ ହୋଇଯାଇଛି, ଏପରି ସମଦର୍ଶୀ ସନ୍ଥ ତ ଆମର ଭଜନୀୟ । ସେପରି ସନ୍ଥଜନ ସମସ୍ତ ଭୁବନକୁ ପବିତ୍ର କରିବାରେ ସମର୍ଥ ଅଟନ୍ତି ।"

ମାର୍କଣ୍ଡେୟ ମୁନି ବିନମ୍ରଭାବରେ ହାତଯୋଡ଼ି କହିଲେ—"ପ୍ରଭୋ ! ପାବନ କରିବା କାର୍ଯ୍ୟ ତୀର୍ଥର । ତୀର୍ଥ ହିଁ ପ୍ରାଣୀମାନଙ୍କୁ ପବିତ୍ର କରେ ।"

ଶିବ ହସି ହସି କହିଲେ—"ମୁନିବର ! ଆପଣଙ୍କ କଥା ସତ୍ୟ । ତୀର୍ଥ ପବିତ୍ର କରେ । କିନ୍ତୁ ଆପଣ ତୀର୍ଥ ବୋଲି କାହାକୁ କହୁଛନ୍ତି ? କ'ଣ ନଦୀ, ପୁଷ୍କରିଣୀ, ସରୋବର, ହ୍ରଦ ଆଦି ଜଳାଶୟ କିମ୍ବା ପାଷାଣ ମୃତ୍ତିକା, ଧାତୁ ଓ ଚିତ୍ର ଆଦିକୁ ଆପଣ ତୀର୍ଥ ବୋଲି ଭାବୁଛନ୍ତି ?"

ମାର୍କଣ୍ଡେୟ କହିଲେ—"ତାହାହେଲେ କ'ଣ ଭଗବନ୍ ! ଗଙ୍ଗାଦି ପବିତ୍ର ନଦୀ, ଶ୍ରୀ ବଦ୍ରୀନାଥ, ଶ୍ରୀ ରାମେଶ୍ୱର ଆଦି ତୀର୍ଥ ପ୍ରାଣୀମାନଙ୍କୁ ପାବନ କରିବାର ତୀର୍ଥ ନୁହେଁ ?"

ଶଙ୍କର କହିଲେ—"ମୁନିବର ! ମୋର ଅଭିପ୍ରାୟ ଏହା ନୁହେଁ ଯେ, ଗଙ୍ଗାଦି ପବିତ୍ର ଜଳାଶୟ, ଜଗନ୍ନାଥ ପୁରୀ, ରାମେଶ୍ୱର ଓ ବଦ୍ରୀନାରାୟଣ ଆଦି ତୀର୍ଥ ନୁହେଁ । ଏ ସମସ୍ତ ତୀର୍ଥରେ ପ୍ରାଣୀ ପବିତ୍ର ହୁଅନ୍ତି, କିନ୍ତୁ ଚିରକାଳ ପର୍ଯ୍ୟନ୍ତ ଏହି କ୍ଷେତ୍ରର ସେବା କରୁଥିଲେ ଏଥିରୁ ସୁଫଳ ମିଳେ । ତଥାପି ଏ ସମସ୍ତ କ୍ଷେତ୍ର ପ୍ରାଣୀମାନଙ୍କୁ ପବିତ୍ର କରିଥାଏ । କିନ୍ତୁ ସନ୍ଥରୂପୀ ପ୍ରତ୍ୟକ୍ଷ ଚଳପ୍ରଚଳକାରୀ ସଜୀବ ତୀର୍ଥଙ୍କୁ ତ ଦର୍ଶନ କରିବାମାତ୍ରେ ପ୍ରାଣୀ ପବିତ୍ର ହୋଇଥାଆନ୍ତି । ତେଣୁ ସନ୍ଥଜନ ସମସ୍ତ ତୀର୍ଥଠାରୁ ଶ୍ରେଷ୍ଠ ତୀର୍ଥ । ଏବେ ଆପଣ ମୋ କଥା ଚିନ୍ତା କରନ୍ତୁ ତ ମୁନିବର ! ଯେଉଁ ସନ୍ଥଜନ ନାନା ପ୍ରକାର ଯମ-ନିୟମ ପାଳନ କରି ନିଜର ଅତ୍ୟନ୍ତ ଚଞ୍ଚଳ ଚିତ୍ତକୁ ଏକାଗ୍ର କରି ସଂସାରର ଭୋଗବାସନା ନରଖି ନିରନ୍ତର ତପ ଓ ସ୍ୱାଧ୍ୟାୟରେ ହିଁ ପ୍ରବୃତ୍ତ ହୋଇଥାଆନ୍ତି, ଯେଉଁମାନେ ଶୌଚ ସଂଯମାଦିରେ ଆମ୍ଭର ବେଦତ୍ରୟୀ ରୂପକୁ ନିଜ ହୃଦୟରେ ଧାରଣ କରନ୍ତି, ଏପରି ବ୍ରାହ୍ମଣଙ୍କୁ କିଏ ଅବା ପାବନ ତୀର୍ଥ ବୋଲି ନକହିବ ? ତାଙ୍କ ଚରଣରେ କିଏ ଅବା ପ୍ରଣାମ ନକରିବ ? ବ୍ରହ୍ମା, ବିଷ୍ଣୁ ଓ ମୁଁ ଏପରି ନିସ୍ପୃହ ବ୍ରାହ୍ମଣଙ୍କୁ ପ୍ରତିଦିନ ନମସ୍କାର କରୁ । ମହାପାପୀ ଚଣ୍ଡାଳ ମଧ୍ୟ ଆପଣଙ୍କ ଭଳି ସନ୍ଥଙ୍କର ଦର୍ଶନ କରି ପବିତ୍ର ହୁଅନ୍ତି । ଯେଉଁମାନେ ସର୍ବଦା ଆପଣଙ୍କ ସାନ୍ନିଧ ଲାଭ କରୁଛନ୍ତି, ସେମାନଙ୍କ ବିଷୟରେ ଆଉ ଅଧିକ କ'ଣ କୁହାଯାଇ ପାରେ ? ମୁଁ ଜାଣେ, ଆପଣଙ୍କର କୌଣସି ବର ଲାଭ କରିବାରେ ଇଚ୍ଛା ନାହିଁ, ତଥାପି ଆପଣଙ୍କ ସହିତ ବାର୍ତ୍ତାଳାପ କରିବା ଲୋଭରେ, ନିଜକୁ ପବିତ୍ର କରିବା ଅଭିପ୍ରାୟରେ ମୁଁ ଆପଣଙ୍କ ନିକଟକୁ ଆସିଛି । ଆପଣଙ୍କୁ ଦର୍ଶନକରି ମୁଁ ଅତ୍ୟନ୍ତ ସନ୍ତୋଷ ।"

ସୂତ କହିଲେ—''ମୁନିଗଣ ! ଅତ୍ୟନ୍ତ ପ୍ରେମ ଓ ନମ୍ରତାଯୁକ୍ତ ଶଙ୍କରଙ୍କର ପରମ ମଧୁର ବଚନ ଶୁଣି ମାର୍କଣ୍ଡେୟ ମୁନିଙ୍କ ଶରୀରରେ ରୋମାଞ୍ଚ ସୃଷ୍ଟି ହେଲା । ସେ ଏପରି ଅନୁଭବ କଲେ ଯେ, ସତେ ଯେପରି ତାଙ୍କ ଶ୍ରବଣପୁଟରେ କେହି ନିରନ୍ତର ଅମୃତ ଢାଳୁଛି । ଶଙ୍କରଙ୍କର ଦିବ୍ୟବାଣୀ ଶୁଣି ଶୁଣି ମୁନିଙ୍କର ତୃପ୍ତି ଆସିଲା ନାହିଁ । ଏ ପର୍ଯ୍ୟନ୍ତ ତ ସେ ଭଗବାନଙ୍କର ମାୟାଫାନ୍ଦରେ ପଡ଼ି କ୍ଲାନ୍ତ ହୋଇଯାଇଥିଲେ । ପ୍ରଳୟକାଳୀନ ସମୁଦ୍ରର ଆଘାତରେ ସେ ଅତ୍ୟନ୍ତ ଶ୍ରାନ୍ତ ହୋଇ ପଡ଼ିଥିଲେ । ଶଙ୍କରଙ୍କର ବିନମ୍ର ବଚନରେ ତାଙ୍କ ହୃଦୟ ଭରିଗଲା । ବାଣୀ ରୁଦ୍ଧ ହୋଇଗଲା । ସେ ଅତି କଷ୍ଟରେ ଦୁଇହାତ ଯୋଡ଼ି କହିଲେ—''ପ୍ରଭୋ ! ଆପଣଙ୍କର ଲୀଳା ଅପରମ୍ପାର । କେହିହେଲେ ଆପଣଙ୍କ ଲୀଳାକୁ ପାରହୋଇ ପାରନ୍ତି ନାହିଁ । ଆପଣ କହନ୍ତୁ ତ, ଯିଏ ସମସ୍ତଙ୍କର ସ୍ୱାମୀ, ସମସ୍ତଙ୍କର ଜନକ, ପାଳକ ଓ ରକ୍ଷକ, ମୋ ଭଳି ଅଗଣିତ ଜୀବ ଯାହାଙ୍କ ଶାସନରେ ସଦା ପରିଚାଳିତ, ସମସ୍ତଙ୍କର ଯିଏ ଏକମାତ୍ର ଆଶ୍ରୟ, ସେ ମୋଭଳି ଜଣେ କ୍ଷୁଦ୍ର ଜୀବକୁ ପ୍ରଶଂସା କରିବା, ସ୍ତୁତି କରିବା ବିଡ଼ମ୍ବନା ନୁହେଁ କି ?''

ଶିବ ହସି ହସି କହିଲେ—''ମୁନିବର ! ତାହାହେଲେ କ'ଣ ଆପଣ ମୋର ଏହି ନମସ୍କାର ଓ ସ୍ତୁତିରେ କିଛି କପଟତା ଥିବାର ଭାବୁଛନ୍ତି ?'' ମାର୍କଣ୍ଡେୟ ସଙ୍ଗେ ସଙ୍ଗେ କହିଲେ—''ନା, ନା ଭଗବନ୍ ! ପିତା ଶିଶୁପୁତ୍ରକୁ ଖେଳାଉଥିବା ସମୟରେ ତାକୁ ରାଜା ବୋଲି କହେ, ମୁଣ୍ଡରେ ନେଇ ବସାଏ, ତା ପାଦକୁ ନେଇ ମସ୍ତକ ଉପରେ ଥୁଏ । ଏଥିରେ କେବଳ ପିତାର ବିନୋଦ । ଏପରି ଅନେକ ସିଦ୍ଧପୁରୁଷ ଅଛନ୍ତି, ଯେଉଁମାନଙ୍କର କି ଧର୍ମାଚରଣର କୌଣସି ଆବଶ୍ୟକତା ନଥାଏ । ସେମାନେ ଧର୍ମ, ଅଧର୍ମ, ବିଧି, ନିଷେଧର ଊର୍ଦ୍ଧ୍ୱରେ ସର୍ବଦା ରହିଥାଆନ୍ତି । ତଥାପି ଧର୍ମୋପଦେଶକଙ୍କ ଭଳି ସେମାନେ ଧର୍ମାଚରଣ କରିଥାଆନ୍ତି ଓ ତାହାର ଅନୁମୋଦନ ଓ ସମର୍ଥନ ବି କରିଥାଆନ୍ତି । ସେମାନେ ଧର୍ମ ଆଚରଣକାରୀଙ୍କ ପ୍ରଶଂସା ମଧ କରିଥାଆନ୍ତି । ଏସବୁ ସେମାନେ ନିଜ ନିଜ ପାଇଁ କରନ୍ତି ନାହିଁ । ସେହିପରି ଆପଣ ମଧ ଲୋକଶିକ୍ଷା ପାଇଁ ଏପରି କରନ୍ତି । ଆପଣ ଯେଉଁ ନମସ୍କାର ଆଦି କରନ୍ତି, ତଦ୍ଦ୍ୱାରା ଆପଣଙ୍କର ବଡ଼ପଣରେ କୌଣସି ପ୍ରକାର ନ୍ୟୂନତା ଆସେ ନାହିଁ । କାରଣ ଆପଣ ନିଜର ମାୟାମୟୀ ବୃତ୍ତିଗୁଡ଼ିକୁ ସ୍ୱୀକାର କରି ଏପରି ଆଚରଣ କରନ୍ତି । କୌଣସି ମାୟାବୀ ମାୟାଦ୍ୱାରା ନାନା ବେଶ ଧାରଣ କରେ, ଅନ୍ୟଲୋକ ତାହା ଦେଖି ଆପେ ଆପେ ମୋହିତ ହୋଇଯାଏ । କିନ୍ତୁ ସେ ସେହି ମାୟା ପ୍ରଭାବରେ ନିଜକୁ ତା ସହିତ ପ୍ରଭେଦ ଦେଖେ ନାହିଁ । ସେ ତ ସେହିପରି ନିଜ ସ୍ୱରୂପରେ ହିଁ ସ୍ଥିର ରହେ । ଆପଣ ନମସ୍କାରାଦି କରି ଜୀବଗଣଙ୍କୁ ନମ୍ରତାର ବିଧି ଶିକ୍ଷା ଦିଅନ୍ତି । ସ୍ୱପ୍ନରେ ମନୁଷ୍ୟ ଯେପରି ମନ ମଧରେ ସମସ୍ତ ପଦାର୍ଥର କଳ୍ପନା କରେ, ପୁନଶ୍ଚ ସେହି ବସ୍ତୁରୁ ମିଳୁଥିବା ସୁଖ ଦୁଃଖକୁ ନିଜେ କର୍ତ୍ତା ସମାନ ଭୋଗକଲା ଭଳି ପ୍ରତୀତ ହୁଏ, ସେହିପରି ଆପଣ ସମସ୍ତ ବିଶ୍ୱପ୍ରପଞ୍ଚକୁ ରଚନା କରି ତହିଁରେ ଅନୁପ୍ରବେଶ ପୂର୍ବକ ଗୁଣଗୁଡ଼ିକର କ୍ରିୟାରେ ସ୍ୱୟଂ କର୍ତ୍ତା ସଦୃଶ ପ୍ରତୀତ ହୁଅନ୍ତି । ଆପଣ ସମସ୍ତ ଗୁଣର ନିୟନ୍ତା । ଆପଣ ବ୍ରହ୍ମସ୍ୱରୂପ ଅଟନ୍ତି, ନିଷ୍କଳ ଅଟନ୍ତି, କେବଳ ଓ ଅଦ୍ୱିତୀୟ ଅଟନ୍ତି । ଆପଣ ସର୍ବସାକ୍ଷୀ ଅଟନ୍ତି, ଚରାଚର ଜଗତର ଗୁରୁ ଅଟନ୍ତି । ଏପରି କଲ୍ୟାଣସ୍ୱରୂପ ପରମାତ୍ମାଙ୍କର ପାଦପଦ୍ମରେ ମୁଁ ପୁନଃ ପୁନଃ ପ୍ରଣାମ କରୁଅଛି ।''

ଶିବ କହିଲେ—''ମୁନିବର ! ନମସ୍କାର ପ୍ରଣାମ ତ ହୋଇସାରିଛି । ସେ ଶିଷ୍ଟାଚାର କଥା ଛାଡ଼ନ୍ତୁ । ଏବେ ଆପଣ ମୋତେ କୌଣସି ଅଭୀଷ୍ଟ ବର ମାଗନ୍ତୁ ।''

ମାର୍କଣ୍ଡେୟ କହିଲେ—''ପ୍ରଭୋ ! ଏବେ ମୋ ପାଇଁ କ'ଣ ଆଉ କିଛି ମାଗିବାକୁ ଅବଶେଷ ରହିଲା ? ଯେଉଁ ଭାଗ୍ୟବାନ ଆପଣଙ୍କର ଦେବଦୁର୍ଲଭ ଦର୍ଶନ କରନ୍ତି, ତାଙ୍କର

ସମସ୍ତ ପ୍ରକାରର ଆନନ୍ଦ ଲାଭ ହୋଇଯାଏ । ସେ ଆପ୍ତକାମ ହୋଇଯାଆନ୍ତି । ଦର୍ଶନ କରିବା ପରେ ସମସ୍ତ କିଛି ପ୍ରଦାନକାରୀଙ୍କଠାରୁ ମୋର ଆଉ କ'ଣ ମାଗିବା ଆବଶ୍ୟକ ?''

ଶିବ କହିଲେ—''ତଥାପି ଆପଣ ମୋଠାରୁ କିଛି ମାଗି ନିଅନ୍ତୁ ।''

ମାର୍କଣ୍ଡେୟ କହିଲେ—''ତାହାହେଲେ ଠିକ୍ ଅଛି, ଭଗବନ୍ ! ଆପଣଙ୍କ ଆଜ୍ଞା ମୁଁ ପାଳନ କରିବି । ଆପଣ ମୋତେ ଏହି ବର ଦିଅନ୍ତୁ ଯେ, ଯେପରି ଆପଣଙ୍କଠାରେ ମୋର ଅବିଚଳିତ ଭକ୍ତି ରହୁ । ଆପଣ ମୋର ଏହି କାମନା ପୂର୍ଣ୍ଣ କରନ୍ତୁ, କାରଣ ଆପଣଙ୍କ ନିକଟରୁ କେହି ରିକ୍ତ ହସ୍ତରେ ଫେରନ୍ତି ନାହିଁ ।''

ସୂତ କହିଲେ—''ମୁନିଗଣ ! ମହାମୁନିଙ୍କର ଏପରି କଥା ଶୁଣି ଉମାପତି ତ୍ରିଲୋଚନ ଭଗବାନ ଭୋଳାନାଥ ହସିଲେ । ସେ ମୁନିଙ୍କର ପୂଜା, ସ୍ତୁତି, ବିନୟ ଓ ନିସ୍ପୃହତା ଉପରେ ସନ୍ତୁଷ୍ଟ ହୋଇଥିଲେ । ପାର୍ବତୀ କହିଲେ—'ତପସ୍ୱୀ ଯାହା ମାଗୁଛନ୍ତି, ଆପଣ ତାଙ୍କୁ ତାହା ପ୍ରଦାନ କରନ୍ତୁ ।' ନିଜର ପ୍ରିୟା ପାର୍ବତୀଙ୍କଠାରୁ ଅନୁମତି ପାଇ ଶିବ କହିଲେ—'ମୁନିବର ! ମୁଁ ଆପଣଙ୍କୁ ଭକ୍ତିର ଆଶୀର୍ବାଦ କ'ଣ ଦେବି ? ଆପଣ ତ ସ୍ୱତଃ ଭକ୍ତି ପ୍ରାପ୍ତ ହୋଇଛନ୍ତି । ଭଗବାନ୍ ନର-ନାରାୟଣ ପ୍ରଥମରୁ ତ ଆପଣଙ୍କ ଉପରେ କୃପା କରିଛନ୍ତି । ଯାହାଙ୍କର ଭଗବାନଙ୍କଠାରେ ଭକ୍ତି ଥାଏ, ତାଙ୍କର କୌଣସି କାମନା ନଥାଏ । ସେ ଯାହା ଚାହାନ୍ତି, ତାହା ହୋଇଯାଏ । ଆପଣ ଯାହା କାମନା କରିବେ ତାହା ପୂର୍ଣ୍ଣ ହେବ । ମୋ ଆଶୀର୍ବାଦରୁ ଆପଣଙ୍କର କଳ୍ପାନ୍ତ ଯଶ ଲାଭ ହେବ । ଆପଣଙ୍କୁ ପରମ ପୁଣ୍ୟ ଓ ଅଜର ଅମରତା ମଧ୍ୟ ପ୍ରାପ୍ତ ହେବ । ଆପଣ ସର୍ବଦା ବ୍ରହ୍ମତେଜରେ ଦେଦୀପ୍ୟମାନ ରହିବେ । ଆପଣଙ୍କୁ ଭୂତ, ଭବିଷ୍ୟ ତଥା ବର୍ତ୍ତମାନର ସମସ୍ତ ଜ୍ଞାନ ପ୍ରାପ୍ତ ହେବ । ତିନିଲୋକରେ ଆପଣଙ୍କ ପାଇଁ କିଛିହେଲେ ଅଜ୍ଞେୟ ରହିବ ନାହିଁ । ଆପଣ ବୈରାଗ୍ୟଯୁକ୍ତ ବିଜ୍ଞାନ ପ୍ରାପ୍ତି ହେବେ ଓ ସଂସାରରେ ଆପଣ ପୁରାଣାଚାର୍ଯ୍ୟ ରୂପେ ବିଖ୍ୟାତ ହେବେ ।''

ସୂତ କହିଲେ—''ମୁନିଗଣ ! ଏକସଙ୍ଗେ ଏତେ ବର ପାଇ ମାର୍କଣ୍ଡେୟଙ୍କର ହୃଦୟ ଭରିଗଲା । ସେ ପାର୍ବତୀପତିଙ୍କର ପାଦପଦ୍ମରେ ପୁନଃ ପୁନଃ ପ୍ରଣାମ କଲେ । ଶିବ ମଧ୍ୟ ତାଙ୍କୁ ସମସ୍ତ ପ୍ରକାରର ସନ୍ତୋଷ ପ୍ରଦାନ କଲେ ଓ ମୁନିଙ୍କଠାରୁ ଅନୁମତି ନେଇ ପାର୍ବତୀ ଓ ଶିବଗଣଙ୍କ ସହିତ କୈଳାସକୁ ଫେରିଗଲେ । ପଥ ମଧ୍ୟରେ ସେ ପାର୍ବତୀଙ୍କ ସହିତ ମୁନିଙ୍କ ସମ୍ବନ୍ଧରେ ବାର୍ତ୍ତାଳାପ କରି କରି ଚାଲିଥିଲେ । ଏହି ମାର୍କଣ୍ଡେୟ ମୁନି ବ୍ରାହ୍ମଣମାନଙ୍କୁ ପ୍ରଣାମ କରି କିପରି ଅଜର ଅମରତା ଲାଭ କରିଥିଲେ ଓ କିପରି ଭାବରେ ଘୋର ତପ କରିଥିଲେ, ଏହା ହିଁ ଥିଲା ପଥମଧ୍ୟରେ ଶିବ ପାର୍ବତୀଙ୍କ ମଧ୍ୟରେ ଆଲୋଚନା ।''

''ଏଣେ ମହାମୁନି ମାର୍କଣ୍ଡେୟ ମଧ୍ୟ ସମସ୍ତ ଯୋଗସମ୍ପତ୍ତି ଲାଭ କରି ଭଗବାନଙ୍କ ଚରଣାରବିନ୍ଦରେ ଅନୁରକ୍ତ ହୋଇ ନିଜ ଇଚ୍ଛାନୁସାରେ ପୃଥିବୀରେ ବିଚରଣ କରିବାକୁ ଲାଗିଲେ ।

''ତେଣୁ, ହେ ମୁନିଗଣ ! ମାର୍କଣ୍ଡେୟ ମୁନି ଯେଉଁ ପ୍ରଳୟ ଦର୍ଶନ କରିଥିଲେ, ତାହା ବାସ୍ତବିକ ପ୍ରଳୟ ନଥିଲା । ତାହାଥିଲା ଭଗବାନଙ୍କର ଆକସ୍ମିକ ମାୟା । ଯେପରି ବ୍ରାହ୍ମଣଶ୍ରେଷ୍ଠ ସୋମଶର୍ମାଙ୍କୁ ଭଗବାନଙ୍କର କୃପାରେ ମାୟା ଦର୍ଶନ ହୋଇଥିଲା, ସେହିପରି ମାର୍କଣ୍ଡେୟ ମୁନିଙ୍କୁ ମଧ୍ୟ ମାୟାଦର୍ଶନ ହୋଇଥିଲା ।''

ଏହା ଶୁଣି ଶୌନକ ପଚାରିଲେ—''ହେ ସୂତ ! ଏହି ସୋମଶର୍ମା ବ୍ରାହ୍ମଣ କିଏ ଓ ତାଙ୍କୁ ଭଗବାନଙ୍କର ମାୟାଦର୍ଶନ କିପରି ହୋଇଥିଲା, ସେ ମାୟାଦର୍ଶନର ଇଚ୍ଛା କାହିଁକି କରିଥିଲେ ଓ ଭଗବାନଙ୍କ ମାୟାରେ କ'ଣ ସବୁ ଦେଖିଲେ ? କୃପାକରି ଏହି ଆଖ୍ୟାନ ଆମ୍ଭମାନଙ୍କୁ କହନ୍ତୁ ।''

ସୂତ କହିଲେ—''ବ୍ରହ୍ମନ୍ ! ଭଗବାନଙ୍କର ଦୈବୀମାୟା ଅଚିନ୍ତ୍ୟ । ଏହି ମାୟାଦ୍ୱାରା ସବୁକିଛି ସମ୍ଭବ । ପ୍ରତ୍ୟେକଲୋକ ନିତ୍ୟ ମାୟାଦର୍ଶନ କରିଥାଆନ୍ତି । କିନ୍ତୁ ଯେଉଁମାନେ ମାହେଶଙ୍କର କୃପାରୁ ମାୟାଦର୍ଶନ କରନ୍ତି, ସେମାନେ ମାୟାସମୁଦ୍ର ପାରହୋଇ ଯାଆନ୍ତି । ମୁଁ ଆପଣମାନଙ୍କୁ ବର୍ତ୍ତମାନ ସୋମଶର୍ମା ବିପ୍ରଙ୍କ ଆଖ୍ୟାନ କହୁଛି, ଶ୍ରବଣ କରନ୍ତୁ ।

''ସୋମଶର୍ମା ଅତ୍ୟନ୍ତ ଶାନ୍ତ, ଦାନ୍ତ, ତେଜସ୍ୱୀ ଓ ତପସ୍ୱୀ ଥିଲେ । ସେ ଅନେକଦିନ ପର୍ଯ୍ୟନ୍ତ କଠିନ ନିୟମମାନ ପାଳନକରି ତୀବ୍ର ତପ କରିବାକୁ ଲାଗିଲେ । ତାଙ୍କ ତପସ୍ୟାରେ ତପପତି ଭଗବାନ୍ ବିଷ୍ଣୁ ସନ୍ତୁଷ୍ଟ ହେଲେ ଓ ତାଙ୍କୁ ଦର୍ଶନ ଦେଲେ । ସେ ଭଗବାନଙ୍କ ଦର୍ଶନ ପାଇ ପରମ ସନ୍ତୁଷ୍ଟ ହେଲେ । ଭଗବାନ୍ କହିଲେ—''ବ୍ରହ୍ମନ୍ ! ମୁଁ ତୁମ ଉପରେ ସନ୍ତୁଷ୍ଟ ହୋଇଛି । ତୁମେ ଧନ, ରତ୍ନ, ସ୍ତ୍ରୀ, ପୁତ୍ର, ରାଜ୍ୟ, ସ୍ୱର୍ଗ ଓ ଅନ୍ୟ ଯାହାକିଛି ଚାହଁ ମୋତେ କହ । ମୁଁ ତୁମକୁ ତୁମର ଇପ୍‌ସିତ ବସ୍ତୁ ପ୍ରଦାନ କରିବି ।''

ଏହା ଶୁଣି ବ୍ରାହ୍ମଣ କହିଲେ—''ପ୍ରଭୋ ! ମୋର ଧନ, ରତ୍ନ, ସ୍ତ୍ରୀ, ପୁତ୍ର ଓ ସ୍ୱର୍ଗାଦି ସୁଖ ଆବଶ୍ୟକ ନାହିଁ । ଆପଣ ମୋତେ ଯଦି କିଛି ଦେବାକୁ ଚାହୁଁଛନ୍ତି, ତାହାହେଲେ ମୋତେ ଆପଣଙ୍କର ମାୟା ଦର୍ଶନ କରାଇ ଦିଅନ୍ତୁ ।''

ଭଗବାନ୍ ହସି ହସି କହିଲେ—''ବ୍ରାହ୍ମଣ ! ତୁମେ ପାଗଳ ହେଲ ନା କ'ଣ ? ମୋ ମାୟା ତ ଅତି ଦୁର୍ଲଭ । ବଡ଼ ବଡ଼ ଦେବତା, ଲୋକପାଳ ମଧ୍ୟ ତାଙ୍କୁ ପାର ହୋଇ ପାରନ୍ତି ନାହିଁ । ତୁମେ ମୋ ମାୟାକୁ ଦେଖିଲେ ତୁମର କି ଲାଭ ହେବ ? ଅନ୍ୟକୌଣସି ବର ମାଗ ।''

ବ୍ରାହ୍ମଣ କହିଲେ—''ନା, ପ୍ରଭୋ ! ଆପଣଙ୍କ ମାୟା ଦର୍ଶନ କରିବା ପାଇଁ ମୁଁ ଇଚ୍ଛା କରୁଛି । ମୋ ଉପରେ ଯଦି ଆପଣଙ୍କର କୃପା, ତାହାହେଲେ ଆପଣ ମୋତେ ନିଜର ମାୟା ଦର୍ଶନ କରାଇ ଦିଅନ୍ତୁ ।''

ଭଗବାନ୍ କହିଲେ—''ଆଚ୍ଛା ଠିକ୍‌ଅଛି, ତୁମେ ଯଦି ନ ମାନୁଛ, ତାହାହେଲେ ମୋ ମାୟା ମୁଁ ଦର୍ଶନ କରାଇବି । ତୁମେ ହରିଦ୍ୱାର ଚାଲ, ସେଠାରେ ମାୟାପୁର ନାମରେ ଏକ ସ୍ଥାନ ଅଛି, ଯେଉଁଠାରେ ତୁମେ ମୋର ମାୟା ଦର୍ଶନ କରିବ ।''

ଏହା କହି ଭଗବାନ୍ ଅନ୍ତର୍ଦ୍ଧାନ ହୋଇଗଲେ । ସୋମଶର୍ମା ନିଜର ଦଣ୍ଡ-କମଣ୍ଡଳୁ ନେଇ ହରିଦ୍ୱାର ଯାତ୍ରା କଲେ । କିଛିଦିନ ପରେ ସେ ମାୟାପୁରରେ ପହଞ୍ଚିଲେ । ଅଳକାନନ୍ଦା କୂଳରେ ଦଣ୍ଡ-କମଣ୍ଡଳୁ ଓ ବସ୍ତ୍ର ଆଦି ରଖିଦେଇ ନଦୀରେ ସ୍ନାନ କରିବାକୁ ପଶିବାମାତ୍ରେ ଜଳମଧ୍ୟରେ ବୁଡ଼ିଯାଇ ଦେଖିଲେ ଯେ ସେ ଏକ ନାବିକକନ୍ୟା ଗର୍ଭରେ ଅବସ୍ଥାନ କରିଛନ୍ତି । ତାଙ୍କର ଏ କଥା ଭଲଭାବେ ସ୍ମରଣ ଥିଲା ଯେ, ସେ ତପସ୍ୱୀ ସୋମଶର୍ମା, କିନ୍ତୁ ତାଙ୍କ ଶରୀର ଗର୍ଭଗତ ବାଳିକାର ହୋଇଗଲା । ଗର୍ଭାଶୟରେ ସେ ଅତ୍ୟନ୍ତ କଷ୍ଟ ପାଇଲେ । ସେଠାରେ କ୍ଳେଶରେ ରହି ମୁନି ଚିନ୍ତା କଲେ—'ହାୟ ! ମୁଁ ଏପରି କି ପାପ କରିଥିଲି ଯେ, ଏହି କୈବର୍ତ୍ତକନ୍ୟା ଗର୍ଭରେ ମୋତେ ରହିବାକୁ ପଡ଼ିଲା । ଏହାର ଶରୀରର ଆମିଷ ଗନ୍ଧରେ ମୋତେ ଆଜି ନରକ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଲା । ମୋର ଶୁଭକର୍ମକୁ, ସଂଯମ ଓ ସଦାଚାରକୁ, ତପସ୍ୟା ଓ ବ୍ରତାଦିକୁ ଶତଧିକ୍ । ଜୀବନସାରା ତପସ୍ୟା କରିବାର ଫଳ କ'ଣ ନର୍କବାସ ? ଏଠାରେ ମୁଁ ଟିକିଏ ହେଲେ ହଲଚଲ ହୋଇପାରୁ ନାହିଁ କି କାହାରିକୁ କିଛି କହିପାରୁ ନାହିଁ । ନିଜକୁ ରକ୍ଷା କରିପାରୁ ନାହିଁ । ହାୟ ! ମୋତେ ଭଗବାନଙ୍କର ଦର୍ଶନ ମିଳିଥିଲା, ସେ ବର୍ତ୍ତମାନ କେଉଁଠି ? କ'ଣ କରିବି. କେଉଁଠାକୁ ଯିବି, ମୋତେ ଏବେ କିଏ ରକ୍ଷା କରିବ ?' ଏହିକଥା ସେ ସର୍ବଦା ଭାବିବାକୁ ଲାଗିଲେ ।

ସୂତ କହିଲେ—''ମୁନିଗଣ ! ଗର୍ଭରେ ରହି ସେହି ବ୍ରାହ୍ମଣ ଦିନରାତି ଏହିକଥା ଚିନ୍ତା କରୁଥିଲେ । ହଠାତ୍ ଦିନେ କୈବର୍ତ୍ତକନ୍ୟାର ଗର୍ଭଯନ୍ତ୍ରଣା ହେଲା । ସେ ବିକଳ ହୋଇ ଚିତ୍କାର କରିବାକୁ ଲାଗିଲା । ବନ ମଧ୍ୟରେ ସଙ୍ଗେ ସଙ୍ଗେ ସେ ବ୍ରାହ୍ମଣକୁ କନ୍ୟାରୂପରେ ପ୍ରସବ କଲା । ଜନ୍ମ ହେବାକ୍ଷଣି ସେ ପୂର୍ବକଥା ସବୁ ଭୁଲିଗଲା । ସେ ସେହି କୈବର୍ତ୍ତ ଘରେ ବଢ଼ିବାକୁ ଲାଗିଲା । କ୍ରମେ କନ୍ୟା ବଡ଼ ହେବାରୁ ସେଠାରେ ମାଛ, ମାଂସ ଆଦି ଖାଇଲା ଓ ମଦ୍ୟ ବି ପାନ କଲା । ନଦୀକୁ ଯାଇ ସେ ମାଛଧରି ଆଣିଲା । ସେ ପ୍ରାପ୍ତବୟସ୍କା ହେବାରୁ କୈବର୍ତ୍ତ ଅନ୍ୟଏକ କୈବର୍ତ୍ତର ପୁତ୍ର ସହିତ ତାହାର ବିବାହକାର୍ଯ୍ୟ ସମ୍ପନ୍ନ କରିଦେଲା । ଉଭୟେ ଯୌବନାବସ୍ଥାରେ ରଙ୍ଗ ରହସ୍ୟରେ କଟାଇଲେ । ଖାଦ୍ୟାଖାଦ୍ୟ, ପେୟାପେୟ ତଥା ଗମ୍ୟାଗମ୍ୟ ଆଦିର କୌଣସି ବାଛବିଚାର ରହିଲା ନାହିଁ । ତାଙ୍କର ପ୍ରତିବର୍ଷ ଏକ ସନ୍ତାନ ଜାତ ହେଲା । ବହୁତ ପିଲାଝିଲା ହେଲେ । ବିଚାରୀ ଏହି କୈବର୍ତ୍ତକନ୍ୟାକୁ ପିଲାମାନଙ୍କର ସମସ୍ତ ଅଳିଅର୍ଦ୍ଦଳି ସହିବାକୁ ପଡ଼ିଲା । ମଳମୂତ୍ରାଦି ସଫା କରିବାକୁ ପଡ଼ିଲା । କ୍ରମେ ସମସ୍ତ ଦୁଃଖ କଷ୍ଟକୁ ସେ ଆଦରି ନେଇ ସେଥିରେ ସୁଖୀ ହେଲା ।

ସେ ଦିନେ ପିଲାଙ୍କର ମଳମୂତ୍ର କପଡ଼ା ଧୋଇ ସଫା କରିବା ପାଇଁ ଅଳକାନନ୍ଦା କୂଳକୁ ଯାଇଥିଲା । ଗ୍ରୀଷ୍ମଋତୁ ହୋଇଥିବାରୁ ତା ଦେହରୁ ଗମ୍ ଗମ୍ ଝାଳ ବୋହୁଥାଏ । ସେ ଚିନ୍ତାକଲା—'ଆଜି ମୁଁ ଯାଉଛି ନଦୀରେ ମୁଣ୍ଡବୁଡ଼ାଇ ଭଲଭାବେ ଗାଧୋଇ ପଡ଼ିବି ।' ଏହା ଭାବି ସେ ଯେତେବେଳେ ନଦୀରେ ବୁଡ଼ ପକାଇଲା, ସେତେବେଳେ ସେ ସ୍ତ୍ରୀଲୋକ ହୋଇ ଆଉ ରହିଲା ନାହିଁ । ସଙ୍ଗେ ସଙ୍ଗେ ସୋମଶର୍ମା ପାଲଟିଗଲା । ପାଣିରୁ ଉଠି ସେହି ସୋମଶର୍ମା ଏବେ ଦେଖିଲେ ସେ ତାଙ୍କର ଦଣ୍ଡ-କମଣ୍ଡଳୁ ଯେଉଁଠାରେ ରଖିଥିଲେ ସେଠାରେ ସେହିପରି ଅଛି । ବସ୍ତ୍ର ବି ଅଛି । ପୂର୍ବଭଳି ତାଙ୍କର ତପ ସ୍ୱାଧ୍ୟାୟ ଆଦି ସ୍ମରଣ ହେଉଛି । ସେ ଓଦାଲୁଗାକୁ ପାଲଟି ପକାଇ ଶିରରେ ଗଙ୍ଗାମୃତ୍ତିକା ଧାରଣ କଲେ, ଦଣ୍ଡ-କମଣ୍ଡଳୁ ହସ୍ତରେ ଧାରଣ କଲେ ଓ ବ୍ରହ୍ମଚିନ୍ତନ କରିବାକୁ ଲାଗିଲେ । ତାଙ୍କର ସ୍ତ୍ରୀ-ଶରୀର ଧାରଣର ସମସ୍ତ ବୃତ୍ତାନ୍ତ ସ୍ମରଣ ଥିଲା । ସେ ଚିନ୍ତା କଲେ—'ମୋର ଏପରି କେଉଁ ପାପର ଫଳ ଭୋଗ କରିବାକୁ ଥିଲା ଯେ, ମୋତେ କୈବର୍ତ୍ତଘରେ ଜନ୍ମ ହେବାକୁ ପଡ଼ିଲା । ପୁନଶ୍ଚ ପୁରୁଷ ନ ହୋଇ ମୁଁ ନାରୀ ଶରୀର ଧରି ସେଠାରେ ଜନ୍ମ ହେଲି । କେତେ ଜୀବହିଂସା କଲି, କେତେ ଅଭକ୍ଷ ଭକ୍ଷଣ କଲି, କେତେ ଅପେୟ ପଦାର୍ଥ ପାନ କଲି । ପୁରୁଷଙ୍କ ସଙ୍ଗେ ଗମନା ଗମନର ସୁଯୋଗ ପାଇଲି ନାହିଁ । କେତେ ଗାଳିଗୁଲଜ କଲି । କୈବର୍ତ୍ତ ଯୁବକକୁ ବିବାହ କରି କେତେ ପୁତ୍ରକନ୍ୟା ପ୍ରସବ କଲି । ଏପରି କେଉଁ ଦୁଷ୍କର୍ମରୁ ମୋର ଦଶା ଏପରି ହେଲା ଯେ, ମୋତେ ଏତେ ନାରକୀୟ ଯାତନା ଭୋଗ କରିବାକୁ ପଡ଼ିଲା ?'

ସୂତ କହିଲେ—''ମୁନିଗଣ ! ତପସ୍ୱୀ ସୋମଶର୍ମା ଏହିପରି ବିଚାର କରୁଥିବା ସମୟରେ ପୂର୍ବରୁ ତାଙ୍କୁ ବିବାହ କରିଥିବା କୈବର୍ତ୍ତ ଯୁବକ ଅତ୍ୟନ୍ତ କ୍ରୋଧଭରା ଦୁଃଖିତ ଚିତ୍ତରେ ନଦୀ କୂଳରେ ଆସି ପହଞ୍ଚିଗଲା । ତା ସଙ୍ଗରେ ଛୋଟ ଛୋଟ କେତେକ ପୁତ୍ରକନ୍ୟା ଥିଲେ । ସେଠାକୁ ଆସି ସେ ନିଜର ସ୍ତ୍ରୀକୁ ଏଣେତେଣେ ଖୋଜିବାକୁ ଲାଗିଲା । ସେ ଯେତେବେଳେ ସ୍ତ୍ରୀକୁ ଖୋଜି ଖୋଜି ନ ପାଇଲା, ସେତେବେଳେ ଅତ୍ୟନ୍ତ ବ୍ୟତିବ୍ୟସ୍ତ ହୋଇ ପଡ଼ିଲା । ସେ ତା ସମ୍ମୁଖରେ ତା ଘରର ସେହି ମାଠିଆକୁ ଦେଖିଲା, ଯାହାକୁ କି ତା'ର ସ୍ତ୍ରୀ ଜଳ ନେବାପାଇଁ ଆଣିଥିଲା । ଘରର ମଇଳା ଲୁଗାପଟା ମଧ୍ୟ ନଦୀ କୂଳରେ ସେହିପରି ଅଧୁଆ ପଡ଼ି ରହିଥିଲା । ତାହା ଦେଖି କୈବର୍ତ୍ତ ଯୁବକର ଛାତି ଫାଟିଗଲା ଭଳି ଜଣା ପଡ଼ିଲା । ସେ ମୁଣ୍ଡପିଟି କାନ୍ଦିବାକୁ ଲାଗିଲା । ବାରମ୍ବାର କହିବାକୁ ଲାଗିଲା—'ପ୍ରିୟେ ! ତୁମେ କେଉଁଠି ଅଛ ? ଦେଖ

ତୁମର ଏ ପିଲାଛୁଆ ଅନେକବେଳୁ ଭୋକିଲା ଅଛନ୍ତି, ସେମାନେ କାନ୍ଦୁଛନ୍ତି । ତୁମ ବିନା ଏମାନେ କିପରି ବଞ୍ଚିବେ ? ମୋର ସର୍ବସ୍ୱ ଚାଲିଗଲା । ମୁଁ ଏ ଘରସଂସାର ଏକୁଟିଆ କିପରି ଚଳାଇବି ?'

ତାହାର କରୁଣ ରୋଦନକୁ ଶୁଣି ଅନେକ ସ୍ତ୍ରୀ, ପୁରୁଷ ସେଠାରେ ଆସି ଜମା ହୋଇଗଲେ । ସମସ୍ତେ କହିଲେ—''ଗୋଡ଼ ଖସିଯାଇ ତୁମ ସ୍ତ୍ରୀ ନଦୀରେ ବୁଡ଼ି ଯାଇଥିବ ।''

କୈବର୍ତ୍ତ ଯୁବକ କାନ୍ଦି କାନ୍ଦି କହିଲା—''ସିଏ ତ ପହଁରା ଜାଣିଥିଲା । ବୁଡ଼ି ଯାଉଥିବାବେଳେ ପାଟି କରିଥିବ ନିଶ୍ଚୟ । ଲୋକ ତ ଆଖପାଖରେ ସ୍ନାନ କରୁଛନ୍ତି, ସେମାନେ ତ ତାହାର ଚିତ୍କାର ଶୁଣିପାରି ଧାଇଁ ଆସିଥାଆନ୍ତେ । କିମ୍ବା ତାହାର ଦେହ ତ ଭାସିବାର ଦେଖାଯାଆନ୍ତା । ସେ ସଙ୍ଗେ ସଙ୍ଗେ ତ ଆସିଥିଲା । ଏହା ହୋଇପାରେ କୌଣସି ମଗର ସଙ୍ଗେ ସଙ୍ଗେ ଟାଣିନେଇ ବୋଧହୁଏ ତାକୁ ଖାଇଗଲା ।''

ଏହା ଶୁଣି ଜଣେ ବୃଦ୍ଧା ତାକୁ ପଚାରିଲେ—''ଘରେ ତ ତୁମର କୌଣସି କାରଣରୁ କଳିଗୋଳ ଲାଗି ନଥିଲା ? ତୁମେ ତାକୁ ଗାଳିଗୁଲଜ ତ କରି ନଥିଲ ?''

କୈବର୍ତ୍ତ ଯୁବକ କାନ୍ଦ କାନ୍ଦ ହୋଇ କହିଲା—''ମୁଁ ତ ତାକୁ ପ୍ରାଣଠାରୁ ବଳି ଭଲ ପାଉଥିଲି । ସ୍ୱପ୍ନରେ ସୁଦ୍ଧା ତାକୁ କେବେ ମୁଁ କଟୁ ବଚନ କହି ନାହିଁ, ଜାଗ୍ରତ ତ ଦୂରର କଥା । ମୁଁ ଏବେ କ'ଣ କରିବି ? ମୋର ସର୍ବସ୍ୱ ଚାଲିଗଲା । କେଉଁ ପାପରୁ ମୋ ସ୍ତ୍ରୀର ଆଜି ବିନାଶ ଘଟିଲା ? ଏ ମାତୃହୀନ ବାଳକ ବାଳିକାମାନଙ୍କୁ ମୁଁ କିପରି ପାଳନ କରିବି ?''

ସେହି କୈବର୍ତ୍ତ ଯୁବକର କରୁଣ କ୍ରନ୍ଦନକୁ ଶୁଣି ଅନେକ ଲୋକ ତା ପ୍ରତି ସହାନୁଭୂତି ପ୍ରଦର୍ଶନ କରିବାକୁ ଲାଗିଲେ । ଅନେକ ଧୈର୍ଯ୍ୟ ଧରିବାକୁ କହିଲେ ଓ ଅନେକ ଲୋକ ସ୍ନାନ ସାରି ଚାଲିଗଲେ ।

ଯେଉଁ ସୋମଶର୍ମା କୈବର୍ତ୍ତ କନ୍ୟାରୁ ପୁନଶ୍ଚ ବ୍ରାହ୍ମଣ ହେଲେ, ସେ ସେହି କୈବର୍ତ୍ତ ଯୁବକକୁ କହିଲେ—''ଆରେ, ଭାଇ ! ଏବେ ଆଉ କ୍ରନ୍ଦନ କଲେ କ'ଣ ହେବ, ତୁମେ ଏ ପିଲାମାନଙ୍କୁ ଏବେ ଯତ୍ନ ସହକାରେ ପାଳନ କର । ଦୈବ ଅତ୍ୟନ୍ତ ବଳବାନ୍, ଆଉ ତୁମ ପତ୍ନୀକୁ ତୁମେ ପାଇବା ସମ୍ଭବ ନୁହେଁ ।''

ବ୍ରାହ୍ମଣଙ୍କ ବଚନ ଶୁଣି କୈବର୍ତ୍ତ ଯୁବକ କହିଲା—''ବ୍ରହ୍ମନ୍ ! ଆପଣ କିଏ ? ଆପଣ ତ ମୋତେ ଅତି ମଧୁର ବାଣୀରେ ସାନ୍ତ୍ୱନା ଦେଉଛନ୍ତି ।''

ବ୍ରାହ୍ମଣ କହିଲେ—''ଭାଇ ! ମୁଁ ନିଜେ ହିଁ ତୁମର ସେହି ସ୍ତ୍ରୀ ଥିଲି ।''

ଏହା ଶୁଣି କୈବର୍ତ୍ତ ଯୁବକ ଚମକି ପଡ଼ି କହିଲା—''ବିଶ୍ୱଦେବ ! ମୁଁ ତ ମୋ ସ୍ତ୍ରୀ ପାଇଁ ଏବେ ଦୁଃଖୀ, ଏତେବେଳେ ମୋତେ ଆପଣ ହସି ଉଡ଼ାଇ ଦେଉଛନ୍ତି କାହିଁକି ?''

ବ୍ରାହ୍ମଣ କହିଲେ—''ମୁଁ ଏହା ରହସ୍ୟରେ ତୁମକୁ କହୁ ନାହିଁ । ମୁଁ ତ ସତ୍ୟ କଥା କହୁଛି । ମୁଁ ତପସ୍ୱୀ ବ୍ରାହ୍ମଣ ଥିଲି, ଅଳକାନନ୍ଦାରେ ସ୍ନାନ କରୁ କରୁ ଏକ କୈବର୍ତ୍ତକନ୍ୟା ଗର୍ଭରେ ଯାଇ ପ୍ରବେଶ କଲି । ସେହି କୈବର୍ତ୍ତକନ୍ୟା ମୋତେ କନ୍ୟାରୂପରେ ଜନ୍ମ ଦେଲା । କିଛିଦିନ ପରେ ତୁମ ସହିତ ମୋର ବିବାହ ହେଲା । ତିନି ପୁତ୍ର ଓ ତିନି କନ୍ୟା ମୁଁ ଜନ୍ମ କଲି । ପଚାଶ ବର୍ଷ ପର୍ଯ୍ୟନ୍ତ ଏହି ସ୍ତ୍ରୀରୂପରେ ମୁଁ ରହିଲି । ଆଜି ସ୍ନାନ କରିବାକୁ ଆସି ନଦୀରେ ବୁଡ଼ ଦେବାମାତ୍ରେ ପୂର୍ବପରି ବ୍ରାହ୍ମଣ ଶରୀର ଧାରଣ କଲି । ମୁଁ ଯେଉଁଠାରେ ମୋର ବସ୍ତ୍ର ଓ ଦଣ୍ଡ-କମଣ୍ଡଳୁ ପୂର୍ବରୁ ରଖିଥିଲି, ତାହା ସେହିପରି ଥିଲା । ପଚାଶ ବର୍ଷ ପରେ ବି ବସ୍ତ୍ର ଟିକିଏ ହେଲେ ମଳିନ ହୋଇ ନଥିଲା କିମ୍ବା ବନ୍ୟାରେ ଭାସିଯାଇ ନଥିଲା । ଏହା ଅତି ଆଶ୍ଚର୍ଯ୍ୟ ବୋଧ ହେଉଛି ।''

ବ୍ରାହ୍ମଣ କୈବର୍ତ୍ତ ଯୁବକଙ୍କୁ ଏହିପରି କହୁଥିବା ସମୟରେ ଦେଖାଗଲା ସେଠାରେ ସେହି କୈବର୍ତ୍ତ ଯୁବକ ନାହିଁ କି ତାହାର ପିଲାଛୁଆ ନାହାନ୍ତି, ସେଠାକୁ କେତେକ ବ୍ରାହ୍ମଣ ଆସି ସେହି ତପସ୍ୱୀ ବ୍ରାହ୍ମଣଙ୍କୁ କହୁଛନ୍ତି—"ବ୍ରହ୍ମନ୍ ! ଆପଣ ଆଜି ପ୍ରାତଃକାଳରୁ ନଦୀକୁ ସ୍ନାନ କରିବାକୁ ଆସିଲେଣି, ଆପଣଙ୍କ ଦଣ୍ଡ-କମଣ୍ଡଳୁକୁ ଏଠାରେ ରଖି ସ୍ନାନ କରିବାକୁ ଜଳ ମଧ୍ୟରେ ପ୍ରବେଶ କରିଥିଲେ, ସ୍ନାନ କରୁ କରୁ ଅନେକ ବିଳମ୍ବ ହୋଇଗଲାଣି । ଏବେ ନିଜର ବସ୍ତ୍ର ଉଠାଇ ଆଣନ୍ତୁ ।"

ଏହା ଶୁଣି ତପସ୍ୱୀ ବ୍ରାହ୍ମଣ ଅତି ବିସ୍ମୟ ହୋଇ ଚିନ୍ତା କରିବାକୁ ଲାଗିଲେ—"ମୋତେ ଏବେ ପଚାଶ ବର୍ଷ ହୋଇଗଲା ମୁଁ କୈବର୍ତ୍ତକନ୍ୟା ଥିଲି । ଏମାନେ କହୁଛନ୍ତି ଯେ, ମୁଁ ଆଜି ପ୍ରାତଃକାଳରୁ ସ୍ନାନ କରିବାକୁ ଆସିଛି । ବ୍ରାହ୍ମଣ ଏହି କଥା ଚିନ୍ତା କରୁ କରୁ ଭଗବାନ ତାଙ୍କ ସମ୍ମୁଖରେ ଆବିର୍ଭାବ ହେଲେ । ସେ କାନ୍ଦି କାନ୍ଦି ଭଗବାନଙ୍କୁ ନିଜର ସମସ୍ତ ଦୁଃଖ ଜଣାଇଲେ ଓ ପଚାରିଲେ—"ପ୍ରଭୋ ! କେଉଁ ପାପକର୍ମ ଯୋଗୁ ମୋତେ କୈବର୍ତ୍ତକନ୍ୟା ହୋଇ ଏ ପ୍ରକାର ଯାତନା ଭୋଗ କରିବାକୁ ପଡ଼ିଲା ?"

ଭଗବାନ୍ ହସି ହସି କହିଲେ—"ବ୍ରହ୍ମନ୍ ! ଆପଣ ନିଷ୍ପାପ ଅଟନ୍ତି, ଆପଣ କିଛି ପାପ କରି ନାହାନ୍ତି । ଏହା ତ ମୋର ମାୟା ଥିଲା । ମାୟା ଦର୍ଶନ କରିବା ପାଇଁ ଆପଣ ଏକାନ୍ତ ଇଚ୍ଛା କଲେ । ଏଥିପାଇଁ ମୁଁ ମୋର ମାୟା ଆପଣଙ୍କୁ ଦର୍ଶନ କରାଇଲି । ଏବେ ଆଉ ଆପଣଙ୍କୁ ମାୟା କ୍ଳେଶ ଲାଗିବ ନାହିଁ ।" ଏହା କହି ଭଗବାନ୍ ଅନ୍ତର୍ଦ୍ଧାନ ହୋଇଗଲେ ।

ସୂତ କହିଲେ—"ମୁନିଗଣ ! ସୋମଶର୍ମାଙ୍କୁ ଯେପରି ଭଗବାନ୍ କିଛି ସମୟ ମଧ୍ୟରେ ପଚାଶ ବର୍ଷର ମାୟା ଦେଖାଇଲେ, ସେହିପରି ମାର୍କଣ୍ଡେୟ ମୁନିଙ୍କୁ ପ୍ରଳୟର କେତେକ ଦୃଶ୍ୟ ଅଳ୍ପ ସମୟ ମଧ୍ୟରେ ଦେଖାଇଥିଲେ । ବାସ୍ତବରେ ଏହା ଭଗବାନଙ୍କର ମାୟା ଥିଲା । କଳ୍ପ ଆଦି ସେତିକି ସମୟ ମଧ୍ୟରେ ପ୍ରକୃତରେ ବ୍ୟତୀତ ହୋଇ ନଥିଲା । ମାର୍କଣ୍ଡେୟ ତ ଏହି କଳ୍ପରେ ଆପଣମାନଙ୍କ ବଂଶରେ ଜନ୍ମ ହୋଇଛନ୍ତି । ବ୍ରହ୍ମନ୍ ! ମାୟାର ସ୍ୱରୂପ ଦୁର୍ବୋଧ । ଯାହାକିଛି ହେଉଅଛି, ତାହା ମାୟାଦ୍ୱାରା ହିଁ ହେଉଅଛି । ଗ୍ରୀଷ୍ମ କାଳରେ ଯେଉଁ ଗ୍ରୀଷ୍ମ ହେଉଅଛି, ବର୍ଷାଦିନେ ଯେଉଁ ମେଘ ବର୍ଷୁଛି, ଶୀତଦିନେ ଯେଉଁ ଶୀତ ହେଉଛି, ଶୁଷ୍କ ପୁଷ୍କରିଣୀ ଯେପରି ଜଳରେ ଭରିଯାଉଛି, ପୂର୍ଣ୍ଣ ଜଳାଶୟ ଯେପରି ଶୁଖି ଯାଉଛି, ପୂର୍ଣ୍ଣିମାରେ ଚନ୍ଦ୍ରମା ଯେପରି ପୂର୍ଣ୍ଣ ହେଉଛନ୍ତି ଓ ଅମାବାସ୍ୟା ପର୍ଯ୍ୟନ୍ତ ପୁନଶ୍ଚ କ୍ରମେ ଯେପରି କ୍ଷୀଣ ହେଉଛନ୍ତି, ପ୍ରାତଃକାଳରେ ଯେପରି ସୂର୍ଯ୍ୟ ଉଦୟ ହେଉଛନ୍ତି ଓ ମଧ୍ୟାହ୍ନରେ ମୁଣ୍ଡ ଉପରକୁ ଉଠି ପୁନଶ୍ଚ ଯେପରି ସାୟଂ କାଳରେ ଅସ୍ତ ହୋଇ ଯାଉଛନ୍ତି । ଖରାଦିନେ ଯେପରି କୂପଜଳ ଥଣ୍ଡା ରହୁଛି ଓ ଶୀତଦିନେ ଉଷୁମ ରହୁଛି, ଏ ସମସ୍ତ ହେଉଛି ଭଗବାନଙ୍କର ମାୟା । ମୁନିବର ! ଦେଖନ୍ତୁ ଏକ କ୍ଷୁଦ୍ର ବଟବୀଜରୁ କିପରି ବିଶାଳ ବଟବୃକ୍ଷ ହେଉଛି, ଏହା ଭଗବାନଙ୍କର ମାୟାର ଯାଦୁକରୀ । ସ୍ତ୍ରୀ ପୁରୁଷଙ୍କ ରଜବୀର୍ଯ୍ୟରୁ ପୁନଶ୍ଚ କିପରି ସ୍ତ୍ରୀ ପୁରୁଷ ସୃଷ୍ଟି ହେଉଛନ୍ତି ଓ ଜନ୍ମ ହେବା ସମୟରେ ଏତେ ଛୋଟରୁ କିପରି ବଡ଼ ହେଉଛନ୍ତି, ଏ ସମସ୍ତ ଭଗବାନଙ୍କର ମାୟା । ମନଦ୍ୱାରା, ଇନ୍ଦ୍ରିୟଦ୍ୱାରା ଯାହାକିଛି ଆମ୍ଭେମାନେ ଦେଖୁଛୁ ଅନୁଭବ କରୁଛୁ ସେ ସମସ୍ତ ଏହି ମାୟାର ଯାଦୁକରୀ । ଏ ବିଶ୍ୱପ୍ରପଞ୍ଚ ଭଗବାନଙ୍କ ମାୟାଦ୍ୱାରା ହିଁ ପରିଚାଳିତ ହେଉଅଛି ।

ମୁନିଗଣ ! ମାର୍କଣ୍ଡେୟ ମୁନି ଯେତିକି ପ୍ରଳୟ ଦୃଶ୍ୟ ଦେଖିଥିଲେ, ସେ ସମସ୍ତ ଭଗବାନଙ୍କ ମାୟାର ଖେଳ ଥିଲା । କିନ୍ତୁ ଯେଉଁମାନେ ଏହି ରହସ୍ୟକୁ ନ ଜାଣନ୍ତି, ସେମାନେ ଏହାକୁ ସାତ କଳ୍ପର ସାତ ପ୍ରଳୟ ବୋଲି ମନେ କରିଥାଆନ୍ତି ଓ ବର୍ଣ୍ଣନା କରିଥାଆନ୍ତି । ମୁଁ ଅତି ସଂକ୍ଷେପରେ ଭଗବାନ୍ ମାର୍କଣ୍ଡେୟଙ୍କର ପୁଣ୍ୟ ଚରିତ୍ର ବର୍ଣ୍ଣନ କଲି । ଯେଉଁମାନେ

ଭଗବାନଙ୍କ କୃପାରୁ ଏହି ପାବନ ଚରିତ୍ରକୁ ପାଠ କରିବେ, ସେମାନଙ୍କର କର୍ମବାସନା ସମୂଳେ ନଷ୍ଟ ହୋଇଯିବ । ସେମାନେ ଜନ୍ମମୃତ୍ୟୁରୂପକ ସଂସାରଚକ୍ରରୁ ଚିରଦିନ ପାଇଁ ମୁକ୍ତ ହୋଇ ଯିବେ । ସେମାନଙ୍କର ପୁନର୍ଜନ୍ମ ହେବ ନାହିଁ । ଏହି ମାର୍କଣ୍ଡେୟଙ୍କ ଚରିତ୍ର ଧନ୍ୟ, ଯଶ ଓ କୀର୍ତ୍ତି ପ୍ରଦାନକାରୀ, ଏଥିରେ ଶ୍ରୋତା ଓ ବକ୍ତାଙ୍କର ଆୟୁ ବୃଦ୍ଧି ହୁଏ, ସଂସାରଜନିତ କ୍ଳେଶ ଚିରଦିନ ପାଇଁ ଲୋପ ପାଇଯାଏ । ମୁଁ ଏହି ଭାଗବତ କଥା ଗ୍ରନ୍ଥର ଶେଷ ଭାଗରେ ଦୀର୍ଘଜୀବୀ ମାର୍କଣ୍ଡେୟ ମୁନିଙ୍କର ଚରିତ୍ର ସମସ୍ତଙ୍କ ମଙ୍ଗଳ ନିମିତ୍ତ ବର୍ଣ୍ଣନା କଲି । ଏବେ ଆପଣମାନେ ଆଉ କେଉଁ କଥା ଶୁଣିବାକୁ ଚାହୁଁଛନ୍ତି କହନ୍ତୁ ।

ଏହା ଶୁଣି ଶୌନକ କହିଲେ—''ହେ ସୂତ ! ଆମ୍ଭେମାନେ ଭଗବାନଙ୍କର ଅଙ୍ଗ ଉପାଙ୍ଗ ଓ ଆୟୁଧ ବିଷୟରେ ଜାଣିବାକୁ ଇଚ୍ଛା କରୁଛୁ । କେଉଁ କେଉଁ ସତ୍ତ୍ୱରୁ ଭଗବାନଙ୍କର କେଉଁ କେଉଁ ଅଙ୍ଗ ଉପାଙ୍ଗ ଓ ଆୟୁଧର କଳ୍ପନା କରାଯାଇଛି ତାହା କହନ୍ତୁ ।''

ସୂତ କହିଲେ—''ବ୍ରହ୍ମନ୍ ! ଏ ବିଷୟ ଅତ୍ୟନ୍ତ ଗୂଢ଼ । ଏହା ଅତି ଗୋପନୀୟ ଶାସ୍ତ୍ରର ବିଷୟବସ୍ତୁ । କେବଳ ଆପଣମାନେ ସାଧାରଣ ଭାବରେ ଜାଣିବା ପାଇଁ ମୁଁ ସଂକ୍ଷେପରେ ଏ ବିଷୟରେ ଦିଗ୍‌ଦର୍ଶନ ଦେଉଛି । ଆପଣମାନେ ସମାହିତ ଚିତ୍ତରେ ଏହା ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ହର ପ୍ରସନ୍ନ ଅତି ଭୟେ ଭକ୍ତି ବର ମୁନିଙ୍କୁ ଦୀୟୋ ।
ଦାନ୍ତେ ମୁନି ମନ ମୋଦ ଯଥୋଚିତ ପୂଜନ କୀୟୋ ॥
ମହିମା ଶିବ କେ ଅଧିକ ଭକ୍ତ ସନ୍ତନି ନୀ ଗାଇ ।
ଶିବ ମୁଖ ସେଂ ସ୍ତୁତି ବିନୟ ଲାଜ ମୁନି କୁଁ ଅତି ଆଇ ॥
ପୂଜିତ ବୈଷ୍ଣେଂ ଶିବା ସଂଗ, ପୁନି ଶିବ ଅନ୍ତରହିତ ଭୟେ ।
ବିନା ପ୍ରଳୟ ହି ଧ୍ୟାନ ମେଂ, ମୁନି ମାୟା ଦରଶନ କିୟେ ॥



# ଭଗବାନଙ୍କ ଅଙ୍ଗ ଉପାଙ୍ଗ ଆୟୁଧାଦି ରୂପକ ବିଭୂତି

**ନମସ୍କୃତ୍ୟ ଗୁରୂନ୍‌ବକ୍ଷ୍ୟେ ବିଭୂତୀର୍ବୈଷ୍ଣବୀରପି ।**
**ଯାଃ ପ୍ରୋକ୍ତା ବେଦତନ୍ତ୍ରାଭ୍ୟାମାଚର୍ଯୈଃ ପଦ୍ମଜାଦିଭିଃ ॥** ★
(ଶ୍ରୀ ଭା: ୧୨ସ୍କ: ୧୧ଅ: ୪ଶ୍ଳୋକ)

★ ସୂତ ଉବାଚ :

ଏ ବିଷ୍ଣୁପୂଜାର ବିଶେଷ । ଯେ ଗୁରୁ ଜ୍ଞାନ ଉପଦେଶ ॥
ବ୍ୟାସାଦି ଗୁରୁ ନମସ୍କାରି । ବିଭୂତି କହିବା ବିସ୍ତାରି ॥
ବ୍ରହ୍ମାଦି ଆଚାର୍ଯ୍ୟ ଯେମାନେ । ବେଦ ମନ୍ତ୍ରତନ୍ତ୍ର ବିଧାନେ ॥
କର୍ମତନ୍ତ୍ର ଭେଦଭାବରେ । ସେ ବିଧି ଶୁଣ ଏକତ୍ରରେ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୧ଅ.)

ଷଟ୍‌ପଦୀ

ଶୌନକ ପୃଛେଂ—ସୂତ ! ପାଞ୍ଚରାତ୍ରାଦି ବନ୍ଦନା ।
ଅଙ୍ଗ ଉପାଙ୍ଗନି ସହିତ କରେଂ କଁସ କୃଷ୍ଣ ଅର୍ଚନା ।।
କ୍ରିୟାଯୋଗ କୋ ଫେରି ହମେଂ ବିସ୍ତାର ବତାବେଂ ।
ସୂତ କହେଂ—ମୁନି କର୍ମକାଣ୍ଡ କୋ ପାର ନ ପାବେଂ ।।
ହରିମୟ ଜଗ କୁଁ ଜନିକେଂ, କରେଂ କଳ୍ପନା ଅଙ୍ଗ ମେଂ ।
ତତ୍ତ୍ୱ ଭାବନି କେ ସହିତ, ପୃଥୈ ସବ କୁଁ ସଙ୍ଗ ମେଂ ।।

ମୃତ୍ତିକାଦ୍ୱାରା ନିର୍ମିତ ସମସ୍ତ ପଦାର୍ଥ ହିଁ ମୃତ୍ତିକାମୟ । କାଷ୍ଠ ନିର୍ମିତ ବସ୍ତୁ ଉପର ତଳ ସର୍ବତ୍ର କାଷ୍ଠମୟ । ଚିନିରେ ପ୍ରସ୍ତୁତ ଖେଳାନାର ବାହାର ଭିତର, ତଳ ଉପର ସର୍ବତ୍ର ଚିନିମୟ । ସେହିପରି ଭଗବାନ୍ ବିଷ୍ଣୁଙ୍କଦ୍ୱାରା ନିର୍ମିତ ସମସ୍ତ ଜଗତରେ ବିଷ୍ଣୁ ହିଁ ବ୍ୟାପ୍ତ । ତାଙ୍କର ଅଚିନ୍ତ୍ୟ ଶକ୍ତି ମହାବିଭୂତି ହିଁ ସର୍ବତ୍ର କାର୍ଯ୍ୟ କରୁଅଛି । ଏଥିପାଇଁ ଭଗବାନଙ୍କର ଅଙ୍ଗ, ଉପାଙ୍ଗ, ଅସ୍ତ୍ର ଆୟୁଧର ସମଗ୍ର ଜଗତର ମୁଖ୍ୟ ତତ୍ତ୍ୱ ସହିତ ତୁଳନା କରାଯାଇଛି ।

ସୂତ କହିଲେ—"ମୁନିଗଣ ! ଆପଣମାନେ ମୋତେ ଭଗବାନଙ୍କର କରଚରଣ ଆଦି ଅଙ୍ଗ, ଗରୁଡ଼ ଆଦି ଉପାଙ୍ଗ, ସୁଦର୍ଶନ, ଅସି, ଶାର୍ଙ୍ଗ ଧନୁ ଆଦି ଆୟୁଧ ଓ କୌସ୍ତୁଭ ମୁକୁଟାଦି ଆଭୂଷଣଗୁଡ଼ିକର କଳ୍ପନା ଜଗତର କେଉଁ କେଉଁ ତତ୍ତ୍ୱ ସହିତ କରାଯାଇଛି ଏହି ପ୍ରଶ୍ନ କରିଥିଲେ, ତାହାର ଉତ୍ତର ମୁଁ ସଂକ୍ଷେପରେ ଦେଉଅଛି ।"

ଶୌନକ ପଚାରିଲେ—"ହେ ସୂତ ! ଏହି ବିଶ୍ୱରେ ବାସ୍ତବରେ କ'ଣ ଅଛି ?"

ସୂତ କହିଲେ—"ମହାରାଜ ! ଏସବୁ ଭଗବାନଙ୍କ ମାୟାର ଯାଦୁକରୀ । ପ୍ରକୃତି ହିଁ ବିକୃତ ରୂପରେ ଏହି ବିଶ୍ୱବ୍ରହ୍ମାଣ୍ଡ ରୂପରେ ଦେଖାଦେଉଛି । ଚେତନାର ଅଧିଷ୍ଠାନରୁ ଏହି ବିଶ୍ୱଚୈତନ୍ୟ ଦୃଶ୍ୟମାନ ହେଉଛି । ଦାର୍ଶନିକଗଣ ଏଥିରେ ମୁଖ୍ୟ ପଚିଶ ତତ୍ତ୍ୱ ଥିବାର ସ୍ୱୀକାର କରିଛନ୍ତି । ପ୍ରକୃତି, ସୂତ୍ରାତ୍ମା, ମହତତ୍ତ୍ୱ, ଅହଂକାର, ଶବ୍ଦ, ରୂପ, ରସ, ଗନ୍ଧ ଓ ସ୍ପର୍ଶ ଏ ହେଉଛି ନଅଟି ତତ୍ତ୍ୱ । ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଓ ମନ, ପୃଥ୍ୱୀ, ଜଳ, ତେଜ, ବାୟୁ, ଓ ଆକାଶ ଏ ପଞ୍ଚଭୂତ ଏହିପରି ଷୋହଳ ତତ୍ତ୍ୱ ଏବଂ ଉପରୋକ୍ତ ନଅ ତତ୍ତ୍ୱ ମିଶି ସମୁଦାୟ ପଚିଶ ତତ୍ତ୍ୱ । ଏହି ୨୫ ତତ୍ତ୍ୱରେ ସମସ୍ତ ଦୃଶ୍ୟପ୍ରପଞ୍ଚ ନିର୍ମିତ ହୋଇଛି । ଏସବୁକୁ ଭଗବାନଙ୍କ ସ୍ୱରୂପରେ ଦେଖିବାକୁ ହେବ । ଏହା ହିଁ ଚରମ ସାଧନା ଓ ପରମ ପୁରୁଷାର୍ଥ ଅଟେ । ଭଗବାନଙ୍କର ଅଙ୍ଗ, ଉପାଙ୍ଗ, ଆଭୂଷଣ ଓ ଆୟୁଧରେ ଏହି ସତ୍ତ୍ୱଗୁଡ଼ିକୁ କଳ୍ପନା କରାଯାଇଛି । ଏହି ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ସେହି ଅଚିନ୍ତ୍ୟ ଭୂମା ବିରାଟ୍ ପୁରୁଷଙ୍କର ସାକାର ସ୍ୱରୂପ ଅଟେ ।"

ଶୌନକ କହିଲେ—"ସୂତଜୀ ! ତାହାହେଲେ ଆପଣ ପ୍ରଥମେ ଭଗବାନଙ୍କର ଅଙ୍ଗ ସମ୍ବନ୍ଧରେ କହନ୍ତୁ । ତାଙ୍କର କେଉଁ ଅଙ୍ଗରେ କେଉଁ ତତ୍ତ୍ୱ କଳ୍ପନା କରାଯାଇଛି ତାହା ଜାଣିବାକୁ ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା ।"

ସୂତ କହିଲେ—"ମହାରାଜ ! ଅଙ୍ଗ ଗଣନାରେ ଦୁଇଟି କଳ୍ପନା ରହିଛି । କେହି ଶିଖାଠାରୁ ଆରମ୍ଭ କରି ନଖ ପର୍ଯ୍ୟନ୍ତ ବର୍ଣ୍ଣନା କରିଛନ୍ତି ତ କେହି ନଖଠାରୁ ଆରମ୍ଭ କରି କ୍ରମଶଃ ଶିଖା ପର୍ଯ୍ୟନ୍ତ । ମୁଁ ଭଗବାନଙ୍କ ଚରଣଠାରୁ ହିଁ ଆରମ୍ଭ କରୁଛି । ପୃଥ୍ୱୀତତ୍ତ୍ୱ ହିଁ ଭଗବାନଙ୍କର ଚରଣ । ଭଗବାନଙ୍କ ଚରଣରେ ପୃଥ୍ୱୀର କଳ୍ପନା କରନ୍ତୁ । ଉପସ୍ଥରେ ପ୍ରଜାପତି ବ୍ରହ୍ମାଙ୍କର କଳ୍ପନା କରନ୍ତୁ, ଗୁଦାରେ ମୃତ୍ୟୁର, ନାଭିରେ ଆକାଶର, ଚାରି ଲୋକପାଳ ହିଁ ଚାରି ଭୁଜ ବୋଲି ଜାଣନ୍ତୁ ।

ଭଗବାନଙ୍କର ତଳ ଓଠ ଲୋଭ, ଉପର ଓଠ ଲଜ୍ଜା । ଚନ୍ଦ୍ରିକା ହେଉଛି ଦନ୍ତ, ହସିବା ଭ୍ରମ, ବାୟୁ ହେଉଛି ନାସିକା, ସୂର୍ଯ୍ୟ ନେତ୍ର ଓ ଦିଗମାନ କର୍ଣ୍ଣ ଅଟେ । ଭ୍ରୂଲତା ହେଉଛନ୍ତି ଯମରାଜ । ଚନ୍ଦ୍ରମାଙ୍କୁ ଭଗବାନଙ୍କର ମନସ୍ଥାନୀୟ କୁହାଯାଇଛି । ଏହି ପ୍ରକାର ଯାହା ବ୍ୟଷ୍ଟିରେ ରହିଛି, ତାହା ସମଷ୍ଟିରେ ଓ ଯାହା ପିଣ୍ଡରେ ତାହା ହିଁ ବ୍ରହ୍ମାଣ୍ଡରେ ରହିଛି । ପ୍ରତ୍ୟେକ ପୁରୁଷ ନିଜ ହାତଚାଖଣ୍ଡରେ ସାତ ଚାଖଣ୍ଡ ବା ତିନିହାତ ଅଧେ । ଇହଲୋକରେ ମହତତ୍ତ୍ୱ, ଅହଂତତ୍ତ୍ୱ ଓ ପଞ୍ଚଭୂତ ଏହି ସାତଟି ତତ୍ତ୍ୱ ରହିଛି । ସେହି ମାପରେ ଏହି ବ୍ରହ୍ମାଣ୍ଡ । ମୁଁ ସଂକ୍ଷେପରେ ଭଗବାନଙ୍କ ଅଙ୍ଗରେ ଯେଉଁ ତତ୍ତ୍ୱର କଳ୍ପନା କରାଯାଇଛି, ତାହା ବର୍ଣ୍ଣନା କଲି । ବର୍ତ୍ତମାନ ଏହି ଅଙ୍ଗରେ ଯେଉଁସବୁ ମୁଖ୍ୟ ଆଭୂଷଣ ଭଗବାନ୍ ପରିଧାନ କରିଛନ୍ତି ସେ ସମ୍ବନ୍ଧରେ ମଧ କହୁଛି ଶୁଣନ୍ତୁ ।

''ଭଗବାନଙ୍କର ମୁଖ୍ୟ ଆଭୂଷଣ ହେଉଛି କୌସ୍ତୁଭ ମଣି । ମଣି ହେଉଛି ଭଗବାନଙ୍କର ନିଜର ବିଶୁଦ୍ଧ ଆତ୍ମଜ୍ୟୋତି । ଆତ୍ମଜ୍ୟୋତି ରୂପରେ ତାହା କଳ୍ପନା କରନ୍ତୁ । ଭଗବାନଙ୍କ ବକ୍ଷସ୍ଥଳରେ ଶ୍ରୀବତ୍ସଲାଞ୍ଛନ ହେଉଛି ମୁଖ୍ୟ ଶୋଭା । ସର୍ବବ୍ୟାପିନୀ ପ୍ରଭାରେ ସେହି ଶ୍ରୀବତ୍ସର କଳ୍ପନା କରନ୍ତୁ । ଭଗବାନଙ୍କର ଆପାଦଲମ୍ବିତ ଯେଉଁ ବନମାଳା, ତାହା ମଧ ପରମ ଶୋଭାଯୁକ୍ତ । ତାଙ୍କର ଏହି ନାନା ଗୁଣମୟୀ ମାୟାକୁ ବନମାଳା ରୂପରେ ଆପଣମାନେ ଧ୍ୟାନ କରନ୍ତୁ । ଭଗବାନଙ୍କ ପୀତାମ୍ବର ହେଉଛି ବେଦମୟ । ଯେପରି ବେଦ ପ୍ରକାଶ କରେ, ସେହିପରି ପୀତାମ୍ବରର ପ୍ରଭା ମଧ ଭକ୍ତମାନଙ୍କର ହୃଦୟାକାଶର ଅନ୍ଧକାରକୁ ଦୂର କରିଦିଏ ।

''ଭଗବାନଙ୍କର ତିନିପଟ ପଇତା ତିନିବର୍ଣ୍ଣ ବିଶିଷ୍ଟ ଓଁକାର ବୋଲି ଜାଣନ୍ତୁ । ଭଗବାନଙ୍କ ଦୁଇ କର୍ଣ୍ଣରେ ଯେଉଁ ଦିବ୍ୟ ମକରକୁଣ୍ଡଳ ତାକୁ ସାଂଖ୍ୟ ଓ ଯୋଗ ରୂପରେ ବିଚାର କରନ୍ତୁ । ଭଗବାନଙ୍କର କୀରିଟକୁ ବ୍ରହ୍ମପଦ ବୋଲି କଳ୍ପନା କରନ୍ତୁ । ଭଗବାନ ଶେଷ ଶଯ୍ୟାରେ ସର୍ବଦା ବିରାଜମାନ କରନ୍ତି । ମୂଳ ପ୍ରକୃତି ହିଁ ତାଙ୍କର ଅନନ୍ତ ନାମକ ଆସନ । ଏକ ହାତରେ ଭଗବାନ୍ କ୍ରୀଡ଼ା-କମଳକୁ ଦୋଳାଉଥାଆନ୍ତି । ଧର୍ମଜ୍ଞାନାଦି ବିଶିଷ୍ଟ ସତ୍ତ୍ୱଗୁଣ ହିଁ ତାଙ୍କର କମଳ । ଏବେ ଆପଣମାନେ ଭଗବାନଙ୍କ ଆୟୁଧ ସମ୍ବନ୍ଧରେ ଶୁଣିଲେ ।

''ଭଗବାନଙ୍କ ହାତରେ ରକ୍ତରଞ୍ଜିତ ଗଦା ରହେ । ତାହା ତାଙ୍କର ମୁଖ୍ୟ ଆୟୁଧ । ଏହା ଓଜସହ ବଳଯୁକ୍ତ ପ୍ରାଣତତ୍ତ୍ୱ ଅଟେ । ତାହା ହିଁ ତାଙ୍କର କୌମୋଦିକୀ ଗଦା । ଜଳତତ୍ତ୍ୱ ହିଁ ପାଞ୍ଚଜନ୍ୟ ଶଙ୍ଖ । ତେଜସ୍ତତ୍ତ୍ୱର ପ୍ରତୀକ ତାଙ୍କ ସୁଦର୍ଶନଚକ୍ର । ଯେଉଁଠି ଭଗବାନଙ୍କର ଅଷ୍ଟବାହୁ ବୋଲି କୁହାଯାଇଛି, ସେଠାରେ ଚତୁର୍ଭୁଜରେ ତ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଏହି ଚାରିଟି ବସ୍ତୁ ରହିଛି, ଅନ୍ୟ ଚାରିଟି ଭୁଜରେ ଖଡ୍‌ଗ, ଢ଼ାଲ, ଧନୁ ଓ ବାଣ ଏହି ଚାରି ଆୟୁଧ ରହିଛି । ଏହି ଶେଷ ଚାରି ଆୟୁଧର ତତ୍ତ୍ୱ ହେଉଛି—ଖଡ୍‌ଗ=ଆକାଶ, ଚର୍ମ=ଅନ୍ଧକାର, ଶାର୍ଙ୍ଗଧନୁ=କାଳ ଓ ବାଣ=ଇନ୍ଦ୍ରିୟ ସକଳ । ଯେଉଁଥିରେ ବାଣ ରଖାଯାଏ, ସେହି ତୁଣୀରକୁ କର୍ମ ରୂପେ ସ୍ୱୀକାର କରାଯାଇଛି ।

''ଭଗବାନ୍ ରଥରେ ବିରାଜମାନ କରୁଥିବାର ବର୍ଣ୍ଣନା ଅଛି । କ୍ରିୟାଶକ୍ତିଯୁକ୍ତ ମନ ହିଁ ତାଙ୍କର ରଥ । ପଞ୍ଚ ତନ୍ମାତ୍ରା ହେଉଛି ରଥର ବାହ୍ୟଭାଗ । ଭଗବାନ୍ ଯେଉଁ ଅଭୟ ଆଦି ମୁଦ୍ରା ଧାରଣ କରି ବିରାଜମାନ କରନ୍ତି, ସେହି ମୁଦ୍ରା ହେଉଛି ରଥର କ୍ରିୟାଶୀଳତା । ସୂର୍ଯ୍ୟ ଅଥବା ଅଗ୍ନିମଣ୍ଡଳକୁ ଭଗବାନଙ୍କର ପୂଜାର ସ୍ଥାନ ଓ ଚିତ୍ତଶୁଦ୍ଧିକୁ ମନ୍ତ୍ରଦୀକ୍ଷାର ସ୍ଥାନ ବୋଲି କୁହାଯାଇଛି । ପାପ ବିନାଶ କରିବାକୁ ଭଗବାନଙ୍କର ସେବା ବୋଲି କୁହାଯାଇଛି ।

''ମୁନିଗଣ ! ଆପଣମାନେ 'ଭଗବାନ୍' ଶବ୍ଦର ଅର୍ଥ ତ ଜାଣନ୍ତି । ଐଶ୍ୱର୍ଯ୍ୟ, ଧର୍ମ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ ଏହି ଛଅଟି ବସ୍ତୁର ନାମ ଭଗ । ଏ ସମସ୍ତ ଏକାଧାରରେ

ଯାହାଙ୍କଠାରେ ଅଛି, ତାଙ୍କୁ ଭଗବାନ୍ ବୋଲି କୁହାଯାଏ । ଭଗବାନ୍ ଯେଉଁ କ୍ରୀଡ଼ା-କମଳ ଧାରଣ କରିଛନ୍ତି ତାହା ହିଁ ତାଙ୍କର ଐଶ୍ୱର୍ଯ୍ୟାଦି ଛଗୁଣ । ଧର୍ମ ଓ ଯଶକୁ ଚାମର ତଥା ବ୍ୟଜନ ରୂପରେ ବୁଝିବା ଉଚିତ୍ । ରଥର ଛତ୍ରକୁ ଭଗବାନଙ୍କର ବୈକୁଣ୍ଠଧାମ ବୋଲି ଜାଣିବେ ।

''ଏବେ ଉପାଙ୍ଗ କଥା ଶ୍ରବଣ କରନ୍ତୁ । ଋକ୍, ଯଜୁ ଓ ସାମ ଏହାକୁ ବେଦତ୍ରୟୀ କୁହାଯାଏ । ଗରୁଡ଼ ହେଉଛନ୍ତି ବେଦତ୍ରୟୀର ସ୍ଥାନ, ଯେହେତୁ ସେ ଯଜ୍ଞପୁରୁଷ ଭଗବାନଙ୍କୁ ବହନ କରନ୍ତି । ସେହି ଚିଦ୍‌ରୂପୀ ପରମାତ୍ମାଙ୍କର ଅବିଚଳିତ ଶକ୍ତିର ନାମ ଭଗବତୀ ଲକ୍ଷ୍ମୀ । ବିଶ୍ୱକ୍‌ସେନ ହେଉଛନ୍ତି ଭଗବାନଙ୍କର ସମସ୍ତ ପାର୍ଷଦଙ୍କ ମଧ୍ୟରେ ଶ୍ରେଷ୍ଠ । ପଞ୍ଚରାତ୍ରାଦି ଆଗମ ହେଉଛନ୍ତି ସ୍ୱୟଂ ବିଶ୍ୱକ୍‌ସେନ । ଅଣିମା ମହିମା ଆଦି ଅଷ୍ଟସିଦ୍ଧି ହେଉଛନ୍ତି ନନ୍ଦ ସୁନନ୍ଦାଦି ଅଷ୍ଟ ଦ୍ୱାରପାଳ ।

ଭଗବାନଙ୍କୁ ଚତୁର୍ବ୍ୟୂହ ରୂପରେ ପୂଜା କରାଯାଏ । କିଏ ସେ ହେଉଛନ୍ତି ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ । ଭକ୍ତଗଣ ଏହି ଚାରି ରୂପରେ ତାଙ୍କର ପୂଜା ଉପାସନା କରନ୍ତି । ଅର୍ଥ, ଇନ୍ଦ୍ରିୟ, ଆଶ୍ରୟ ଓ ଜ୍ଞାନ ରୂପରେ ବିଶ୍ୱ, ତୈଜସ୍, ପ୍ରାଜ୍ଞ ଓ ତୁରୀୟ ଏହି ବୃତ୍ତିଦ୍ୱାରା ତାଙ୍କୁ ଚିନ୍ତା କରାଯାଏ । ଏହି ଷଡ଼ୈଶ୍ୱର୍ଯ୍ୟ ସମ୍ପନ୍ନ ଚତୁର୍ବ୍ୟୂହ ଭଗବାନ୍ ଅଙ୍ଗ, ଉପାଙ୍ଗ, ଆୟୁଧ ଓ ଆଭୂଷଣଦ୍ୱାରା ଯୁକ୍ତହୋଇ ବିଶ୍ୱ-ତୈଜସ ପ୍ରାଜ୍ଞ ଓ ତୁରୀୟ ଏହି ଚାରି ସ୍ୱରୂପକୁ ଧାରଣ କରନ୍ତି ।

ଶୌନକ କହିଲେ—''ହେ ସୂତ ! ଆପଣ ଏହି ବିଷୟକୁ ଏତେ ସୂକ୍ଷ୍ମରେ କହୁଛନ୍ତି ଯେ, ତାହା ଆମ୍ଭେମାନେ ଭଲଭାବରେ ବୁଝି ପାରୁନାହୁଁ ।''

ସୂତ ହସି ହସି କହିଲେ—''ହଁ, ମହାରାଜ ! ଆପଣ ତ ସବୁକିଛି ଅବଗତ ହେଉଛନ୍ତି, କିନ୍ତୁ ବାସ୍ତବରେ ଏହି ବିଷୟ ଅତ୍ୟନ୍ତ ଗୂଢ଼ ଅଟେ । ଯିଏ ସମସ୍ତ ବେଦର ଉଦ୍ଭବସ୍ଥଳ, ଯାହାଙ୍କୁ ପ୍ରକାଶିତ କରିବାପାଇଁ ଅନ୍ୟ କୌଣସି ଉପକରଣର ଅପେକ୍ଷା କରାଯାଏ ନାହିଁ, ଯିଏ ସ୍ୱୟଂପ୍ରକାଶ ସ୍ୱରୂପ, ଯିଏ ନିଜ ମହିମାରେ ସ୍ୱୟଂ ପରିପୂର୍ଣ୍ଣ ଅଟନ୍ତି, ତାଙ୍କ ବିଷୟରେ ଏ କ୍ଷୁଦ୍ରପ୍ରାଣୀ ତର୍କ ବିତର୍କ କ'ଣ କେବେ କରିପାରିବ ? ଯଦି ଚ ସେ ଏକ, ତଥାପି ସୃଷ୍ଟି, ସ୍ଥିତି ଓ ପ୍ରଳୟ ପାଇଁ ବ୍ରହ୍ମା, ବିଷ୍ଣୁ ଓ ମହେଶ ଏହି ନାମକୁ ଧାରଣ କରିଛନ୍ତି । କୌଣସି ଅବସ୍ଥାରେ ତାଙ୍କର ଜ୍ଞାନ ଆବୃତ୍ତ ହୁଏ ନାହିଁ । ସେ ସଦା ଅଖଣ୍ଡ, ଏକରସ, ଅଦ୍ୱୟ ତଥା କେବଳ ହିଁ ରହନ୍ତି । ଭିନ୍ନ ଭିନ୍ନ ଶାସ୍ତ୍ରରେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ରୂପରେ ତାଙ୍କୁ ଭିନ୍ନ ପରି ବର୍ଣ୍ଣନା କରାଯାଇଛି । ପୁରାଣରେ ଏପରି ଅନେକ କଥା ଅଛି, ଯହିଁରେ କି ବର୍ଣ୍ଣିତ ଅଛି— ବ୍ରହ୍ମା, ବିଷ୍ଣୁ ଓ ମହେଶ ନିଜ ନିଜ ମଧ୍ୟରେ ଲଢ଼େଇ କରୁଥିଲେ, ପରସ୍ପର ପରସ୍ପରକୁ ପ୍ରହାର କରୁଥିଲେ । ଜଣେ ଜଣକୁ ନ୍ୟୁନଭାବେ ଦେଖୁଥିଲେ । କିନ୍ତୁ ଏଗୁଡ଼ିକ କେବଳ ବର୍ଣ୍ଣନାର ଶୈଳୀ, ଚରିତ୍ର ବୃଦ୍ଧିର ପ୍ରକାର ଭେଦ । ତିନି ହୋଇଥିଲେ ମଧ୍ୟ ସେମାନେ ନିଜ ନିଜ ଭକ୍ତଙ୍କୁ ଆତ୍ମସ୍ୱରୂପରେ ପ୍ରାପ୍ତ ହୁଅନ୍ତି ।''

ଶୌନକ କହିଲେ—''ହେ ସୂତ ! ଏହି ଅଙ୍ଗ, ଉପାଙ୍ଗ, ଆୟୁଧ ଓ ଆଭୂଷଣଗୁଡ଼ିକର କଳ୍ପନା ଅତ୍ୟନ୍ତ କ୍ଲିଷ୍ଟ । ଏହା ଆମ୍ଭମାନଙ୍କ ମନରେ ସହଜରେ ଧରିହେଉ ନାହିଁ । ତେଣୁ କୌଣସି ସରଳ ତଥା ସହଜ ପୂଜାର ଉପାୟ ଆମ୍ଭମାନଙ୍କୁ କହନ୍ତୁ ।''

ସୂତ କହିଲେ—''ମହାରାଜ ! ସହଜରୁ ସହଜ ଉପାୟ ଏହି ଯେ, ଆପଣମାନେ କେବଳ ନାମ ଉଚ୍ଚାରଣ କରନ୍ତୁ । ବାରମ୍ବାର କହନ୍ତୁ, 'ହେ ଶ୍ରୀକୃଷ୍ଣ ! ତୁମେ ଏ ସେବକଙ୍କୁ ରକ୍ଷା କର ।'' ତାଙ୍କ ନାମ ବାରମ୍ବାର ଉଚ୍ଚାରଣ କରିବାରେ ହିଁ ସମସ୍ତ ପ୍ରକାରର କଲ୍ୟାଣ ହେବ । ମୁଁ ଆପଣମାନଙ୍କୁ ପଞ୍ଚରାତ୍ର ବିଧିରେ ଯେଉଁ ଚତୁର୍ବ୍ୟୂହ ଉପାସନା କରିବା କଥା

କହିଲି, ସେହି ପରମପୁରୁଷ ପରମାତ୍ମାଙ୍କ ସ୍ୱରୂପ ଅଟନ୍ତି । ପ୍ରାତଃକାଳରୁ ଉଠି ସ୍ନାନାଦିଦ୍ୱାରା ପବିତ୍ର ହୋଇ ଏକାଗ୍ର ଚିତ୍ତରେ ଭଗବାନଙ୍କ ସ୍ମରଣ କରି ନାମ ଜପ କଲେ ଅନ୍ତଃକରଣରେ ବିରାଜିତ ସେହି ପ୍ରଭୁଙ୍କ ଜ୍ଞାନ ଲାଭ ହେବ । ମୁଁ ଅତି ସଂକ୍ଷେପରେ ଆପଣମାନଙ୍କୁ କ୍ରିୟାଯୋଗ ସମ୍ବନ୍ଧରେ କହିଲି । ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଇଚ୍ଛା କରୁଛନ୍ତି କହନ୍ତୁ ।''

ଶୌନକ କହିଲେ—''ହେ ସୂତ ! ଆପଣ ଆମ୍ଭମାନଙ୍କୁ ଅବ୍ୟକ୍ତ ପରମବ୍ରହ୍ମ ପରମାତ୍ମାଙ୍କ ବିଷୟ କହିଲେ, କିନ୍ତୁ ବେଦପୁରାଣରେ ଏହି ପ୍ରତ୍ୟକ୍ଷ ସୂର୍ଯ୍ୟଦେବତାଙ୍କୁ 'ନାରାୟଣ' ବୋଲି କୁହାଯାଇଛି, ବେଦଜ୍ଞ ବ୍ରାହ୍ମଣମାନେ ତାଙ୍କୁ ଉପାସନା କରୁଛନ୍ତି, ତାଙ୍କୁ ସାୟଂ, ପ୍ରାତଃ ଓ ମଧ୍ୟାହ୍ନରେ ଅର୍ଘ୍ୟ ପ୍ରଦାନ କରୁଛନ୍ତି, ଗାୟତ୍ରୀ ମନ୍ତ୍ରଦ୍ୱାରା ତାଙ୍କୁ ସବିତା ଦେବତା ବୋଲି ସମ୍ବୋଧନ କରୁଛନ୍ତି ଓ ମହିମାଗାନ କରୁଛନ୍ତି । ନିଜ ନିଜର ବୁଦ୍ଧିକୁ ଶୁଭକାର୍ଯ୍ୟରେ ପରିଚାଳିତ କରାଇବା ପାଇଁ ତାଙ୍କୁ ପ୍ରାର୍ଥନା କରୁଛନ୍ତି । ସେହି ସୂର୍ଯ୍ୟଦେବଙ୍କ ବିଷୟରେ ଆପଣ ଆମ୍ଭମାନଙ୍କୁ ବିଶେଷରୂପେ ବୁଝାଇ କହନ୍ତୁ ।''

ସୂତ କହିଲେ—''ମହାରାଜ ! ମୁଁ ଏହି ବିଷୟରେ ପ୍ରସଙ୍ଗକ୍ରମେ ପୂର୍ବରୁ ଆପଣମାନଙ୍କୁ କହିଛି ଯେ, ବାର ମାସରେ ଦ୍ୱାଦଶ ଆଦିତ୍ୟ ହୁଅନ୍ତି । ସେ ନିଜର ସପ୍ତଗଣଙ୍କ ସହିତ ଏକମାସ ପର୍ଯ୍ୟନ୍ତ ଏକରାଶିରେ ଅବସ୍ଥାନ କରନ୍ତି । ପୁନଶ୍ଚ ଅନ୍ୟ ରାଶିକୁ ଅନ୍ୟ ସୂର୍ଯ୍ୟ ଆସନ୍ତି । ପ୍ରତ୍ୟେକ ସୂର୍ଯ୍ୟଙ୍କ ସହିତ ଋଷି, ଗନ୍ଧର୍ବ, ନାଗ, ଅପ୍‌ସରା, ଯକ୍ଷ, ରାକ୍ଷସ ଓ ଦେବତା ରହନ୍ତି ।''

ଶୌନକ କହିଲେ—''ହଁ, ସୂତ ! ଏହି ବିଷୟରେ ଆମ୍ଭେମାନେ ବିସ୍ତାର ଭାବରେ ଶୁଣିବାକୁ ଚାହୁଁଛୁ । ପ୍ରତ୍ୟେକ ମାସର ସୂର୍ଯ୍ୟଙ୍କର ନାମ, କେଉଁ ସୂର୍ଯ୍ୟଙ୍କ ସହିତ କେଉଁ ଋଷି ରହନ୍ତି, କେଉଁ ଗନ୍ଧର୍ବ, ନାଗ ଓ ଅପ୍‌ସରା, ଯକ୍ଷ, ରାକ୍ଷସ ଓ ଦେବତାଗଣ ରହନ୍ତି ଏବଂ ସେମାନଙ୍କର କାର୍ଯ୍ୟ କ'ଣ ତଥା ସୂର୍ଯ୍ୟଙ୍କ ସହିତ ରହି ସେମାନେ କ'ଣ କ'ଣ କରନ୍ତି ? ଚୈତ୍ର ମାସରୁ ଆରମ୍ଭ କରି ଫାଲ୍‌ଗୁନ ମାସ ପର୍ଯ୍ୟନ୍ତ ଦ୍ୱାଦଶ ଆଦିତ୍ୟଙ୍କ ବିଷୟ ସେମାନଙ୍କ ଗଣଙ୍କ ସହିତ ବର୍ଣ୍ଣନା କରନ୍ତୁ ।''

ସୂତ କହିଲେ—''ବ୍ରହ୍ମନ୍ ! ଆପଣଙ୍କ ପ୍ରଶ୍ନ ତ ଅତ୍ୟନ୍ତ ଗୂଢ଼, ଏହା ବର୍ଣ୍ଣନା କରିବା ସମୟ ସାପେକ୍ଷ । ସମୟ ତ ଖୁବ୍ କମ୍ । ତଥାପି ମୁଁ ଏହି ବିଷୟକୁ ସଂକେତ ରୂପରେ କହୁଅଛି । ଏବେ ମୁଁ ସୂର୍ଯ୍ୟସ୍ୱରୂପ ଶ୍ରୀହରିଙ୍କ ବ୍ୟୂହ ସମ୍ବନ୍ଧରେ ଆପଣମାନଙ୍କୁ କହୁଅଛି, ଆପଣମାନେ ଶ୍ରଦ୍ଧାର ସହିତ ତାହା ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ଅଣ୍ଡ ମାହିଁ ଜୋ ରହୈଂ ବହୀ ବ୍ରହ୍ମାଣ୍ଡ ବନାବୈଂ ।
ଉଡି ପଡି ଜଗ କୁଁ ଫେରି ସ୍ୱୟଂ ତାମେଂ ଘୁସି ଜାମୈ ।।
ଦ୍ୱାପରଯୁଗ ମେଂ କ୍ରିୟାଯୋଗ ବହୁ ବିଧି ତେଂ ଗାୟୌ ।
କେବଲ କଲି ମେଂ କୃଷ୍ଣ ନାମ ଅତି ସୁଗମ ବତାୟୌ ।।
କରେଂ ଧ୍ୟାନ ଭଗବାନ କୋ, ଜେ ନାମନି କୁଁ ଗାୟଁଗେ ।
ତେ ମଖ, ପୂଜା ପାଠ କୋ, ସବହିଁ ସହଜ ଫଲ ପାୟଁଗେ ।।



# ଦ୍ୱାଦଶାଦିତ୍ୟଙ୍କ ବର୍ଣ୍ଣନ

**ମଧ୍ୱାଦିଷୁ ଦ୍ୱାଦଶସୁ ଭଗବାନ୍ କାଳରୂପଧୃକ୍ ।**
**ଲୋକତନ୍ତ୍ରାୟ ଚରତି ପୃଥଗ୍‌ଦ୍ୱାଦଶଭିର୍ଗଣୈଃ ।। ☆**
(ଶ୍ରୀ ଭା: ୧୨ସ୍କ: ୧୧ଅ: ୩୨ଶ୍ଳୋକ)

ଷଟ୍‌ପଦୀ

ଶୌନକ ପୁଚ୍ଛେ—ସୂତ ! କହେ ଦ୍ୱାଦଶ ରବି ତୁମନେ ।
ସବ କେ ସପ୍ତକ କହୋ ସୁନେ ପହିଲେ ହୂ ହମନେ ।।
କହେଂ ସୂତ—''ପ୍ରତିମାସ ରହେଂ ରବି ସାତ ସହାୟକ ।
ନାଗ, ଅପ୍‌ସରା, ଯକ୍ଷ, ରାକ୍ଷସ, ଋଷି, ସୁର, ଗାୟକ ।।
ଚୈତ୍ର ମାସ ଧାତା ରହେଂ, ମାଧବ ମେଂ ରବି ଅର୍ଯମା ।
ଜ୍ୟେଷ୍ଠ ମିତ୍ର ନାମକ ତପେଂ, ବରୁନ ତପେଂ ଆଷାଢ଼ ମା ।।

ବାସ୍ତବରେ କାଳ ତ ଅବ୍ୟାକୃତ । ତହିଁରେ ବିଭାଗ, ଭେଦ ଆଦି ନାହିଁ । ସୂର୍ଯ୍ୟ ନାରାୟଣଙ୍କ ଉଦୟ ଅସ୍ତରୁ ହିଁ କାଳ ବିଭାଗର କଳ୍ପନା । ସୂର୍ଯ୍ୟ ଉଦୟ ହେଉ ନଥିଲେ ଆମ୍ଭେମାନେ କିପରି ଜାଣନ୍ତେ ଯେ, ଆଜି ପ୍ରତିପଦା, କାଲି ଦ୍ୱିତୀୟା, ଏବେ ଚୈତ୍ର, ଏହାପରେ ବୈଶାଖ ମାସ ଇତ୍ୟାଦି ? ସୂର୍ଯ୍ୟ ହିଁ କାଳର ବିଭାଗ କରିଛନ୍ତି । ସୂର୍ଯ୍ୟ ଉଦୟ ହୋଇଗଲେ ପ୍ରାତଃକାଳ ହେଲା, ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ ମଧ୍ୟାହ୍ନକାଳ ହେଲା, ସୂର୍ଯ୍ୟ ଅସ୍ତ ହୋଇଗଲେ ସାୟଂକାଳ ହେଲା । ସୂର୍ଯ୍ୟ ହେଉଛନ୍ତି ପ୍ରତ୍ୟକ୍ଷ ଦେବତା । ଏଥିପାଇଁ ବ୍ରାହ୍ମଣଗଣ ବେଦମନ୍ତ୍ରରେ ତ୍ରିକାଳର ସୂର୍ଯ୍ୟଙ୍କୁ ଶ୍ରଦ୍ଧାର ସହିତ ନିତ୍ୟ ଉପାସନା କରୁଛନ୍ତି । ଆମ୍ଭେମାନେ ଯେଉଁ ସୂର୍ଯ୍ୟଙ୍କୁ ଦର୍ଶନ କରୁ, ତାହା ତ ତାଙ୍କ ମଣ୍ଡଳ । ତନ୍ମଧ୍ୟରେ ତାଙ୍କର ବିଶାଳ ରଥ ରହିଛି । ତା ଉପରେ ସେହି ଲୋକର ଅଧିଷ୍ଠାତୃଦେବ ପରମ ଯଶସ୍ୱୀ ସୂର୍ଯ୍ୟନାରାୟଣ ବିରାଜମାନ କରିଅଛନ୍ତି । ପ୍ରଥମେ ସୂର୍ଯ୍ୟଦେବ ଏକ ହିଁ ଥିଲେ, ତାଙ୍କର ତେଜ ଅସହ୍ୟ ଥିଲା । ଏପରିକି ତାଙ୍କ ପତ୍ନୀ ସଞ୍ଜ୍ଞା ମଧ୍ୟ ତାଙ୍କ ତେଜକୁ ସହ୍ୟ କରି ନପାରି ପଳାଇଗଲେ । ପୁନଶ୍ଚ ତାଙ୍କ ଶ୍ୱଶୁର ବିଶ୍ୱକର୍ମା ତାଙ୍କର ବାର ରୂପ ସୃଷ୍ଟି କଲେ । ବାର ଭାଗରେ ତାଙ୍କୁ ବାଣ୍ଟି ଦେବାରୁ ତାଙ୍କର ତେଜ ସହ୍ୟ ହେଲା । ଏଥିପାଇଁ ପ୍ରତ୍ୟେକ ମାସରେ ସୂର୍ଯ୍ୟ ବଦଳି ଥାଆନ୍ତି । କେବଳ ସୂର୍ଯ୍ୟ ବଦଳନ୍ତି ନାହିଁ, ତାଙ୍କର ଯେତେ ମନ୍ତ୍ରିମଣ୍ଡଳ ଓ କାର୍ଯ୍ୟବାହକ ଦଳ ଅଛନ୍ତି ସମସ୍ତେ ବଦଳନ୍ତି ।

---

☆ ଦ୍ରବ୍ୟ ଯେ ଫଳ ପ୍ରକାରେଣ । ନବଧା ରୂପେ ସୂର୍ଯ୍ୟ ଜାଣ ।।
ଯେ ଚୈତ୍ର ଆଦି ବାରମାସେ । କାଳରୂପ ଧରି ବିଳସେ ।।
ପ୍ରାଣୀଙ୍କ କୁଶଳ ନିମନ୍ତେ । ବିହାର ତେଜୋମୟ ରଥେ ।।
ବାର ଆଦିତ୍ୟ ତେଜ ବହି । ମଧ୍ୟରେ ସାକ୍ଷୀରୂପ ହୋଇ ।।
ଭିନ୍ନ ଭିନ୍ନ ଗୁଣ ଆଚରେ । ଯେମନ୍ତେ ................
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୧ଶଅ.)

ସୂତ କହିଲେ—"ମୁନିଗଣ ! ଏବେ ମୁଁ ଆପଣମାନଙ୍କୁ ସୂର୍ଯ୍ୟସପ୍ତକଙ୍କ ସମ୍ବନ୍ଧରେ ସଂକ୍ଷେପରେ କହୁଛି । ଏହି ଲୋକତନ୍ତ୍ର ଭଗବାନ୍ ବିଷ୍ଣୁଙ୍କର ଅନାଦି ଅବିଦ୍ୟାରୁ ରଚିତ ହୋଇଛି । ଏଥିରେ କ୍ଷଣ, ଲବ, ପଳ, ଘଡ଼ି, ମୁହୂର୍ତ୍ତ, ଦିନ, ରାତି, ପକ୍ଷ, ମାସ, ବର୍ଷ, ଯୁଗ, ମନ୍ୱନ୍ତର, କଳ୍ପ ଓ ମହାକଳ୍ପାଦି ସମ୍ଭବ ହୁଏ । ଯଦି ଏପରି ସମୟ ବିଭାଗ ନ ହୋଇଥାଆନ୍ତା, ତାହାହେଲେ ଏହି ଲୋକତନ୍ତ୍ର ଚାଲିପାରନ୍ତା ନାହିଁ । କାଳର କଳ୍ପନାରୁ ହିଁ ସମସ୍ତ ବ୍ୟବହାର ଚାଲିଛି । ଏହି ବ୍ୟବହାରକୁ ପ୍ରବୃତ୍ତ କରାନ୍ତି କେବଳ ସୂର୍ଯ୍ୟ । ସିଏ ହିଁ କାଳସ୍ୱରୂପ ଓ ସର୍ବକର୍ମର ସାକ୍ଷୀ । ସୂର୍ଯ୍ୟ ଲୋକର ବ୍ୟବହାରକୁ ଦେଖିବା ପାଇଁ ଦ୍ରଷ୍ଟା ରୂପରେ ସେ ଘୂରୁଅଛନ୍ତି । ସୂର୍ଯ୍ୟନାରାୟଣ ଭଗବାନଙ୍କଠାରୁ ଭିନ୍ନ ନୁହନ୍ତି । ସମ୍ପୂର୍ଣ୍ଣ ଲୋକର ଆତ୍ମା ଓ ଆଦିକର୍ତ୍ତା ଶ୍ରୀହରି ହିଁ ସୂର୍ଯ୍ୟ ରୂପରେ ପ୍ରକାଶିତ ହେଉଛନ୍ତି । ଯେତେ ପ୍ରକାରର ବୈଦିକକ୍ରିୟା ଅଛି, ସେ ସମସ୍ତ ସୂର୍ଯ୍ୟଦେବଙ୍କଦ୍ୱାରା ହିଁ ସମ୍ପନ୍ନ ହୁଏ । ସେ ସମସ୍ତ କର୍ମର ମୂଳ କାରଣ ଅଟନ୍ତି । ସେ ଏକ, ସେ ସତ୍, ତାଙ୍କୁ ହିଁ ବେଦଜ୍ଞ ବିପ୍ରଗଣ ବହୁତ ପ୍ରକାରରେ ବର୍ଣ୍ଣନା କରିଅଛନ୍ତି । ଯଜ୍ଞାଦି ଓ ଯଜ୍ଞର ସମସ୍ତ କାର୍ଯ୍ୟ ରୂପରେ ସୂର୍ଯ୍ୟ ହିଁ ବିରାଜିତ । ଯଜ୍ଞାଦି କର୍ମରେ ଅନେକ ଉପକରଣ ରହିଛି । ତନ୍ମଧ୍ୟରୁ ସର୍ବପ୍ରଥମେ କାଳର ବିଚାର କରାଯାଏ । କେଉଁ କାଳରେ କେଉଁ କାର୍ଯ୍ୟ କରିବାକୁ ହେବ ଓ କଲେ ତାହା ସଫଳ ହେବ । ପୁନଶ୍ଚ ଯଜ୍ଞାଦି ଅନୁଷ୍ଠାନ କ୍ରିୟା କରିବାକୁ ପଡ଼େ । ଯଜ୍ଞାଦି କର୍ମରେ କର୍ତ୍ତାର ମଧ୍ୟ ପ୍ରାଧାନ୍ୟ ରହିଛି । ପୁନଶ୍ଚ ଏହି କ୍ରିୟା ସମ୍ପାଦନ କରିବା ପାଇଁ କରଣ ଆବଶ୍ୟକ, ଯଥା ସ୍ରୁକ୍, ସ୍ରୁବ୍ ଓ ଆଜ୍ୟାସ୍ଥାଳୀ ଆଦି ଯଜ୍ଞପାତ୍ର । ଏହି ଯଜ୍ଞକର୍ମ ମଧ୍ୟରେ ଅଶ୍ୱମେଧ, ରାଜସୂୟ ଆଦିର ବିଧାନ ବି ରହିଛି । ଯାଗଯଜ୍ଞାଦି ବେଦମନ୍ତ୍ରରେ ହୁଏ । ବେଦମନ୍ତ୍ର ନ ଥିଲେ ଏ କର୍ମ ହୋଇପାରନ୍ତା ନାହିଁ । ଯଜ୍ଞପାଇଁ ଯଜ୍ଞୀୟ ଦ୍ରବ୍ୟ ଯଥା ତିଳ, ଯବ, ଚାଉଳ, ଆଦି ଆବଶ୍ୟକ ହୁଏ । ଆହୁରି ମଧ ଦେଖିବାକୁ ହୁଏ ଯେ, ଏହି କର୍ମର ଫଳ କ'ଣ ଫଳିଲା କି ନାହିଁ ? ଏହିପରି କାଳ, ଦେଶ, କ୍ରିୟା, କର୍ତ୍ତା, କରଣ, କର୍ମ, ବେଦମନ୍ତ୍ର, ଦ୍ରବ୍ୟ ଓ ଫଳ ଏହି ନଅ ପ୍ରକାରର ରୂପ ହେଉଛି ସେହି ସର୍ବାତ୍ମା ଭଗବାନ୍ ସୂର୍ଯ୍ୟଦେବଙ୍କର । କାଳରୂପଧାରୀ ଭଗବାନ୍ ସବିତା ବାର ମାସରେ ଦ୍ୱାଦଶ ରୂପରେ ନିଜର ଗଣଙ୍କ ସହିତ ବିଚରଣ କରନ୍ତି । ସେହି ଦ୍ୱାଦଶ ରୂପ କଥା କହୁଛି, ଶୁଣନ୍ତୁ ।"

ଶୌନକ ପଚାରିଲେ—"ଆଚ୍ଛା, ହେ ସୂତ ! ଚୈତ୍ର ମାସର ସୂର୍ଯ୍ୟଙ୍କ ନାମ କ'ଣ ଓ ତାଙ୍କର ଗଣ କେଉଁମାନେ ?"

ସୂତ କହିଲେ—"ମହାରାଜ ! ଏହା ତ ମୁଁ ପ୍ରଥମରୁ ହିଁ କହିଛି ଯେ ପ୍ରତ୍ୟେକ ସୂର୍ଯ୍ୟଙ୍କ ସହିତ ଜଣେ ଜଣେ ଋଷି, ଗନ୍ଧର୍ବ, ନାଗ, ଅପ୍‌ସରା, ଯକ୍ଷ ଓ ରାକ୍ଷସ ଏହି ଛଅଜଣ ରହନ୍ତି । ଏହାକୁ ସୂର୍ଯ୍ୟଦେବଙ୍କର ସପ୍ତକ କୁହାଯାଏ । ବର୍ତ୍ତମାନ ଏହି ଛଅ ଛଅ ତତ୍ତ୍ୱ ଶୁଣନ୍ତୁ । ଚୈତ୍ର ମାସର ସୂର୍ଯ୍ୟଙ୍କର ନାମ ଧାତା । ତାଙ୍କ ସହିତ କୃତସ୍ଥଳୀ ଅପ୍‌ସରା, ହେତି ନାମକ ରାକ୍ଷସ, ବାସୁକୀ ନାମକ ସର୍ପ, ରଥକୃତ ନାମକ ଯକ୍ଷ, ପୁଲସ୍ତ ନାମକ ଋଷି, ତୁମ୍ବୁରୁ ନାମକ ଗନ୍ଧର୍ବ ଏହି ଛଅଜଣ ରହନ୍ତି । ଏହାଙ୍କ ସହିତ ଧାତାତ ନାମକ ସୂର୍ଯ୍ୟ ଚୈତ୍ର ମାସକୁ କରନ୍ତି । ବୈଶାଖ ମାସର ସୂର୍ଯ୍ୟ ନିଜର ଦଳବଳ ସହିତ ସୂର୍ଯ୍ୟରଥକୁ ଅଧିକାର କରିନିଅନ୍ତି । ଚୈତ୍ର ସୂର୍ଯ୍ୟ ତାଙ୍କୁ ସମସ୍ତ କାର୍ଯ୍ୟ ସମର୍ପଣ କରିଦିଅନ୍ତି ଓ ନିଜ ଦଳ ସହିତ ବିଶ୍ରାମ ନିଅନ୍ତି ।"

ଶୌନକ ପଚାରିଲେ—"ହେ ସୂତ ! ବୈଶାଖ ଓ ଅନ୍ୟାନ୍ୟ ମାସର ସୂର୍ଯ୍ୟଙ୍କର ନାମ କ'ଣ ଏବଂ ତାଙ୍କର ଛଅଗଣଙ୍କର ନାମ କ'ଣ କ'ଣ କୁହନ୍ତୁ ।"

ସୂତ କହିଲେ—"ମହାରାଜ ! ବୈଶାଖ ମାସର ସୂର୍ଯ୍ୟଙ୍କ ନାମ ଅର୍ଯମା । ତାଙ୍କ ସହିତ ପୁଲହ ଋଷି, ଅଥୌଜା ଯକ୍ଷ, ପ୍ରହେତି ରାକ୍ଷସ, ପୁଞ୍ଜିକସ୍ଥଳୀ ଅପ୍‌ସରା, ନାରଦ ନାମକ

ଗନ୍ଧର୍ବ ଓ କଚ୍ଛନିର ନାମକ ନାଗ ରହନ୍ତି । ତାଙ୍କ ପରେ ଜ୍ୟୋଷ୍ଠ ମାସର ସୂର୍ଯ୍ୟ ଆସନ୍ତି । ତାଙ୍କର ନାମ ମିତ୍ର । ତାଙ୍କ ସହିତ ଅତ୍ରି ଋଷି, ପୌରୁଷେୟ ରାକ୍ଷସ, ତକ୍ଷକ ସର୍ପ, ମେନକା ଅପ୍‌ସରା, ହାହା ଗନ୍ଧର୍ବ ଓ ରଥସ୍ୱନ ଯକ୍ଷ ରହନ୍ତି । ତାଙ୍କ ପରେ ଆଷାଢ଼ ସୂର୍ଯ୍ୟ ଆସନ୍ତି । ତାଙ୍କ ନାମ ବରୁଣ । ତାଙ୍କ ସହିତ ବଶିଷ୍ଠ ଋଷି, ରମ୍ଭା ଅପ୍‌ସରା, ସହଜନ୍ୟ ଯକ୍ଷ, ହୁହୁ ଗନ୍ଧର୍ବ, ଶୁକ ନାମକ ନାଗ ଓ ଚିତ୍ରସ୍ୱନ ନାମକ ରାକ୍ଷସ ରହନ୍ତି । ଶ୍ରାବଣମାସ ହେବାକ୍ଷଣି ଇନ୍ଦ୍ର ନାମକ ସୂର୍ଯ୍ୟ ଆସନ୍ତି । ତାଙ୍କ ସହିତ ଅଙ୍ଗିରା ଋଷି, ବିଶ୍ୱାବସୁ ଗନ୍ଧର୍ବ, ଶ୍ରୋତା ନାମକ ଯକ୍ଷ, ଏଲାପାତ୍ର ନାମକ ନାଗ, ପ୍ରମ୍ଳୋଚା ନାମକ ଅପ୍‌ସରା ଓ ବର୍ଯ୍ୟ ନାମକ ରାକ୍ଷସ ରହନ୍ତି ଓ ଶ୍ରାବଣ ମାସର କାର୍ଯ୍ୟ ଚଳାନ୍ତି । ଭାଦ୍ରବ ମାସର ସୂର୍ଯ୍ୟ ବିବସ୍ୱାନ ତାଙ୍କ ସହିତ ଭୃଗୁ ଋଷି, ଉଗ୍ରସେନ ଗନ୍ଧର୍ବ, ବ୍ୟାଘ୍ର ନାମକ ରାକ୍ଷସ, ଆସାରଣ ନାମକ ଯକ୍ଷ, ଅନୁମ୍ଳୋଚା ନାମକ ଅପ୍‌ସରା ଓ ଶଙ୍ଖପାଳ ନାମକ ନାଗ ରହି ଭାଦ୍ରବ ମାସର କାର୍ଯ୍ୟ ସମ୍ପାଦନ କରନ୍ତି ।

''ଆଶ୍ୱିନ ମାସ ହେବାମାତ୍ରେ ତ୍ୱଷ୍ଟା ନାମକ ସୂର୍ଯ୍ୟ ତାଙ୍କ ସହିତ ଯମଦଗ୍ନି ଋଷି, କମ୍ବଳ ନାଗ, ବ୍ରହ୍ମାପେତ ରାକ୍ଷସ, ଧୃତରାଷ୍ଟ୍ର ନାମକ ଗନ୍ଧର୍ବ, ଶତଜିତ୍ ନାମକ ଯକ୍ଷ ଓ ତିଳୋତ୍ତମା ନାମକ ଅପ୍‌ସରାଙ୍କୁ ନେଇ ସେହି ମାସର କାର୍ଯ୍ୟ ସମ୍ପାଦନ କରନ୍ତି ।

''କାର୍ତ୍ତିକ ମାସର ସୂର୍ଯ୍ୟଙ୍କ ନାମ ବିଷ୍ଣୁ । ତାଙ୍କ ସହିତ ବିଶ୍ୱାମିତ୍ର ଋଷି, ଅଶ୍ୱତର ନାଗ, ରମ୍ଭା ଅପ୍‌ସରା, ସୂର୍ଯ୍ୟବର୍ଚ୍ଚା ଗନ୍ଧର୍ବ, ସତ୍ୟାଜିତ୍ ଯକ୍ଷ ଓ ଯଜ୍ଞାପେତ ରାକ୍ଷସ ଏହି ସପ୍ତକ କାର୍ତ୍ତିକ ମାସର କାର୍ଯ୍ୟ ନିର୍ବାହ କରନ୍ତି । ଏହାପରେ ମାର୍ଗଶୀର ମାସର ସୂର୍ଯ୍ୟଙ୍କର ଆଗମନ ହୁଏ ।

''ମାର୍ଗଶୀର ସୂର୍ଯ୍ୟଙ୍କର ନାମ ଅଂଶୁ । ତାଙ୍କ ସହିତ କଶ୍ୟପ ମୁନି, ତାର୍କ୍ଷ୍ୟ ଯକ୍ଷ, ଋତସେନ ଗନ୍ଧର୍ବ, ଉର୍ବଶୀ ଅପ୍‌ସରା, ବିଦ୍ୟୁତ୍‌ଶତ୍ରୁ ରାକ୍ଷସ ଓ ମହାଶଙ୍ଖ ନାଗ ଏହି ଛଅଜଣ ମିଶି ମାର୍ଗଶୀର ମାସର କାର୍ଯ୍ୟ ଚଳାନ୍ତି ।

''ପୌଷ ମାସର ସୂର୍ଯ୍ୟଙ୍କର ନାମ ଭଗ । ତାଙ୍କ ସହିତ ଆୟୁ ନାମକ ଋଷି, ସ୍ଫୁର୍ଜ୍ଜ ରାକ୍ଷସ, ଅରିଷ୍ଟନେମି ଗନ୍ଧର୍ବ, ଊର୍ଣ୍ଣ ଯକ୍ଷ, କର୍କୋଟକ ନାଗ ଓ ପୂର୍ବଚିତ୍ତି ଅପ୍‌ସରା ଏହି ଛଅଜଣ ମିଶି ପୌଷ ମାସର କାର୍ଯ୍ୟ ସମ୍ପାଦନ କରନ୍ତି ।

''ମାଘ ମାସର ସୂର୍ଯ୍ୟଙ୍କ ନାମ ପୂଷା । ତାଙ୍କ ସହିତ ଗୌତମ ଋଷି, ଧନଞ୍ଜୟ ନାଗ, ବାତ ନାମକ ରାକ୍ଷସ, ସୁଷେଣ ନାମକ ଗନ୍ଧର୍ବ, ସୁରୁଚି ନାମକ ଯକ୍ଷ, ଧୃତାଚି ନାମକ ଅପ୍‌ସରା ରହି ମାଘ ମାସର କାର୍ଯ୍ୟ ସମ୍ପାଦନ କରନ୍ତି । ଏହାପରେ ଆସନ୍ତି ଫାଲ୍‌ଗୁନ ମାସର ସୂର୍ଯ୍ୟ ।

''ଫାଲ୍‌ଗୁନ ମାସର ସୂର୍ଯ୍ୟଙ୍କ ନାମ ପର୍ଜ୍ଜନ୍ୟ । ତାଙ୍କ ସହିତ ଭରଦ୍ୱାଜ ଋଷି, କୃତୁ ନାମକ ଯକ୍ଷ, ବର୍ଚ୍ଚା ନାମକ ରାକ୍ଷସ, ସେନଜିତ୍ ନାମକ ଅପ୍‌ସରା, ବିଶ୍ୱ ନାମକ ଗନ୍ଧର୍ବ ଓ ଐରାବତ ନାମକ ନାଗ ରହି ଫାଲ୍‌ଗୁନ ମାସର କାର୍ଯ୍ୟ ସମ୍ପାଦନ କରନ୍ତି । ହେ ମୁନିବର ! ବାର ମାସର ଦ୍ୱାଦଶ ଆଦିତ୍ୟ ଏହି ପ୍ରକାର ସୂର୍ଯ୍ୟଲୋକର ଯାତ୍ରା ଚଳାନ୍ତି । ଏହି ବାର ମାସର ବାରଟି ସୂର୍ଯ୍ୟ ହିଁ ଭଗବାନ୍ ବିଷ୍ଣୁଙ୍କର ବିଭୂତି । ସ୍ୱୟଂ ଭଗବାନ୍ ବିଷ୍ଣୁ ଲୋକବ୍ୟବହାର ତଥା ସୃଷ୍ଟି ପରିଚାଳନା ପାଇଁ ବାର ରୂପ ଧାରଣ କରନ୍ତି । ଏଥିପାଇଁ ସମସ୍ତେ ପ୍ରାତଃ ଓ ସାୟଂକାଳରେ ସୂର୍ଯ୍ୟନାରାୟଣଙ୍କର ପୂଜା କରିବା ଉଚିତ୍ । ତାଙ୍କୁ ଅର୍ଘ୍ୟ ପ୍ରଦାନ କରିବା ଉଚିତ୍ ଓ ସ୍ତୁତି କରିବା ଉଚିତ୍ । ଯେଉଁମାନେ ଏହିପରି ସମସ୍ତ କର୍ମର ସାକ୍ଷୀ ଭଗବାନ୍ ସୂର୍ଯ୍ୟନାରାୟଣଙ୍କୁ ଉପାସନା କରନ୍ତି, ସେମାନଙ୍କର ଜନ୍ମ ଜନ୍ମର ପାପ ବିନାଶ ହୋଇଯାଏ ।''

ଶୌନକ ପଚାରିଲେ—''ହେ ସୂତ ! ଏହି ସୂର୍ଯ୍ୟନାରାୟଣ କ'ଣ କରନ୍ତି ?''

ସୂତ କହିଲେ—''ମହାରାଜ ! ଏହି ସୂର୍ଯ୍ୟନାରାୟଣ ତ ସବୁକିଛି କରନ୍ତି । ସେ ସମୁଦ୍ରରୁ ଜଳ ନିଅନ୍ତି, ବର୍ଷା କରାନ୍ତି, ସମଗ୍ର ବିଶ୍ୱକୁ ଆଲୋକ ପ୍ରଦାନ କରନ୍ତି ତଥା ପ୍ରତ୍ୟେକ ଜୀବଙ୍କୁ ଜୀବନ ଦାନ କରନ୍ତି । ନିଜେ ଛଅଗଣଙ୍କ ସହିତ ମିଶି ବାରମାସଯାକ ସର୍ବତ୍ର ପରିଭ୍ରମଣ କରନ୍ତି ଓ ଲୋକ ପରଲୋକରେ ସୁମତିର ପ୍ରସାର କରନ୍ତି ।''

ଶୌନକ ପଚାରିଲେ—''ହେ ସୂତ ! ସୂର୍ଯ୍ୟଙ୍କର ଏ ଯେଉଁ ଛଅଗଣ, ଏମାନଙ୍କର କାମ କ'ଣ ? କିଏ କେଉଁ କାର୍ଯ୍ୟ ସମ୍ପାଦନ କରନ୍ତି, ତାହା ଆମ୍ଭମାନଙ୍କୁ କୁହନ୍ତୁ ।''

ସୂତ କହିଲେ—''ମହାରାଜ ! ସୂର୍ଯ୍ୟଦେବଙ୍କର ଖୁବ୍ ବଡ଼ ରଥ । ସେଥିରେ ବସି ଭଗବାନ୍ ସବିତା ଯାତ୍ରା କରନ୍ତି । ଯେଉଁ ଋଷି ସଙ୍ଗରେ ରହନ୍ତି, ସେ ବେଦତ୍ରୟୀଦ୍ୱାରା ତାଙ୍କର ସ୍ତୁତି କରନ୍ତି । ଗନ୍ଧର୍ବ ତାଙ୍କ ସମ୍ମୁଖରେ ରହି ସୁନ୍ଦର ସ୍ୱରରେ ତାଳେ ତାଳେ ଗୀତ ଗାୟନ କରନ୍ତି । ଅପ୍ସରା ତାଙ୍କ ମନୋରଞ୍ଜନ ପାଇଁ ଆଗରେ ନୃତ୍ୟ କରନ୍ତି । ରଥ ଢିଲା ନ ହେବାପାଇଁ କିମ୍ବା ତ୍ରୁଟି ନ ହେବାପାଇଁ ସମସ୍ତ ଦାୟିତ୍ୱ ନାଗ ବହନ କରନ୍ତି । ଏହାଦ୍ୱାରା ରଥ ଖରାପ ହୁଏ ନାହିଁ କିମ୍ବା ଯାତ୍ରାରେ ବ୍ୟତିକ୍ରମ ହୁଏ ନାହିଁ । ରଥକୁ ସଜାସଜି କରିବା ଓ ସମ୍ଭାଳିବାର ସମସ୍ତ ଦାୟିତ୍ୱ ଯକ୍ଷ ବହନ କରନ୍ତି । ରଥର ଛନ୍ଦମୟ ଅଶ୍ୱଙ୍କୁ ବାଧା ନ ହେବାପାଇଁ ରାକ୍ଷସ ରଥକୁ ପଛରୁ ଠେଲିବାରେ ବଳ ପ୍ରୟୋଗ କରନ୍ତି । ଏହି ଗଣମାନେ ଏପରି ଯେ, ସେମାନେ ନିଜ ନିଜର କର୍ତ୍ତବ୍ୟ ପାଳନ କରି ପ୍ରତି ମାସରେ ବଦଳି ଥାଆନ୍ତି । ଏହାଙ୍କ ବ୍ୟତୀତ ଷାଠିଏ ହଜାର ନିର୍ମଳ ସ୍ୱଭାବବିଶିଷ୍ଟ ବାଳଖିଲ୍ୟ ନାମକ ମହର୍ଷିଗଣ ମଧ୍ୟ ସର୍ବଦା ସୂର୍ଯ୍ୟମଣ୍ଡଳରେ ହିଁ ଅବସ୍ଥାନ କରନ୍ତି । ସୂର୍ଯ୍ୟନାରାୟଣଙ୍କୁ ଅଧିକ ଖୁସି କରିବା ପାଇଁ ଏମାନେ ଆଗେ ଆଗେ ସ୍ତୁତି କରିଚାଲନ୍ତି । ସେ କୌଣସି ମାସର ସୂର୍ଯ୍ୟ ହୁଅନ୍ତୁ ନା କାହିଁକି, ଏମାନେ ଏକରସ ଭାବରେ ଦ୍ୱାଦଶ ଆଦିତ୍ୟଙ୍କର ସ୍ତୁତି କରିଥାଆନ୍ତି ।

''ମୁଁ ଆପଣମାନଙ୍କୁ ଏହା ଅତି ସଂକ୍ଷେପରେ କହିଲି । ମୁନିଗଣ ! ଆଦି ଅନ୍ତ ରହିତ ଅଜନ୍ମା ଭଗବାନ୍ କେବଳ କ୍ରୀଡ଼ା ପାଇଁ ପ୍ରତ୍ୟେକ କଳ୍ପରେ ସ୍ୱୟଂ ନିଜକୁ ବିଭାଗ କରି କ୍ରୀଡ଼ା କରିଥାଆନ୍ତି ତଥା ସମସ୍ତ ଲୋକକୁ ପାଳନ କରିଥାଆନ୍ତି । ଅନନ୍ତ ବିଭୂତି ଭଗବାନ୍ ବାସୁଦେବଙ୍କର ମହିମା ଅନନ୍ତ, ତାହା ପ୍ରାଣୀମାନଙ୍କର କଳ୍ପନାତୀତ ଓ ତାହା ଜ୍ଞାତ ହେବା ଅତି ଦୁଷ୍କର । ଏଥିପାଇଁ ସଂସାରରେ ଯାହାକିଛି ଦେଖିବାକୁ ମିଳୁଛି, ସେ ସମସ୍ତ ଭଗବାନଙ୍କର ରୂପ ବୋଲି ଜାଣି ସେ ସମସ୍ତଙ୍କୁ ପ୍ରଣାମ କରିବା ଉଚିତ୍ । ସମସ୍ତ ପ୍ରାଣୀଙ୍କୁ ଶ୍ରଦ୍ଧାର ସହିତ ସତ୍କାର କରିବା ଉଚିତ୍ । ମୁଁ ଯେତିକି ବୁଝିଛି, ସେହି ଅନୁସାରେ ଆପଣମାନଙ୍କ ପ୍ରଶ୍ନର ଉତ୍ତର ଦେଲି । ଏବେ ଆପଣମାନେ ଆଉ କ'ଣ ଜାଣିବାକୁ ଚାହୁଁଛନ୍ତି ପଚାରନ୍ତୁ ।''

ଶୌନକ କହିଲେ—''ହେ ସୂତ ! ଆପଣଙ୍କର ପରମାୟୁ ବୃଦ୍ଧି ହେଉ । ଆପଣ ଅତି ସୁନ୍ଦର ଭାବରେ ଆମ୍ଭମାନଙ୍କର ପ୍ରଶ୍ନର ଉତ୍ତର ଦେଉଛନ୍ତି । ଆଉ ଆମ୍ଭମାନଙ୍କର ପ୍ରଶ୍ନ କରିବାର କିଛି ନାହିଁ । ଆପଣଙ୍କର ଯଦି କିଛି କହିବାକୁ ଥାଏ, ତେବେ ଆପଣଙ୍କଆଡୁ ଆମ୍ଭମାନଙ୍କୁ କହନ୍ତୁ । ଯଦି ନ ଥାଏ, ତାହାହେଲେ କିଛିଦିନ ପାଇଁ ବିଶ୍ରାମ କରନ୍ତୁ । ତୀର୍ଥଯାତ୍ରା କରି ଜଳବାୟୁ ପରିବର୍ତ୍ତନ କରି ଆସନ୍ତୁ । ଗୋଟିଏ ସ୍ଥାନରେ ରହି ରହି ଆପଣଙ୍କୁ ବିରକ୍ତ ଲାଗିବଣି । ଏବେ ପୃଥିବୀରେ କଳିଯୁଗ ତାହାର ପ୍ରଭାବ ବିସ୍ତାର କରିଛି । ରାଜବଂଶ ନଷ୍ଟ ହୋଇଗଲା । ଧର୍ମହୀନ ଲୁଣ୍ଠନକାରୀମାନେ ଶାସକ ହେଲେ । ଧର୍ମପ୍ରଧାନ ପବିତ୍ର ଭାରତଭୂମିରେ ଏବେ ଅଧର୍ମର ପ୍ରାବଲ୍ୟ ଦେଖାଦେଇଛି । ଧର୍ମ ଓ ଅଧର୍ମ ଉଭୟ ହିଁ ଭଗବାନଙ୍କର ସୃଷ୍ଟ । ସମୟ ସମୟରେ ଉଭୟେ ନିଜ ନିଜର କରାମତି ଦେଖାନ୍ତି । ଏବେ ଅଧର୍ମର ପାଳି ପଡ଼ିଛି । ଅଧର୍ମୀଲୋକଙ୍କୁ କଳିଯୁଗରୁ ଉଦ୍ଧାର ପାଇବା ପାଇଁ ଆପଣ ଉପାୟ ବତାନ୍ତୁ । ହରିକଥା କୀର୍ତ୍ତନର ମହତ୍ତ୍ୱ ବୁଝାଇ ଦିଅନ୍ତୁ ।''

ସୂତ କହିଲେ—''ମହାରାଜ ! ବୁଝାଇଲେ କିଏ ଅବା ବୁଝୁଛି ? ପ୍ରତ୍ୟେକ ତ ଆଜି ସ୍ୱକର୍ମସୂତ୍ରରେ ଆବଦ୍ଧ ହୋଇ ନିଜ ନିଜର ଜୀବିକା ନିର୍ବାହ କରୁଛନ୍ତି । ହଁ ଗୋଟିଏ କଥା ମୋର କହିବାକୁ ବାକି ଅଛି, ମୁଁ ନିଜ ବୁଦ୍ଧି ଅନୁସାରେ ଭାଗବତ-କଥା ତ ଶୁଣାଇଲି । କିନ୍ତୁ ଏବେ ଭୂଗୋଳ, ଖଗୋଳ, ଦର୍ଶନ, କର୍ମ, ଜ୍ଞାନ, ଭକ୍ତି, ସ୍ତୁତି, ବ୍ରତ ଓ ତୀର୍ଥ ଆଦି ବିଷୟ ଉପରେ ଯାହାକିଛି କହିବାକୁ ବାକି ଅଛି, ତାହା ମୁଁ ଅବସର ଦେଖି କହିବି । ମୋର ମଧ୍ୟ ଏବେ କିଛିଦିନ ପାଇଁ ବିଶ୍ରାମ ନେବାକୁ ଇଚ୍ଛା ହେଉଛି, କିନ୍ତୁ ମୁଁ ଆପଣମାନଙ୍କୁ ଭାଗବତ-କଥାର ଅନୁକ୍ରମଣିକା କହି ନାହିଁ । ଗ୍ରନ୍ଥର ବିଷୟସୂଚୀ ଯେ ପର୍ଯ୍ୟନ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ ଏହା ସମ୍ପୂର୍ଣ୍ଣ ହୋଇଛି ବୋଲି କୁହାଯାଇ ନ ପାରେ । ଏବେ ତ ପ୍ରଥା ଏପରି ଚାଲିଛି ଯେ, ଗ୍ରନ୍ଥରେ ଆଦ୍ୟରେ ହିଁ ବିଷୟସୂଚୀ ଦିଆଯାଉଛି । କିନ୍ତୁ ପ୍ରାଚୀନ ପ୍ରଥା ଅନୁସାରେ ଶେଷରେ ତାହା ଦେବା କଥା । ଆପଣମାନେ ଯଦି ଆଜ୍ଞା ଦିଅନ୍ତି, ତାହାହେଲେ ମୁଁ ଆପଣମାନଙ୍କୁ ବିଷୟସୂଚୀ ଏବେ ଶେଷରେ ଶୁଣାଇବି ।''

ଶୌନକ କହିଲେ—''ହଁ, ହେ ସୂତ ! ଆମେ ତ ତାହା ଭୁଲି ଯାଇଥିଲୁ । ଏହା ତ ଅତ୍ୟାବଶ୍ୟକ ବିଷୟ । ଆପଣ ଆମ୍ଭମାନଙ୍କୁ ବିଷୟସୂଚୀ ଅବଶ୍ୟ ଶୁଣାଇବେ ।''

ସୂତ କହିଲେ—''ମହାରାଜ ! ବିଷୟସୂଚୀ କିପରି ଶୁଣାଇବି ? ଯଦି ପ୍ରତ୍ୟେକ ଖଣ୍ଡର ଶୁଣାଏ ତାହାହେଲେ ତାହା ବହୁତ ବିସ୍ତାରିତ ହୋଇଯିବ । ମୋର ଗୁରୁଦେବ ଶୁକ ମହାରାଜ ପରୀକ୍ଷିତଙ୍କୁ ସାତଦିନ ମଧ୍ୟରେ ଭାଗବତ ଶୁଣାଇଥିଲେ । ଏଥିପାଇଁ ଭାଗବତ ସପ୍ତାହ ପାଳିତ ହୁଏ । ପ୍ରଭୁଦତ୍ତଜୀ ମଧ୍ୟ ତାଙ୍କ ଭାଷାରେ ଯେଉଁ 'ଭାଗବତ ଚରିତ' ଲେଖିଛନ୍ତି, ସେ ମଧ୍ୟ ସପ୍ତାହ କ୍ରମରେ ହିଁ ରଚିତ ହୋଇଛି । ତାହା ଭାଗବତ କଥାରେ ବିସ୍ତାରିତ ହୋଇଛି । ମୋର କହିବାର ଉଦ୍ଦେଶ୍ୟ ଏହି ଯେ, ଭାଗବତ କଥା ହେଉଛି ଭାଗବତ ଚରିତର ଭାଷ୍ୟ । ତେଣୁ ମୁଁ ପ୍ରଥମେ ଲେଖକଙ୍କ ସମ୍ବନ୍ଧରେ କହି ପରେ ସପ୍ତାହ କ୍ରମରେ ହିଁ ବିଷୟ ସୂଚୀ ଶୁଣାଇବି ।''

ଶୌନକ କହିଲେ—''ହେ ସୂତ ! ଆପଣଙ୍କର ଯେପରି ଇଚ୍ଛା, ସେପରି ଶୁଣାନ୍ତୁ । ସପ୍ତାହ କ୍ରମରେ ହିଁ ଶୁଣାଇବା ଉଚିତ୍ ହେବ ।''

ସୂତ କହିଲେ—''ତାହାହେଲେ ଆପଣମାନେ ମନଯୋଗ ସହକାରେ ଶୁଣନ୍ତୁ ।''

ଷଟ୍‌ପଦୀ

ଶ୍ରାବନ ମେ ରବି ଇନ୍ଦ୍ର ଭାଦ୍ର ମେ ବିବଶ୍ୱାନ ରବି ।
ତ୍ୱଷ୍ଟା ଆଶ୍ୱିନ ରହେଂ ବିଷ୍ଣୁ ଜୀ କାର୍ତ୍ତିକ ମେ ଛବି ।।
ମାର୍ଗଶୀର୍ଷ ମେ ଅଂଶୁ ପୌଷ କେ ଭଗ ହୈଂ ନାମୀ ।
ଫାଗୁନ କେ ପରିଜନ୍ୟା ମାଘ କେ ପୂଷା ସ୍ୱାମୀ ।।
ସବ ମାସନି କେ ପୃଥକ୍ ରବି, ପୃଥକ୍ ପୃଥକ୍ ଗନ ସବନି କେ ।
ସ୍ୱୟଂ ସଚ୍ଚିଦାନନ୍ଦ ହରି, ସ୍ୱାମୀ ସବଇ ଗୁଣନି କେ ।।



# ଲେଖକଙ୍କ ସମ୍ବନ୍ଧରେ

**ଅତ୍ର ବ୍ରହ୍ମ ପରଂ ଗୁହ୍ୟଂ ଜଗତଃ ପ୍ରଭବାପ୍ୟୟମ୍ ।**
**ଜ୍ଞାନଂ ଚ ତଦୁପାଖ୍ୟାନଂ ପ୍ରୋକ୍ତଂ ବିଜ୍ଞାନସଂଯୁତମ୍ ॥.** ☆
(ଶ୍ରୀ ଭା: ୧୨ସ୍କ: ୧୨ଅ: ୪ଶ୍ଳୋକ)

ଷଟ୍‌ପଦୀ

ନିଜ ମତି ଜେ ଅନୁସାର କଥା ମୁନିବର ! ଶୁଭ ଭାଖୀ ।
ଅନ୍ତରଯାମୀ ଶ୍ୟାମ ସଜଲ ଢ଼ୀବନି ଜେ ସାଖୀ ॥
ଭଇ କଥା ତୋ ପୂର୍ଣ୍ଣ ବିଷୟ ସୂଚୀ ଅବ ଭାଖୁଁ ।
ସବ ମିଲି ଦେହିଁ ଅଶୀଷ ସଦା ହିୟ ମେଂ ହରି ରାଖୁଁ ॥
ଧର୍ମ, କୃଷ୍ଣ ଅରୁ ବ୍ୟାସ, ଶୁକ, ସବ କେ ପୁନି ପଗ ପରୁଁ ।
ପୁନ୍ୟ ଭାଗବତ ଚରିତ ଜୀ, ଅନୁକ୍ରମିକା ବରନନ କରୁଁ ॥

ପ୍ରାଚୀନ ପରିପାଟୀ ଏପରି ଥିଲା, ବ୍ୟକ୍ତି ସମସ୍ତ କାର୍ଯ୍ୟ କରିସାରି ପୂର୍ବରୁ କରିଥିବା କାର୍ଯ୍ୟ ପ୍ରତି ଆଉଥରେ ବିହଙ୍ଗାବଲୋକନ କରି ଭ୍ରମ ସଂଶୋଧନ କରି ନେଉଥିଲା । ଯାତ୍ରା ସମୟରେ ଯିବା ପୂର୍ବରୁ ସମସ୍ତ ପ୍ରସ୍ତୁତିକୁ ଆଉଥରେ ଆଖି ପକାଇ ଦେଖି ନେଉଥିଲା । ଏହାଦ୍ୱାରା ଆବଶ୍ୟକ ସାମଗ୍ରୀ ଯଦି ଛାଡ଼ିଯିବାର ଜଣାପଡୁଥିଲା, ତାହା ସେ ପୁନର୍ବାର ତାହା ପ୍ରସ୍ତୁତ କରି ନେଉଥିଲା । ଯାନରୁ ଓହ୍ଲାଇବା ସମୟରେ ମଧ୍ୟ ସମସ୍ତ ବସ୍ତୁ ନେଲା କି ନାହିଁ, ଭଲଭାବରେ ଦେଖି ନେଉଥିଲା । ଏହାଦ୍ୱାରା କୌଣସି ବସ୍ତୁ ଛାଡ଼ିଯାଉ ନ ଥିଲା । ସେହିପରି ସମ୍ପୂର୍ଣ୍ଣ ଗ୍ରନ୍ଥ ରଚନା କରି ସାରିବା ପରେ ତାକୁ ଆଉଥରେ ବାଚନ କରି ତାହାର ସମସ୍ତ ବିଷୟ ଠିକ୍ ଅଛି କି ନାହିଁ ଦେଖିନେବାକୁ ପଡ଼େ । ଏହାଦ୍ୱାରା ଗ୍ରନ୍ଥକାର ଓ ପାଠକ ଉଭୟଙ୍କୁ ପଢ଼ିବାକୁ ସୁବିଧା ହୁଏ ।

ସୂତ କହିଲେ—"ମୁନିଗଣ ! ଭାଗବତ କଥା ତ ସମାପ୍ତ ହୋଇଗଲା । ଯେଉଁ ଯେଉଁ ଖଣ୍ଡରେ ଯେଉଁ ଯେଉଁ ଚରିତ୍ର ପୂର୍ବରୁ କୁହାହୋଇଛି, ତାହା ଏବେ ମୁଁ ଏକ ସଂକ୍ଷିପ୍ତ ତଥ୍ୟରେ ଆପଣମାନଙ୍କୁ ଆଉଥରେ କହିବି ।"

ଶୌନକ କହିଲେ—"ହଁ, ସୂତ ! ଆପଣ ଅବଶ୍ୟ ବିଷୟ ସୂଚୀ ଆମ୍ଭମାନଙ୍କୁ ଶୁଣାଇବେ । ଆପଣ ସର୍ବପ୍ରଥମ ଦିବସର ବିଷୟ ଏବେ କୁହନ୍ତୁ ।"

---

☆ କୃଷ୍ଣ ବ୍ରହ୍ମ ସ୍ୱରୂପୀ ବର । ତା ପାଦେ ମୋର ନମସ୍କାର ॥
ତାହାଙ୍କ ମହିମା ବଖାଣ । ହୋଇଛି ଶ୍ରୀ ଭାଗବତେଣ ॥
ପରମବ୍ରହ୍ମ ଯେ ଈଶ୍ୱର । ପରମଗୁପ୍ତ ସେହୁ ସାର ॥
ଉତ୍ପତ୍ତି ସ୍ଥିତି ଯେ ପ୍ରଳୟ । ଯେହୁ ଅନାଦି ବିଶ୍ୱମୟ ॥
ତାହାଙ୍କୁ ଜାଣିବାର ଜ୍ଞାନ । ତାହାର ଚରିତ ବ୍ୟାଖ୍ୟାନ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ସୂତ କହିଲେ—''ମହାରାଜ ! ଏହି ଗ୍ରନ୍ଥରେ ସମସ୍ତ ଧର୍ମସଂଗତ କଥା ରହିଛି । ଏହା ବିଶୁଦ୍ଧ-ତଥ୍ୟ ପୂର୍ଣ୍ଣ ଧର୍ମଗ୍ରନ୍ଥ । ଏହି ଗ୍ରନ୍ଥରେ ଧର୍ମ ସାକ୍ଷାତ୍ ମୂର୍ତ୍ତିମାନ୍ ହୋଇ ବିରାଜମାନ କରିଛନ୍ତି । ତେଣୁ ସର୍ବପ୍ରଥମେ ମୁଁ ହରିଭକ୍ତି ରୂପକ ଅତି ଉତ୍ତମ ଏହି ମହାନ୍ ଭାଗବତ ଧର୍ମକୁ ପ୍ରଣାମ କରୁଛି । ଗ୍ରନ୍ଥର ଆମୂଳଚୂଳସ୍ଥ ସର୍ବତ୍ର ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ମଧ ମୁଁ ପ୍ରଣାମ କରୁଛି । ଆପଣମାନେ ସମସ୍ତେ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଏହି ପୁଣ୍ୟକଥାଗୁଡ଼ିକ ଶ୍ରବଣ କରିଛନ୍ତି, ତେଣୁ ଆପଣମାନଙ୍କୁ ମୁଁ ଅଭିବାଦନ ଜଣାଉଛି । ସମସ୍ତଙ୍କୁ ପ୍ରଣାମ କରୁଛି । ଏବେ ଆପଣମାନେ ଗ୍ରନ୍ଥର ସତ୍ୟ-ସନାତନ-ଧର୍ମ ବିଷୟ ଶ୍ରବଣ କରନ୍ତୁ ।

''ମୁନିଗଣ ! ସମସ୍ତ ସୃଷ୍ଟିର ସକଳ କର୍ମକାଣ୍ଡ ଉପାସନା ତଥା ଭକ୍ତିର ପ୍ରବର୍ତ୍ତକ ହେଉଛନ୍ତି ସ୍ୱୟଂ ଶ୍ରୀହରି । ଏ ସମଗ୍ର ଜଗତ୍ ହରିମୟ । ଶ୍ରୀ ହରି ହିଁ ଲୀଳାବିଳାସ ପାଇଁ ଜଗନ୍ମୟ ହୋଇଛନ୍ତି । ସେ ସର୍ବତ୍ର ବିରାଜମାନ କରିଛନ୍ତି । ତାଙ୍କ ବିନା କାହାରି ଅସ୍ତିତ୍ୱ ନାହିଁ । ସେ ହିଁ ମାୟା, ସେ ହିଁ ବିଦ୍ୟା, ସେ ହିଁ ଅବିଦ୍ୟା, ସେ ହିଁ ଲକ୍ଷ୍ମୀ ଓ ସେ ହିଁ ନାରାୟଣ । ସେ ସ୍ୱୟଂ ଶ୍ରୀ କୃଷ୍ଣ ଓ ଶ୍ରୀ ରାଧା । ଅନନ୍ତକୋଟି ବ୍ରହ୍ମାଣ୍ଡ ତାଙ୍କଠାରୁ ଉତ୍ପନ୍ନ ହୋଇଛି ଓ ଶେଷରେ ତାଙ୍କରିଠାରେ ହିଁ ସମସ୍ତ ବିଲୀନ ହୋଇଯାଏ ।

''ଏହି ବ୍ରହ୍ମାଣ୍ଡକୁ ଉତ୍ପନ୍ନ କରିବା ପାଇଁ ପ୍ରଥମେ ଭଗବାନ୍ ବିଷ୍ଣୁ ଆତ୍ମ ପ୍ରକାଶ କଲେ । ଏହା ପରେ ସ୍ୱୟଂ ବ୍ରହ୍ମା ହୋଇଗଲେ । ଏବେ ଏକରୁ ଦୁଇ ହେଲେ । ଜ୍ଞାନ ଓ ଅଜ୍ଞାନର ଭେଦଭାବ ହେଲା । ବ୍ରହ୍ମା କିଛି ବୁଝି ପାରିଲେ ନାହିଁ । ସେ କଲ୍ୟାଣମାର୍ଗ ଅନ୍ୱେଷଣ କରିବାକୁ ଲାଗିଲେ । ଭାଗବତଧର୍ମ ସମ୍ବନ୍ଧରେ ତାଙ୍କ ମନରେ ଜିଜ୍ଞାସା ଜାତ ହେଲା । ସେ ସେହି ବ୍ରହ୍ମା ରୂପରେ ଶିଷ୍ୟତ୍ୱ ଗ୍ରହଣ କଲେ ଓ ବିଷ୍ଣୁ ରୂପରେ ଗୁରୁ ହେଲେ ଓ ଭଗବାନ୍ ବିଷ୍ଣୁଙ୍କର ଶରଣ ନେଲେ । ଭାଗବତ ଧର୍ମ ସମ୍ବନ୍ଧରେ ଜିଜ୍ଞାସା କଲେ । ସେତେବେଳେ ସେ 'ତପ' ଏହି ଦୁଇ ଅକ୍ଷର ବିଶିଷ୍ଟ ଶବ୍ଦରେ ଭାଗବତଧର୍ମ ଉପଦେଶ ଦେଲେ । ତପ କରୁ କରୁ ଭଗବାନ୍ ବ୍ରହ୍ମାଙ୍କ ହୃଦୟରେ ଅବସ୍ଥାନ କଲେ । ତାଙ୍କର ସମସ୍ତ ଭାଗବତ ଧର୍ମର ଜ୍ଞାନ ହୋଇଗଲା । ପୁନଶ୍ଚ ବ୍ରହ୍ମାଙ୍କର ମାନସପୁତ୍ର ନାରଦଙ୍କର ଭାଗବତ ଧର୍ମ ଜାଣିବାକୁ ଇଚ୍ଛା ହେଲା । ନାରଦଙ୍କର ବୁଦ୍ଧି ବ୍ରହ୍ମାଙ୍କଠାରୁ କିଛି ସ୍ଥୂଳ ଥିଲା, ତେଣୁ ବ୍ରହ୍ମା ପାଞ୍ଚଟି ଶ୍ଳୋକରେ ସମସ୍ତ ଭାଗବତ ଧର୍ମ ତାଙ୍କୁ ଉପଦେଶ ଦେଲେ । ପୁନଶ୍ଚ ପରାଶରନନ୍ଦନ ବ୍ୟାସଙ୍କର ଭାଗବତ ଧର୍ମ ଜାଣିବାକୁ ଇଚ୍ଛା ହେବାରୁ ନାରଦ କୃପାକରି କେତେକ ଅଧ୍ୟାୟରେ ତାଙ୍କୁ ଉପଦେଶ ଦେଇ କହିଲେ, ''ଦେଖନ୍ତୁ, ମୁଁ ଆପଣଙ୍କୁ ସଙ୍କେତ ମାତ୍ର ଦେଲି । ଆପଣ ସମାଧିରେ ଭଗବାନଙ୍କର ସମସ୍ତ ବିଭୂତି ଅନୁଭବ କରନ୍ତୁ ଓ ତାହା ଲୋକକଲ୍ୟାଣ ନିମିତ୍ତ ବିସ୍ତାରିତ ରୂପେ ବର୍ଣ୍ଣନା କରନ୍ତୁ । ଏହାଦ୍ୱାରା ସର୍ବସାଧାରଣ ଏହି ଜ୍ଞାନକୁ ଭଲଭାବରେ ବୁଝିପାରିବେ ।''

''ଭଗବାନ୍ ବ୍ୟାସ ନିଜର ଗୁରୁଦେବଙ୍କର ଆଜ୍ଞା ଶିରୋଧାର୍ଯ୍ୟ କଲେ ଓ ଏହି ଭାଗବତ ସଂହିତା ରଚନା କଲେ । ପରମହଂସ ଚକ୍ର ଚୂଡ଼ାମଣି ମୋର ଗୁରୁଦେବ ଭଗବାନ ଶୁକ ନିଜର ପିତା ଭଗବାନ୍ ବ୍ୟାସଙ୍କଠାରୁ ଏହି ସଂହିତା ଶିକ୍ଷା କଲେ । ଯେତେବେଳେ ରାଜା ପରୀକ୍ଷିତଙ୍କୁ ସେ ଏହି ସାତ୍ୱତ ସଂହିତା ଶୁଣାଇଲେ, ସେତେବେଳେ ଏହା ଆହୁରି ଅଧିକ ବିସ୍ତାରିତ ହେଲା । ସେହି ସଭାରେ ମୁଁ ମଧ ତାହା ଶ୍ରବଣ କରିଥିଲି ଓ ଶୁଣି ଶୁଣି ସମସ୍ତ ମନେ ରଖିଛି । ନୈମିଷାରଣ୍ୟ ଆସି ମୁଁ ଆପଣମାନଙ୍କୁ ଏହା ଶୁଣାଇଲି । ଏହାଦ୍ୱାରା ଭାଗବତ ଧର୍ମ ଆହୁରି ଅଧିକ ବିସ୍ତାରିତ ହେଲା । ସେତେବେଳେ ମୋ ମନ ମଧ୍ୟରେ ଗୁରୁକୃପାରୁ ଏକ ଭାବନା ଉଦୟ ହେଲା । ମୁଁ ଚିନ୍ତାକଲି, 'ଏପର୍ଯ୍ୟନ୍ତ ତ ସମସ୍ତ ଲୋକ ନିର୍ମଳ ବୁଦ୍ଧି ହୋଇପାରିଛନ୍ତି, ସେମାନଙ୍କର ଧୀଶକ୍ତି ବିପୁଳ ଓ ତୀବ୍ର ଜଣାପଡୁଛି । ଭବିଷ୍ୟତରେ

ଘୋର କଳିଯୁଗର ଲୋକ କ୍ଷୁଦ୍ରବୁଦ୍ଧି ତଥା ମନ୍ଦବୁଦ୍ଧି ବିଶିଷ୍ଟ ହେବେ । ତେଣୁ ମୁଁ ବ୍ୟାସଦେବଙ୍କ କୃତ ସଂହିତାକୁ ଲିପିବଦ୍ଧ କରିବି ।'

''ଏହିକଥା ଚିନ୍ତାକରି ମୁଁ ସେହି ସଂହିତାକୁ ଲିପିବଦ୍ଧ କଲି । ଆହୁରି ମଧ୍ୟ ମୋ ମନରେ ସଂଶୟ ରହିଗଲା ଯେ, ଏଥିରେ କାଳେ କୌଣସି ତ୍ରୁଟି ରହି ଯାଇଥିବ । ତେଣୁ ମୁଁ ତାହାକୁ ନେଇ ନିଜ ଗୁରୁଙ୍କର ଗୁରୁ ଜଗଦ୍‌ଗୁରୁ ଭଗବାନ୍ ବ୍ୟାସଙ୍କୁ ତାହା ଦେଲି । ଭଗବାନ୍ ବ୍ୟାସ ଆମୂଳଚୂଳ ତାହା ଅବଲୋକନ କଲେ ଓ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ—'ସୂତ ! ତୁମେ ଅତି ଭଲ କାମ କରିଛ । ମୋ ସଂହିତାକୁ ତୁମେ ଯଥାର୍ଥରୂପେ ଲିପିବଦ୍ଧ କରିପାରିଛ । ଏବେ ଏହା ସର୍ବସାଧାରଣ ବୁଝିପାରିବେ । ଏହି ଅଠର ହଜାର ଶ୍ଳୋକବିଶିଷ୍ଟ ମୋର ସଂହିତା ସଂସାରରେ ସର୍ବତ୍ର ପ୍ରଚାର ହେବ । ମୁକ୍ତ, ମୁମୁକ୍ଷୁ ଓ ବଦ୍ଧ ସଂସାରୀ ଲୋକ ସମସ୍ତେ ଏହା ଶୁଣି କୃତାର୍ଥ ହେବେ । ଏବେ ଘୋର କଳିଯୁଗ ଆସିଯିବ । ତୁମେ ଏହି ସଂହିତାକୁ ଏଠାରେ ରଖି ଊର୍ଦ୍ଧ୍ୱରେତା ଋଷିମାନଙ୍କ ସଙ୍ଗରେ ଜନଲୋକକୁ ଚାଲିଯାଅ । ଘୋର କଳି ଆସିଗଲେ ଏହି ନୈମିଷାରଣ୍ୟର ଅଠାଅଶୀ ହଜାର ଋଷି ଜନଲୋକ ଚାଲିଯିବେ । ତୁମେ ଯାଇ ସେମାନଙ୍କୁ ସେଠାରେ ଏହିକଥା ଆହୁରି ଅଧିକ ବିସ୍ତାରିତ ଭାବରେ ଶୁଣାଅ ।'

''ମୁନିଗଣ ! ନିଜର ପରମଗୁରୁ ଭଗବାନ୍ ବ୍ୟାସଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ମୁଁ ଆପଣମାନଙ୍କୁ ଭାଗବତ କଥା ଶୁଣାଇବା ପାଇଁ ଏଠାକୁ ଆସିଲି । ଏବେ ବିଶ୍ୱରେ ସର୍ବତ୍ର କଳିଯୁଗ ତାହାର ପ୍ରଭାବ ବିସ୍ତାର କଲାଣି । ଯେ ପର୍ଯ୍ୟନ୍ତ କଳିଯୁଗ ପାଞ୍ଚ ହଜାରବର୍ଷ ଭୋଗ ନ ହୋଇଛି, ସେ ପର୍ଯ୍ୟନ୍ତ କଳି ତାହାର ପ୍ରଭାବ ବିସ୍ତାର କରି ଚାଲିଥିବ । ଲୋକମାନେ ଅର୍ଥପରାୟଣ ହୋଇ ଅତ୍ୟନ୍ତ ଲୋଭଗ୍ରସ୍ତ ହେଉଥିବେ । ଏବେ ଲୋକମାନେ ଅର୍ଥପରାୟଣ ଓ ପ୍ରଭାବଶାଳୀ ହୋଇଗଲେଣି । ପାଞ୍ଚ ହଜାରବର୍ଷ ପୂର୍ବରୁ ସାଧାରଣ ଲୋକେ ଧର୍ମପରାୟଣ ଥିଲେ । ଏବେ ରାଜା ନାହାନ୍ତି, ପ୍ରକୃତ ଜ୍ଞାନୀଙ୍କ ସଂଖ୍ୟା ହ୍ରାସ ପାଇଛି । ତପସ୍ୱୀ ଦେଖିବାକୁ ଦୁର୍ଲଭ । ଲୋକମାନେ ଦିନରାତି ଅନ୍ନ ଚିନ୍ତାରେ ବ୍ୟସ୍ତ । ସଦ୍‌ଗୁଣ ସମ୍ପୂର୍ଣ୍ଣ ଲୋପ ହେବାକୁ ବସିଲାଣି । ଶାସକମାନେ ନିଜ ନିଜ ସ୍ୱାର୍ଥସାଧନରେ ତତ୍ପର । ସମସ୍ତ ଲୋକ ନିଜ ନିଜକୁ ଦମ୍ଭ ଓ ଗର୍ବରେ ଅତି ବୁଦ୍ଧିମାନ ମନେ କରୁଛନ୍ତି । ସଂସ୍କୃତ ତଥା ଦେବବାଣୀର ପଠନ-ପାଠନ ଲୋପ ହୋଇଯାଇଛି । ସମସ୍ତେ ବିଦେଶୀ ଭାଷା ପ୍ରତି ଓ ପାଶ୍ଚାତ୍ୟ ସଂସ୍କୃତି ପରାୟଣ ହୋଇ ନିଜ ନିଜକୁ ଗୌରବାନ୍ୱିତ ମନେ କରୁଛନ୍ତି । ଯେଉଁମାନେ ଭୌତିକ ବିଜ୍ଞାନଦ୍ୱାରା ଅଧିକ ଜନସଂହାରକ ତଥା ବିଷୟବର୍ଦ୍ଧକ ବସ୍ତୁ ଆବିଷ୍କାର କରୁଛନ୍ତି, ଲୋକମାନେ ସେମାନଙ୍କୁ ବିଜ୍ଞାନୀ ବୋଲି କହୁଛନ୍ତି । ଭଗବଦ୍ ଚର୍ଚ୍ଚା ଦିଗରୁ ଲୋକମାନେ ଏବେ ପରାଙ୍ମୁଖ ।

''ଏହି କାରଣରୁ ମୁଁ ଚିନ୍ତା କଲି ଯେ, ଭଗବଦ୍ ଧର୍ମର ଅସ୍ତିତ୍ୱ ରହିବ କିପରି ? ଭାଗବତ କଥାଗୁଡ଼ିକର ପ୍ରଚାର କିପରି ହୋଇପାରିବ ? ଲୋକମାନେ ଉପନ୍ୟାସର ପରିକଳ୍ପିତ ଦୂଷିତ କାହାଣୀଗୁଡ଼ିକୁ ପଢ଼ିବାରେ ଏବେ ତ ଅତ୍ୟନ୍ତ ଆଗ୍ରହୀ । ସେମାନଙ୍କର କଲ୍ୟାଣ କିପରି ହେବ ? ଲୋକମାନେ ଏବେ ପରମାର୍ଥ ପଥକୁ ଭୁଲି ଯିବାକୁ ବସିଲେଣି । ଜନଲୋକରେ ମୋତେ ଏହି ଚିନ୍ତା ମଧ୍ୟ ହେଲା ଓ ଆପଣମାନଙ୍କୁ ମୁଁ ଦେବବାଣୀରେ ଭାଗବତ କଥା ଶୁଣାଇଲି । ଦିନେ ନାରଦ ମୁନି ଜନଲୋକରେ ଆସି ପହଞ୍ଚିଗଲେ । ଆପଣମାନେ ତାଙ୍କର ସ୍ୱାଗତ ସମ୍ବର୍ଦ୍ଧନା କଲେ । ମୁଁ ମଧ୍ୟ ଅର୍ଘ୍ୟାର୍ଚ୍ଚନା କଲି । ନାରଦ ମୋତେ ପଚାରିଲେ—'ସୂତ ! ତୁମେ ଏତେ ଉଦାସ କାହିଁକି ଜଣା ପଡୁଛ ? ମୁଁ ବୁଝିପାରୁଛି, ତୁମର କୌଣସି ମାନସିକ ଚିନ୍ତା ହେଉଛି ।'

ମୁଁ କହିଲି—''ଦେବର୍ଷି ! ଆପଣ ତ୍ରିକାଳଜ୍ଞ । ସମସ୍ତଙ୍କର ଅନ୍ତର କଥା ଆପଣଙ୍କୁ

ଜଣା । ମୋର ମାନସିକ ଚିନ୍ତା କ'ଣ କେବେ ଆପଣଙ୍କୁ ଅଜଣା ଥିବ ? ଆପଣ ଏବେ କେଉଁଠାରୁ ଆସି ଏଠାରେ ପଦାର୍ପଣ କଲେ, କୁହନ୍ତୁ ?''

ନାରଦ କହିଲେ—''ମୁଁ ବର୍ତ୍ତମାନ ଭାରତବର୍ଷରୁ ଆସି ଏହି ଜନଲୋକରେ ପଦାର୍ପଣ କରୁଛି ।''

ମୁଁ ପଚାରିଲି—''ତାହାହେଲେ କହନ୍ତୁ ତ, ପୁଣ୍ୟଭୂମି ଭାରତବର୍ଷର ଖବର କ'ଣ ?''

ନାରଦ କହିଲେ—''ଭାରତବର୍ଷର ହାଲଚାଲ ମୋତେ ପଚାରୁଛନ୍ତି କ'ଣ ସୂତ ! ଯେଉଁ ପୁଣ୍ୟଭୂମିରେ ନିରନ୍ତର ଯାଗ, ଯଜ୍ଞ, ପର୍ବ, ଉତ୍ସବ ଆଦି ହେଉଥିଲା, ସେହି ଭୂମିରେ ଏବେ କୃଷ୍ଣକଥା କିମ୍ବା କୃଷ୍ଣକୀର୍ତ୍ତନ ବି ହେଉ ନାହିଁ । ଅଧର୍ମୀ ଭୌତିକବାଦୀ ବିଦେଶୀମାନଙ୍କ ପଦାଙ୍କ ଅନୁସରଣ କରି ଚାଲିଛନ୍ତି । ସେମାନଙ୍କର ସଭ୍ୟତାକୁ ସର୍ବଶ୍ରେଷ୍ଠ ବୋଲି ମୂଢ଼ମାନେ ବିଚାର କରୁଛନ୍ତି । ଲୋକମାନେ ପ୍ରାଚୀନ ଇତିହାସ, ପୁରାଣ ଆଦିକୁ ରହସ୍ୟରେ ଉଡ଼ାଇ ଦେଉଛନ୍ତି । କୃଷ୍ଣ-କୀର୍ତ୍ତନ କରିବାକୁ ଲଜ୍ଜା ବୋଧ କରୁଛନ୍ତି । ଭାଗବତ କଥା ଶୁଣିବାକୁ ପରାଙ୍‌ମୁଖ ହେଉଛନ୍ତି ଓ କହୁଛନ୍ତି ସେଗୁଡ଼ିକ କପୋଳକଳ୍ପିତ । ସାହିତ୍ୟ ନାମରେ ଦୁରାଚାର ନଗ୍ନସାହିତ୍ୟ ସର୍ବତ୍ର ପ୍ରଚାରିତ ହେଉଅଛି ।''

ମୁଁ ଅତ୍ୟନ୍ତ ଦୁଃଖିତ ହୋଇ କହିଲି—''ମହାରାଜ ! ଏଥିରେ ଦୋଷ କାହାକୁ ଦିଆଯିବ ? ଏହା ତ ସମୟର ପ୍ରଭାବ । କଳିଯୁଗର ଅଧର୍ମ ସହିତ ଘନିଷ୍ଠ ସମ୍ପର୍କ । ଏ ଯୁଗର ଶେଷକୁ ଅଧର୍ମ ଆହୁରି ବଢ଼ିବ ।

ନାରଦ କହିଲେ—''ହେ ସୂତ ! ତୁମେ ଯାହା କହୁଛ ତାହା ସତ୍ୟ । କଳିଯୁଗର ଲୋକଙ୍କର ଅଧର୍ମରେ ସ୍ୱାଭାବିକ ପ୍ରବୃତ୍ତି । ତଥାପି କେତେକ ଲୋକଙ୍କର ହରିନାମ କୀର୍ତ୍ତନ କରିବାରେ ଶ୍ରଦ୍ଧା ରହିବ । କାରଣ କୌଣସି ବସ୍ତୁର ବୀଜ କେବେହେଲେ ନାଶ ହୁଏ ନାହିଁ । ଏବେ ମଧ୍ୟ ଭାରତବର୍ଷରେ ସମୟ ସମୟରେ ସନ୍ଥ, ମହାତ୍ମା ଓ ଭଗବଦ୍ଭକ୍ତ ଜନ୍ମଗ୍ରହଣ କରୁଛନ୍ତି ଓ ନାମସଂକୀର୍ତ୍ତନ ଏବଂ ନାମଜପର ପ୍ରଚାର କରୁଛନ୍ତି । କେତେକ ଲୋକ ଭଗବନ୍ନାମ କୀର୍ତ୍ତନ ମଧ୍ୟ କରୁଛନ୍ତି । ଧର୍ମର ଲୋପ କେବେହେଲେ ହୁଏ ନାହିଁ । ଏବେ ସ୍ଥାନେ ସ୍ଥାନେ ଯାଗ ଯଜ୍ଞ ମଧ୍ୟ ହେଉଅଛି । ଭଗବନ୍ନାମ ସଂକୀର୍ତ୍ତନ ମହୋତ୍ସବ ମଧ୍ୟ ହେଉଅଛି । କିନ୍ତୁ ଭାଗବତ କଥାର ପ୍ରଚାର ସେତେ ହେଉ ନାହିଁ । ଏଥିରେ ଲୋକଙ୍କର ଦୋଷ ନାହିଁ, କାରଣ କଳିଯୁଗର ପ୍ରଭାବରେ ଲୋକେ ସାଧନ ଭଜନ କରିବାକୁ କୁଣ୍ଠାବୋଧ କରୁଛନ୍ତି ।''

ମୁଁ କହିଲି—''ମହାରାଜ ! ଏହା ଲୋକମାନଙ୍କର ମୂର୍ଖତା । ମୁଁ କେତେ ସୁନ୍ଦର ଭାଗବତ କଥା ଲିପିବଦ୍ଧ କରି ଛାଡ଼ିଆସିଲି । ଯଦି ଲୋକମାନେ ତାହା ପାଠ କରନ୍ତେ ଓ ଭାଗବତ ସପ୍ତାହ କରନ୍ତେ, ତାହାହେଲେ ପ୍ରାଣୀମାତ୍ରର କଲ୍ୟାଣ ହୁଅନ୍ତା । ଶ୍ରୀମଦ୍‌ଭଗବତରେ ତ ଭଗବାନ୍ ବ୍ୟାସ ସମସ୍ତ ବେଦର ଇତିହାସ ସାରାତିସାର ତତ୍ତ୍ୱ ପ୍ରକାଶ କରିଛନ୍ତି ।''

ନାରଦ କହିଲେ—''ସୂତ ! ତୁମେ ଯାହା କହିଲ ତାହା ସତ୍ୟ । ଶ୍ରୀମଦ୍‌ଭଗବତରେ ସବୁକିଛି ରହିଛି । ଭାଗବତଧର୍ମର ଏତେ ଉତ୍କୃଷ୍ଟ ଗ୍ରନ୍ଥ ଅନ୍ୟ କେଉଁଠାରେ ପ୍ରାପ୍ତ ହେବା ସମ୍ଭବ ନୁହେଁ । ଭାରତବର୍ଷରେ ଏହାର ପ୍ରଚାର ହେଉଅଛି । ସ୍ଥାନେ ସ୍ଥାନେ ଭାଗବତ ସପ୍ତାହ ମଧ୍ୟ ପାଳିତ ହେଉଛି । କିନ୍ତୁ ଏହି ତତ୍ତ୍ୱପୂର୍ଣ୍ଣ ଗ୍ରନ୍ଥର ସାରତତ୍ତ୍ୱକୁ ବୁଝିବାରେ ସମସ୍ତେ ସମର୍ଥ ହେଉନାହାନ୍ତି । ଏଥିରୁ ଲୋକମାନଙ୍କୁ ରସ ମିଳୁ ନାହିଁ, କେବଳ ବିଧି ଅନୁସାରେ ବାଧ୍ୟ ହୋଇ ଲୋକମାନେ ଏହି ଭାଗବତ ସପ୍ତାହ ପାଳନ କରୁଥିବାର ଦେଖାଯାଉଛି ।''

ମୁଁ କହିଲି—''ମହାରାଜ ! ନ ବୁଝିବାର ତ ଏପରି କୌଣସି କାରଣ ନାହିଁ । ଭଗବାନ୍ ବ୍ୟାସ ତ ଗୂଢ଼ ତତ୍ତ୍ୱଗୁଡ଼ିକୁ ଅତି ସରଳ ଭାଷାରେ ବୁଝାଇଛନ୍ତି ।''

ନାରଦ କହିଲେ—''ଭାଇ ! ଏସବୁ ତ ସତ୍ୟ, କିନ୍ତୁ ଯୁଗର ମଧ୍ୟ କିଛି ପ୍ରଭାବ ପଡୁଛି । ପ୍ରଥମେ ତ ପ୍ରତ୍ୟେକଙ୍କର ପୌରାଣିକ କଥାର ଜ୍ଞାନ, ଭକ୍ତି ତଥା ଇତିହାସର ଜ୍ଞାନ ଥିଲା, ସମସ୍ତେ ସଂକେତମାତ୍ରେ ବୁଝି ପାରୁଥିଲେ । ଏବେ ସେହି କଥାକୁ ଯଦି ସମ୍ପୂର୍ଣ୍ଣରୂପେ ନ ଶୁଣୁଛନ୍ତି, ତାହାହେଲେ କେହି ତାହା ବୁଝିପାରୁ ନାହାନ୍ତି । ଦ୍ୱିତୀୟତଃ ଏବେ ଭାରତର ବ୍ୟାପକ ଭାଷା ହେଉଛି ହିନ୍ଦୀ । ହିନ୍ଦୀରେ ଯେଉଁ କଥା କୁହାଯାଇଛି, ତାହା ସମସ୍ତେ ବୁଝିପାରୁ ନାହାନ୍ତି । ତୃତୀୟରେ ଗୂଢ଼ତତ୍ତ୍ୱ ବୁଝିବା ପାଇଁ ଦୃଷ୍ଟାନ୍ତର ଅଭାବ । ଏପରି କୌଣସି କଥାର ବିସ୍ତୃତ ଗ୍ରନ୍ଥ ଯଦି ଥାଆନ୍ତା, ତାହାହେଲେ ଜିଜ୍ଞାସୁମାନଙ୍କର ପିପାସା ଶାନ୍ତ ହୋଇ ପାରନ୍ତା । ଯଦି ଆପଣ ଏହା ଭାବୁଥାଆନ୍ତି ଯେ, ଭାରତବର୍ଷରେ ଭାଗବତ କଥାର ପ୍ରସାର ହେବା ଉଚିତ୍, ତାହାହେଲେ ଆପଣ ଗୋଟିଏ କାମ କରନ୍ତୁ ।''

ମୁଁ ପଚାରିଲି—''କି କାମ କରିବି ମହାରାଜ ! ଆପଣ ମୋତେ ଯେଉଁ ଆଜ୍ଞା ଦେବେ, ତାହା ମୁଁ ପାଳନ କରିବି ।''

ନାରଦ କହିଲେ—''ଏବେ ଆପଣ ଦେବଭାଷାରେ କଥା ନ କହି ସରଳ ଭାଷାରେ ଲୋକମାନଙ୍କୁ କୁହନ୍ତୁ । ତାହାହେଲେ ଭାରତବର୍ଷରେ ତାହା ଖୁବ୍ ଶୀଘ୍ର ପ୍ରଚାରିତ ହୋଇପାରିବ ।''

ମୁଁ କହିଲି, ''ମହାରାଜ ! ସରଳ ଭାଷାରେ ତ ମୁଁ ବୁଝାଇ ପାରିବି । କିନ୍ତୁ ମୁଁ ଯଦି କେବଳ ହିନ୍ଦୀଭାଷାରେ ବୁଝାଇ କହେ, ତାହାହେଲେ ଏହା ଭାରତବର୍ଷରେ କିପରି ସର୍ବତ୍ର ପ୍ରଚାରିତ ହେବ ?''

ନାରଦ କହିଲେ—''ମୁଁ ତାହାର ସୁବ୍ୟବସ୍ଥା କରିସାରିଛି । ମୁଁ ମଧ୍ୟ ବୀଣା ବଜାଇ ବଜାଇ ଏହି ଭାବନାରେ ସମସ୍ତ ଲୋକରେ ଭ୍ରମଣ କରୁଛି । ଲୋକମାନେ କିପରି ପାରମାର୍ଥିକ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଏହାର ପ୍ରଚାର ଓ ପ୍ରସାର କରନ୍ତୁ ଏପରି ଉଦ୍ଦେଶ୍ୟ ରଖିଛି ।''

ମୁଁ ଆଗ୍ରହର ସହିତ ନାରଦଙ୍କୁ ପଚାରିଲି—''ଭଗବନ୍ ! ଆପଣ କି ବ୍ୟବସ୍ଥା କରିଛନ୍ତି ? ତାହା ମୋତେ କହନ୍ତୁ ।''

ନାରଦ କହିଲେ—''ପ୍ରତିଷ୍ଠାନପୁର (ପ୍ରୟାଗରାଜର) ଜଣେ ଅଳ୍ପମତି ବ୍ୟକ୍ତି ହେଉଛନ୍ତି ପ୍ରଭୁଦତ୍ତ । ସେ ହିନ୍ଦୀଭାଷାରେ ଭାଗବତ କଥା ଲେଖିବେ । ତାହାକୁ ସବୁ ଶ୍ରେଣୀରଲୋକ ଆଗ୍ରହ ସହକାରେ ପାଠ କରିବେ । ଏହାଦ୍ୱାରା ଲୋକଙ୍କର ଧାର୍ମିକ ଭାବନା ଜାଗ୍ରତ ହେବ ଓ ସେମାନଙ୍କର ମନୋରଞ୍ଜନ ବି ହେବ ।''

ମୁଁ କହିଲି—''ଭଗବନ୍ ! ଯେଉଁ ବ୍ୟକ୍ତି ଅଳ୍ପମତି, ସେ ମୋଦ୍ୱାରା କୁହାଯାଇଥିବା ଭାଗବତ କଥା କ'ଣ ଲେଖିପାରିବେ ?''

ନାରଦ କହିଲେ—''ସୂତ ! ଆପଣ ଭଗବନ୍ନାମର ମହିମା କ'ଣ ଭୁଲିଗଲେ ? ଭଗବନ୍ନାମ ପ୍ରଭାବରେ ଅସମ୍ଭବ ମଧ୍ୟ ସମ୍ଭବ ହୋଇପାରେ । ଅପାଠୁଆ ବି ବେଦପାଠ କରିପାରେ । ମୁଁ ତାଙ୍କୁ ଭଗବନ୍ନାମର ଶିକ୍ଷାଦୀକ୍ଷା ଦେଇ ଯୋଗ୍ୟ କରିଦେଇଛି ।''

ମୁଁ କହିଲି—''ଭଗବନ୍ ! କଳିଯୁଗରେ ଆପଣ ତ କାହାରିକୁ ପ୍ରତ୍ୟକ୍ଷ ଭାବରେ ଶିକ୍ଷାଦୀକ୍ଷା ଦିଅନ୍ତି ନାହିଁ । ପୁନଶ୍ଚ ଆପଣ ପ୍ରଭୁଦତ୍ତଙ୍କୁ କିପରି ଶିକ୍ଷାଦୀକ୍ଷା ଦେଲେ ?''

ନାରଦ କହିଲେ—''ସୂତ ! ଯାହାଦ୍ୱାରା ମୁଁ ଯେଉଁକାର୍ଯ୍ୟ ହାସଲ କରିବାକୁ ଚାହେଁ, ତାଙ୍କୁ ସେହିପରି ଉପଯୁକ୍ତ କରିଥାଏ । ମୁଁ ତାଙ୍କୁ ଭକ୍ତରୂପରେ ନାମର ଶିକ୍ଷାଦୀକ୍ଷା ପ୍ରଦାନ କରିଛି ।''

ମୁଁ କହିଲି—''ଭକ୍ତରୂପରେ ଆପଣ ସେହି ଅଳ୍ପମତି ବ୍ୟକ୍ତି ଉପରେ କିପରି କୃପା କରିଥିଲେ, ତାହା କୃପାକରି ମୋତେ କହନ୍ତୁ ।''

ନାରଦ କହିଲେ—"ସୂତ ! ପ୍ରୟାଗ ପ୍ରତିଷ୍ଠାନପୁର ପୃଥ୍ୱୀ ଦେବୀଙ୍କର ଜଘନ ସ୍ଥାନ ଅଟେ । ସ୍ତ୍ରୀଲୋକମାନଙ୍କର ଜଘନ ହିଁ ସର୍ବୋତ୍କୃଷ୍ଟ ସ୍ଥାନ ଅଟେ । ପ୍ରୟାଗରେ ତ୍ରୈଲୋକ୍ୟପାବନୀ ଗଙ୍ଗା ଯମୁନା ଏକତ୍ର ମିଳିତ ହୋଇଛନ୍ତି । ସେଠାରେ କଦାପି କ୍ଷୟ ହେଉ ନ ଥିବା ଅକ୍ଷୟବଟ ବିରାଜମାନ । ପ୍ରୟାଗରାଜ ସମସ୍ତ ତୀର୍ଥ ମଧ୍ୟରେ ରାଜା । ପୃଥିବୀରେ ଅନ୍ୟତ୍ର କେଉଁଠି ଏପରି କ୍ଷେତ୍ର ନାହିଁ । ଭଗବାନ୍ ଶ୍ରୀକୃଷ୍ଣ ବ୍ରଜଭୂମିରୁ ପ୍ରଭୁଦତ୍ତଙ୍କୁ ଏଠାକୁ ପ୍ରେରଣ କରିଛନ୍ତି । ସେ ରସମୟୀ ବ୍ରଜଭୂମିକୁ ଛାଡ଼ି ଏଠାକୁ ଆସିବାକୁ ଚାହୁଁ ନ ଥିଲେ । କିନ୍ତୁ ବ୍ରଜେଶ ଯେତେବେଳେ ଇଚ୍ଛା କରି ପଠାଇଲେ, ସେତେବେଳେ କାହାର ଅବା କ'ଣ ଚାରା ଅଛି ? ସେ ଆସିବାକୁ ବାଧ୍ୟ ହେଲେ ଓ ତାଙ୍କୁ ସନ୍ଧ୍ୟାବଟ ତଳେ ନିବାସ କରିବାକୁ ପଡ଼ିଲା । ମୋ ଦୃଷ୍ଟି ସେଠାରେ ପଡ଼ିବା ମାତ୍ରେ ମୁଁ ସଙ୍ଗେ ସଙ୍ଗେ ବୁଝିପାରିଲି ଯେ, ଭଗବାନ ବ୍ରଜେନ୍ଦ୍ରନନ୍ଦନ ତାଙ୍କୁ କୌଣସି କାର୍ଯ୍ୟ ପାଇଁ ପଠାଇଛନ୍ତି । ସେ ପ୍ରତ୍ୟହ ଶ୍ରୀରାଧାକୃଷ୍ଣଙ୍କ ମନ୍ଦିରରୁ ପୁରାଣକଥା ଶୁଣି କାଶୀର ଅନ୍ୟ ଏକ ପୁଷ୍କରିଣୀ ପର୍ଯ୍ୟନ୍ତ ଭ୍ରମଣ କରିବାକୁ ଯାଆନ୍ତି ।

ଥରେ ମାଘ ମାସରେ ମୁଁ ମୋର କେତେକ ଭକ୍ତଙ୍କ ସହିତ ଲାଲ ପତାକା ଧରି "ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ ।" ଏହି ପରମପ୍ରିୟ ମନ୍ତ୍ର କୀର୍ତ୍ତନ କରି କରି ତ୍ରିବେଣୀ ତୀର୍ଥକୁ ଯାତ୍ରା କରୁଥିଲି । ସେ ସେହି ପୁଷ୍କରିଣୀ କୂଳରେ ବସିଥିଲେ । ସେ ଯେଉଁ ମୁହୂର୍ତ୍ତରେ ଏହି ମନ୍ତ୍ର ଶ୍ରବଣ କଲେ ସେହି ମୁହୂର୍ତ୍ତରେ ତାଙ୍କର ସର୍ବାଙ୍ଗରେ ବିଦ୍ୟୁତ୍ ଭଳି ଝଲକ ଖେଳିଗଲା । ସେ ମୋ ସ୍ୱରରେ ସ୍ୱର ମିଳାଇ ସେହି ମନ୍ତ୍ର କୀର୍ତ୍ତନ କରି କରି ମୋ ପଛେ ପଛେ ଚାଲିଲେ । ହଂସତୀର୍ଥ ପର୍ଯ୍ୟନ୍ତ ସେ ମୋ ପଛେ ପଛେ ଆସିଲେ । ସେତେବେଳେ ଏହି ମନ୍ତ୍ର ତାଙ୍କର ଇଷ୍ଟମନ୍ତ୍ରରେ ପରିଣତ ହୋଇଗଲା । ଅହର୍ନିଶ ସେ ଏହି ମନ୍ତ୍ର କୀର୍ତ୍ତନ କରିବାକୁ ଲାଗିଲେ । ସେହିଦିନଠାରୁ ସେ ଏହି ଚାରିଟି କର୍ମ କରିବାରେ ଲାଗିଲେ :—

୧. ଆପଣଙ୍କ ପ୍ରଣୀତ ଭାଗବତ ସଂହିତାର ବିନା ବୋଧରେ ପାଠ ।
୨. ଭକ୍ତ ଓ ଭଗବତ୍ ଚରିତ୍ରଗୁଡ଼ିକର ରଚନା ।
୩. ପୁଣ୍ୟତୀର୍ଥମାନଙ୍କର ଭ୍ରମଣ ।
୪. "ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନନାରାୟଣ ବାସୁଦେବ ।" ଏହି ମହାମନ୍ତ୍ର ନିରନ୍ତର କୀର୍ତ୍ତନ କରିବାକୁ ଲାଗିଲେ ।

ଏହି ଚାରିଟି କାର୍ଯ୍ୟ କରିବାରୁ ତାଙ୍କର ରଚନା କରିବାର ଶକ୍ତି ଲାଭ ହେଲା ଓ ସେ ଆପଣଙ୍କ ଭାଗବତ କଥାଗୁଡ଼ିକୁ ସରଳ ଭାଷାରେ ଲେଖିପାରିଲେ । ମୁଁ ଏବେ ବଦରିକାଶ୍ରମରୁ ଆସି ତାଙ୍କୁ କହିଲି ଯେ, "ତୁମେ ଭାଗବତ କଥା ଏହିପରି ଲେଖିବା ଉଚିତ୍ ।" ସେ କହିଲେ—"ମୋର ଲେଖିବାର ଯୋଗ୍ୟତା କାହିଁ ?"

ହେ ସୂତ ! ମନୁଷ୍ୟଠାରେ ଯଥାର୍ଥରେ ଏତେ ଯୋଗ୍ୟତା ନାହିଁ ଯେ, ସେ ଭଗବାନଙ୍କର ଲୀଳାଗୁଡ଼ିକୁ ଏତେ ସହଜରେ ଲେଖି ପାରିବ । ଭଗବାନ ଯାହା ଦ୍ୱାରା ଏହା ଲେଖାହେବାକୁ ଚାହିଁବେ, ସେ ସ୍ୱୟଂ ତାଙ୍କୁ ଶକ୍ତି ପ୍ରଦାନ କରିବେ । ତେଣୁ ମୁଁ ତାଙ୍କୁ ଯୋଗ୍ୟ କରିବା ପାଇଁ ଭଗବାନଙ୍କ ପ୍ରେରଣାରେ ଆସିଅଛି । ଏବେ ପ୍ରଭୁଦତ୍ତ ନିଜ ଭାଷାରେ ଭାଗବତ କଥା ଆରମ୍ଭ କରିଛନ୍ତି । ପୁନଶ୍ଚ ସେ ଭାଗ୍ୟବଶତଃ ତାହା ପଢ଼ିବେ ଓ ଶୁଣିବେ ।"

ସୂତ କହିଲେ—"ମୁନିଗଣ ! ଏ ନାରଦ ମୁନି କେଡ଼େ ପରାନୁଗ୍ରହକାଙ୍କ୍ଷୀ । ଏ ସର୍ବଦା ଲୋକଙ୍କର ଉପକାର ଚିନ୍ତା କରନ୍ତି । ଲୋକମାନଙ୍କୁ ସରଳ ପରମାର୍ଥ ପଥ ଦେଖାନ୍ତି । ମୋତେ ଏହି ପ୍ରକାର ଆଜ୍ଞା ଦେଇ ଦେବର୍ଷି ନାରଦଙ୍କ ଇଚ୍ଛାନୁସାରେ ଅନ୍ୟ

ଲୋକଙ୍କୁ ଭ୍ରମଣ ଉଦ୍ଦେଶ୍ୟରେ ଚାଲିଗଲେ । ମୁଁ ଆପଣମାନଙ୍କୁ ସରଳ ଭାଷାରେ ଭାଗବତ କଥା ଶୁଣାଇବାକୁ ଆରମ୍ଭ କଲି । ଆପଣମାନେ ମଧ ଅତ୍ୟନ୍ତ ପ୍ରସନ୍ନତାର ସହିତ ଏହି କଥା ଶ୍ରବଣ କରୁଛନ୍ତି । ପ୍ରଭୁଦତ୍ତ ସେହି ଭାଗବତ ଦର୍ଶନ ଗ୍ରନ୍ଥ ଲେଖା ସମାପ୍ତ କରି ଦେଲେ । ତାଙ୍କର ପ୍ରଶ୍ନ ଅନୁସାରେ ମୁଁ ସମସ୍ତ ଉତ୍ତର ଦେଇଥିଲି ଓ ତାହାରି ଆଧାର ଉପରେ ସେ ଲିପିବଦ୍ଧ କରିଥିଲେ । କେଉଁଠାରେ ଅଧିକ ତ କେଉଁଠାରେ ସଂକ୍ଷେପରେ ଅଧ୍ୟାୟମାନ ସମ୍ପୂର୍ଣ୍ଣ ହେଲା । ଏହି ଗ୍ରନ୍ଥ ପରମଗତି ପ୍ରଦାନକାରୀ । ଏଥିରେ ଭଗବାନଙ୍କର ଲୀଳାଦିର ବର୍ଣ୍ଣନା ସର୍ବତ୍ର ରହିଅଛି । ସାଧ୍ୟରୂପା ଭକ୍ତି ତଥା ସାଧନଭୂତା ଭକ୍ତିର ମଧ ବର୍ଣ୍ଣନା ପ୍ରାଞ୍ଜଳ ଭାବରେ ଏଥିରେ କରାଯାଇଛି । ମୋର ଗୁରୁଦେବ ସାତଦିନ ମଧରେ ମହାରାଜ ପରୀକ୍ଷିତଙ୍କୁ ଏହି କଥା ଶୁଣାଇଥିଲେ । ଏଥିପାଇଁ ଏ ଗ୍ରନ୍ଥରେ ପ୍ରଥମାହ ଠାରୁ ସପ୍ତମାହ ପର୍ଯ୍ୟନ୍ତ ଅଧ୍ୟାୟକୁ ଭାଗ କରାଯାଇଛି । ଏହାର ପଦ୍ୟାଭାଗ ପୃଥକ୍ ଗ୍ରନ୍ଥ ହୋଇଅଛି । ସେଥିରେ ମଧ ସପ୍ତାହ ଅନୁଷ୍ଠାନର ବ୍ୟବସ୍ଥା ଅଛି । ଏବେ ବିଷୟସୂଚୀ ଆପଣମାନେ ଶ୍ରବଣ କରନ୍ତୁ । ଆଉ କିଛିଦିନ ମୁଁ ଆପଣମାନଙ୍କୁ ଏହା ଶୁଣାଇବା ପାଇଁ ଆପଣମାନଙ୍କଠାରୁ ଅନୁମତି ଚାହୁଁଛି । ଏବେ ଆପଣମାନେ ପ୍ରଥମାହର ସୂଚୀ ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ମେରୋ ତୁମରୋ ମିଲନ ବ୍ୟାସ ନାରଦ ସମ୍ବାଦା ।
ଫେରି ଭୀଷ୍ମ ଜୀ କହୀ କଥା ଜୋ ସଦକେ ବାଦା ॥
ତିନି ପରଲୋକ ପ୍ରୟାନ ଦ୍ୱାରକା ପୁନି ପ୍ରଭୁ ଆୟେ ।
ଭୟୋ ପରୀକ୍ଷିତ ଜନମ ଗର୍ଭ ମେଂ ବଢେ ବଧାୟେ ॥
ବିଦୁର ଔର ଧୃତରାଷ୍ଟ୍ର କୋ, ଗୃହ ତଜି ପୁନି ହରିପୁର ଗମନ ।
କହ୍ୟୋ କୃଷ୍ଣ ନିରୟାନ ପୁନି, ପାଣ୍ଡୁ ସୁତନି କୋ ହିମ ନିଧନ ॥



# ପ୍ରଥମାହର ବିଷୟ ସୂଚୀ

**ଭକ୍ତିଯୋଗଃ ସମାଖ୍ୟାତୋ ବୈରାଗ୍ୟଂ ଚ ତଦାଶ୍ରୟମ୍ ।**
**ପରୀକ୍ଷିତମୁପାଖ୍ୟାନଂ ନାରଦାଖ୍ୟାନମେବ ଚ ॥** ☆
(ଶ୍ରୀ ଭା: ୧୨ସ୍କ: ୧୨ଅ: ୫ଶ୍ଳୋକ)

---

☆ ପ୍ରଥମ ସ୍କନ୍ଧ ଭାଗବତେ । ବନ୍ଦେ ଶ୍ରୀକୃଷ୍ଣ ପାଦଗତେ ॥
ତାହାଙ୍କୁ ଜାଣିବାର ଜ୍ଞାନ । ତାହାର ଚରିତ ବ୍ୟାଖ୍ୟାନ ॥
ଅନୁଭବ ଜ୍ଞାନ ସମେତ । ବର୍ଣ୍ଣନା ହୋଇଛି ଏମନ୍ତ ॥
ଭକତି ଯୋଗର ବର୍ଣ୍ଣନ । ବୈରାଗ୍ୟ ସାଂଖ୍ୟ ଯୋଗମାନ॥
ଜ୍ଞାନ ଆଶ୍ରୟ ଯେଉଁ ବ୍ରହ୍ମ । ତାହାଙ୍କ ମହିମା ଉତ୍ତମ ॥
ନାରଦ ବେଦବ୍ୟାସଙ୍କର । ବଦ୍ରିକା ଆଶ୍ରମେ ବିଚାର ॥
ତହୁଁ ଯେ ନାରଦଙ୍କ ତହିଁ । ବ୍ୟାସ ଯେ ଭାଗବତ ପାଇ ॥
ପୂର୍ବ ତିନି ଜନ୍ମର କଥା । ନାରଦ କହେ ସେ ବ୍ୟବସ୍ଥା ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଷଟ୍‌ପଦୀ

ବିଜୟ ପରୀକ୍ଷିତ୍ ଫେରି କର୍‌ୟା କଲି ଜୈସେ ବଶ ମେ ।
ଦୀୟୋ ଦ୍ୱିଜ ନେ ଶାପ ଗୟେ ନୃପ ଗଂଗା ତଟ ମେ ।।
ଶ୍ରୀ-ଶୁକ ଭୂପତି ମିଲନ କରେ୍ୟା ଜ୍ୟୋଂ ନୃପ ଅଭିନନ୍ଦନ ।
ପୂଜା ବିଧିବତ କରୀ ଲଗାୟୋ ମାଥେ ଚନ୍ଦନ ।।
ଅବତାରନି କେ ଚରିତ ଶୁଭ ସୃଷ୍ଟି କଥା ସଂକ୍ଷେପ ମେଂ ।
ବିଦୁର ଔର ଉଦ୍ଧବ ମିଲନ, କହୀ ସୃଷ୍ଟି ପୁନି ଶେଷ ମେ ।।

କଥା କହିବା ପୂର୍ବରୁ ତାହାର ରଙ୍ଗଭୂମି ପ୍ରସ୍ତୁତ କରିବାକୁ ପଡ଼େ । ତାହାକୁ ଭୂମିକା ମଧ୍ୟ କୁହାଯାଏ । ସେଥିରେ କଥନୀୟ ବିଷୟ ଉପରେ ଆଲୋକପାତ କରାଯାଏ । ଭୂମିକା ପାଠ କରିବାଦ୍ୱାରା ପାଠକ ଏହା ବୁଝିପାରନ୍ତି ଯେ, ବକ୍ତା କେଉଁ ବିଷୟରେ କହିବାକୁ ଯାଉଛନ୍ତି । ଯେପରିକି ଶ୍ରୀମଦ୍‌ଭାଗବତର ପ୍ରଧାନ ବିଷୟ ହେଉଛି ଭକ୍ତି ପ୍ରତିପାଦନ । ତେଣୁ ଆରମ୍ଭରେ ସର୍ବପ୍ରଥମେ ସେଥିରେ ଭକ୍ତିର ମହତ୍ତ୍ୱ ହିଁ ଗାନ କରାଯାଇଛି ।

ସୂତ କହିଲେ—‘‘ମୁନିଗଣ ! ଏବେ ମୁଁ କହିଥିବା ଭାଗବତ କଥାର ବିଷୟ ସୂଚୀ ବର୍ଣ୍ଣନା କରୁଛି । ଆରମ୍ଭରେ ଲେଖକ ନିଜର ରାମ କାହାଣୀ କହିଛନ୍ତି । ତାହାପରେ ମଙ୍ଗଳାଚରଣ କରିଛନ୍ତି । ମଙ୍ଗଳାଚରଣ ପରେ ନୈମିଷାରଣ୍ୟର ଉତ୍ପତ୍ତି, ଆପଣମାନଙ୍କ ଆଗମନ, ଆପଣମାନଙ୍କ ସତ୍ର ବିଷୟ ଓ ମୋ ସମ୍ବନ୍ଧରେ ଚର୍ଚ୍ଚା କରିଛନ୍ତି । ମୋତେ କିପରି ଭାଗବତ ସଂହିତା ପ୍ରାପ୍ତ ହେଲା, ମୋ ପିତାଙ୍କର ଜନ୍ମବୃତ୍ତାନ୍ତ, ବଳଦେବଜୀ କିପରି ତାଙ୍କୁ ବଧ କଲେ ଓ କିପରି ଆପଣମାନେ ମୋତେ ଏହି ବ୍ୟାସାସନ ଦେଲେ ଏହିସବୁ କଥା ସଂକ୍ଷେପରେ ଏହି ସୂତଜୀ ନାମକ ଅଧ୍ୟାୟରେ ବର୍ଣ୍ଣନା କରିଛନ୍ତି । ଏହାପରେ ସର୍ବୋତ୍କୃଷ୍ଟ ନାମକ ଅଧ୍ୟାୟ ।

ମୁଁ ଆସିବାରୁ ଆପଣମାନେ ମୋତେ ଯେଉଁ ସର୍ବୋତ୍କୃଷ୍ଟ ପରମାର୍ଥ ପ୍ରଶ୍ନମାନ ପଚାରିଛନ୍ତି, ତାହାର ବର୍ଣ୍ଣନ ରହିଛି । ଏହାପରେ ମୁଁ ଯେଉଁ ଭକ୍ତିକୁ ପରମ ଧର୍ମ ବୋଲି କହିଛି, ତାହାର ବିବେଚନ, ଭାଗବତ ପ୍ରାପ୍ତି କିପରି ହେବ, ତାହାର ଉତ୍ତର ମୁଁ ଦେଇଛି । ମୁଁ ଏଥିରେ କହିଛି ଯେ, ନିତ୍ୟ ଭାଗବତ ସେବା କରିବାଦ୍ୱାରା ହିଁ ଭଗବଦ୍ ପ୍ରାପ୍ତି ହୁଏ । ଏହାପରେ ଭାଗବତ ପ୍ରକ୍ରିୟା କୁହାଯାଇ ଶ୍ରବଣଦ୍ୱାରା କି ଫଳ, ଅନ୍ତଃକରଣ ଶୁଦ୍ଧି କିପରି ହୁଏ ବୁଝାଇ ଦିଆହୋଇଛି । ଏହାପରେ ଏହି ଗ୍ରନ୍ଥ ସର୍ବ ପ୍ରଥମେ କିଏ ଶୁଣିଥିଲେ ଓ କିଏ ତାଙ୍କୁ ଶୁଣାଇଥିଲେ ଏହିପରି ଆରମ୍ଭରୁ ହିଁ ଏହାର ପରମ୍ପରା ବର୍ଣ୍ଣିତ ହୋଇଛି ।

ଭକ୍ତିମାର୍ଗରେ ଅବତାରତତ୍ତ୍ୱ ହିଁ ପ୍ରଧାନ । ତେଣୁ ସର୍ବ ପ୍ରଥମେ ବିରାଟପୁରୁଷଙ୍କର ଉତ୍ପତ୍ତି ବର୍ଣ୍ଣିତ ହୋଇଛି । ଏହାପରେ ପ୍ରଥମ ଅବତାର ପୁରୁଷ କିପରି ପ୍ରକଟ ହେଲେ ତାହା କହି ଅନ୍ୟାନ୍ୟ ଅବତାରଙ୍କର ଚର୍ଚ୍ଚା ସଂକ୍ଷେପରେ କରାଯାଇଛି । ପୁନଶ୍ଚ ଆପଣମାନେ ଭାଗବତ ଧର୍ମ ସମ୍ବନ୍ଧରେ ଯେଉଁ ପାବନ ପ୍ରଶ୍ନ ପଚାରିଛନ୍ତି, ତାହା ଉଲ୍ଲେଖ ହୋଇଛି । ତାହାପରେ ଯାହାଙ୍କଦ୍ୱାରା ଏହି ଭାଗବତ ଧର୍ମ ପ୍ରଚାରିତ ଓ ପ୍ରସାରିତ ହୋଇଛି, ସେହି ଭଗବାନ୍ ବ୍ୟାସଦେବଙ୍କର ଉତ୍ପତ୍ତିର ପୁଣ୍ୟକଥା ଉଲ୍ଲେଖ ହୋଇଛି । ବ୍ୟାସଦେବ ବଦରିକାଶ୍ରମକୁ ଯାଇ କିପରି ତପସ୍ୟା କଲେ, କଳିଯୁଗୀ ଜୀବଙ୍କୁ ପାପକର୍ମରେ ନିରତ ହେଉଥିବାର ଜାଣି ତାଙ୍କର କରୁଣାପୂର୍ଣ୍ଣ ଅନ୍ତଃକରଣରେ କିପରି କରୁଣା ଉତ୍ପନ୍ନ ହେଲା, ଲୋକକଲ୍ୟାଣ ପାଇଁ କିପରି ସେ ଚିନ୍ତାଗ୍ରସ୍ତ ଓ ବ୍ୟଥିତ ହେଲେ, ତାହା ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି ।

ବ୍ୟାସଦେବଙ୍କର ଚିନ୍ତା ସମ୍ବନ୍ଧରେ ଅବଗତ ହୋଇ ପରାନୁଗ୍ରହକାଙ୍‌କ୍ଷୀ ଭଗବାନ୍ ନାରଦ ମୁନି ସେଠାକୁ କିପରି ଆସିଲେ ଓ କିପରି ତାଙ୍କ ବ୍ୟାକୁଳତାର କାରଣ ଜାଣିବାକୁ

ଚାହିଁଲେ ତାହାର ଇତିହାସ ରହିଛି । ନାରଦ କିପରି ନିଜର ତିନି ଜନ୍ମବୃତ୍ତାନ୍ତ ତାଙ୍କୁ କହିଲେ, କିପରି ସେ ମୁନିମାନଙ୍କ ଶାପରୁ ଗନ୍ଧର୍ବ ହୋଇଥିଲେ ଓ ପୁନଶ୍ଚ କିପରି ଶୂଦ୍ରା ଗର୍ଭରୁ ଉତ୍ପନ୍ନ ହେଲେ ସେହି ବୃତ୍ତାନ୍ତ ରହିଛି । ସେଠାରେ ସେ କିପରି ସାଧୁମାନଙ୍କର ସଙ୍ଗ ଲାଭ କଲେ ତାହାର କାରୁଣିକ ବର୍ଣ୍ଣନ ରହିଛି । ଚତୁର୍ମାସ୍ୟା ବିତାଇ ସନ୍ଥଗଣ କିପରି ଚାଲିଗଲେ ଓ ସନ୍ଥମାନଙ୍କର ବିଚ୍ଛେଦରେ ଶୂଦ୍ର ହୋଇଥିବା ବାଳକ ନାରଦ ପୁନଶ୍ଚ କିପରି ବିକଳ ହେଲେ, ଏହି ପ୍ରସଙ୍ଗକୁ ପାଠକରି କାହା ହୃଦୟ ଅବା ବିହ୍ୱଳ ନ ହେବ ? କବି ନିଜର ମାନସିକ ବ୍ୟଥା ଏଥିରେ ବର୍ଣ୍ଣନା କରିଛନ୍ତି ।

ତାହାର ଭାବାର୍ଥ ହେଲା, ସାଧୁମାନେ ନାରଦଙ୍କୁ ଛାଡ଼ି ଚାଲିଗଲେ । ନାରଦଙ୍କର ଶୂଦ୍ରା ମାତା ଦେହତ୍ୟାଗ କଲେ । ଭଜନ ପ୍ରଭାବରେ ନାରଦ ପୁନରାୟ ବ୍ରହ୍ମାଙ୍କ ମାନସପୁତ୍ର ନାରଦ ଶରୀର ପ୍ରାପ୍ତ ହେଲେ । ଏଠାରେ ଏହି ପର୍ଯ୍ୟନ୍ତ ନାରଦଙ୍କ ଚରିତ୍ର ରହିଛି । ଯେତେବେଳେ ନାରଦ ନିଜ ଚରିତ୍ର କଥା ଶୁଣିଲେ, ସେତେବେଳେ ବ୍ୟାସ ତାଙ୍କୁ ଶାନ୍ତିର ସରଳ ମାର୍ଗ ପଚାରିଲେ । ନାରଦ ଏହି ସମୟରେ ବ୍ୟାସଙ୍କୁ ଭାଗବତ ରଚନା କରିବାକୁ ପରାମର୍ଶ ଦେଲେ । ନାରଦଙ୍କର ଆଜ୍ଞା ପାଳନ କରି ବ୍ୟାସଦେବ ଶ୍ରୀମଦ୍ଭାଗବତ ମହାପୁରାଣ ରଚନା କଲେ । ତାହା ସେ ନିଜର ସଂସାର ତ୍ୟାଗୀ ଯୋଗ୍ୟପୁତ୍ରକୁ କିପରି ପଢ଼ାଇଲେ, କିପରି ସେହି ଆତ୍ମାରାମ ପୂର୍ଣ୍ଣକାମ ମହାମୁନିଙ୍କର ଭାଗବତ ପଢ଼ିବାର ଇଚ୍ଛା ହେଲା, ଏହାର କାରଣ ଏଥିରେ ବର୍ଣ୍ଣନା କରାଯାଇଛି ।

ଶ୍ରୀମଦ୍ଭାଗବତର ପ୍ରଧାନ ଶ୍ରୋତା ହେଉଛନ୍ତି ରାଜର୍ଷି ମହାରାଜ ପରୀକ୍ଷିତ । ତେଣୁ ତାଙ୍କର ପରିଚୟ କରାଇବା ପାଇଁ ତାଙ୍କର ପୂର୍ବଜଙ୍କ ବର୍ଣ୍ଣନା ସଂକ୍ଷେପରେ କରାଯାଇଛି । ମହାଭାରତର ସଂକ୍ଷିପ୍ତ କଥା ପ୍ରଥମରୁ କୁହାଯାଇ ଶେଷରେ ସେହି ପ୍ରସଙ୍ଗକୁ ବର୍ଣ୍ଣନା କରାଯାଇଛି, ଯେଉଁଥିରେ କି ଅଶ୍ୱତ୍ଥାମା ପାଣ୍ଡବଙ୍କର ପାଞ୍ଚ ପୁତ୍ରଙ୍କୁ ସୁପ୍ତାବସ୍ଥାରେ ହତ୍ୟା କରିଛନ୍ତି । ଦ୍ରୌପଦୀ କୁପିତ ହେବାରୁ ଅର୍ଜୁନ ଅଶ୍ୱତ୍ଥାମାଙ୍କୁ ଧରିନେଇ ଦ୍ରୌପଦୀଙ୍କର କହିବା ଅନୁସାରେ ତାଙ୍କ ଶିରର ମଣି ଛିନ୍ନ କରି ତାଙ୍କୁ ପ୍ରାଣଦାନ ଦେଇଥିଲେ । ଏହିସବୁ କଥା ରାଜର୍ଷି ପରୀକ୍ଷିତଙ୍କ ଚରିତ୍ର ଭୂମିକା ନିମିତ୍ତ ହିଁ ବର୍ଣ୍ଣିତ ହୋଇଛି । ଗର୍ଭସ୍ଥ ମହାରାଜା ପରୀକ୍ଷିତଙ୍କୁ ଭଗବାନ୍ ସୁଦର୍ଶନଚକ୍ର ସାହାଯ୍ୟରେ ମାତୃଗର୍ଭରେ କିପରି ରକ୍ଷା କରିଥିଲେ, ତାହାର ବର୍ଣ୍ଣନ ଏହି ଅଧ୍ୟାୟରେ କରାଯାଇଅଛି ।

ମହାଭାରତ ସମାପ୍ତ ହେବା ପରେ ଶ୍ୟାମସୁନ୍ଦର ଯେପରି ଦ୍ୱାରକା ଯିବା ପାଇଁ ଉଦ୍ୟତ ହେଲେ, ମହାରାଣୀ କୁନ୍ତୀ ଯେପରି କରୁଣ ସ୍ୱରରେ ତାଙ୍କୁ ସ୍ତୁତି କରିଥିଲେ, ଭଗବାନ୍ ଯେପରି ରହିଗଲେ ଓ ପୁନଶ୍ଚ ଧର୍ମରାଜ ନିଜର ମୃତ ବନ୍ଧୁ ବାନ୍ଧବମାନଙ୍କ ପାଇଁ ଯେପରି ଘୋର ଅନୁତାପ କଲେ, ଏହିସବୁ କଥା ହୃଦୟଦ୍ରାବକ ଭାଷାରେ ଏଥିରେ ବର୍ଣ୍ଣନା କରାଯାଇଛି ।

ଭଗବାନ୍ ଶ୍ରୀକୃଷ୍ଣ ଧର୍ମରାଜ ତଥା ଅନ୍ୟ ସମସ୍ତ ପାଣ୍ଡବଙ୍କୁ ଶରଶଯ୍ୟାରେ ପଡ଼ିଥିବା ପିତାମହ ଭୀଷ୍ମଙ୍କ ପାଖକୁ ନେଇଥିଲେ । ପିତାମହ ଯେପରି ପାଣ୍ଡବଙ୍କ ଆଗରେ ଭଗବାନ୍ ବାସୁଦେବଙ୍କର ମହିମା ବର୍ଣ୍ଣନା କରିଥିଲେ, ପିତାମହ ଯେପରି ପରଲୋକକୁ ପ୍ରୟାଣ କଲେ, ଭଗବାନ୍ ଯେପରି ଦ୍ୱାରକା ଯିବାର ବିଚାର ବ୍ୟକ୍ତ କଲେ, ସମସ୍ତଙ୍କୁ ଶୋକାକୁଳ କରି ଦ୍ୱାରକା ଗମନ କଲେ ଏବଂ ଦ୍ୱାରକାର ପୁରବାସିନୀଗଣ, ମହର୍ଷିଗଣ ଯେପରି ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କଲେ, ଏହି ସମସ୍ତ କଥା ଅତି ସୁନ୍ଦର ଭାବରେ ଏଥିରେ ବର୍ଣ୍ଣିତ ହୋଇଛି । ଅନ୍ତଃପୁରରେ ଭଗବାନ୍ ପ୍ରବେଶ କରିବା, ପ୍ରଥମ ମାତାଙ୍କ ମହଲକୁ ଯିବା, ସେଠାକୁ ଯାଇ ବସିବା, ରାଣୀମାନଙ୍କୁ କିପରି ଦର୍ଶନ ଦେବେ ସେଥିପାଇଁ କୌତୂହଳ ସୃଷ୍ଟି କରିବା (କାରଣ ବୋହୂମାନେ

ଶାଶୁଙ୍କ ସମ୍ମୁଖରେ ପତିଙ୍କ ସମ୍ମୁଖଙ୍କୁ ନ ଯିବାର ପ୍ରାଚୀନ ସଦାଚାର ଥିଲା), ତେଣୁ ସେମାନେ ଝରକା ସନ୍ଧିରେ ଲୁଚିଛପି ଭଗବାନଙ୍କୁ ଦର୍ଶନ କରିବା, ସେମାନଙ୍କର ଆଭୂଷଣ ଓ ଚୂଡ଼ିଗୁଡ଼ିକର ଶବ୍ଦରେ ପରିବେଶ ଝଙ୍କୃତ ହେବାରୁ ମାତା ଦୁହେଁ ତାହା ଜାଣିପାରିବା ଓ ଶ୍ୟାମସୁନ୍ଦରଙ୍କୁ ଯିବାକୁ ପରାମର୍ଶ ଦେବା ଏହି ଅଧ୍ୟାୟରେ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି । ଏଥିପାଇଁ ଏଠାରେ କବି ଯେଉଁ କାବ୍ୟାଂଶ ରଚନା କରିଛନ୍ତି, ତାହାର ତାତ୍ପର୍ଯ୍ୟ ଏହି ପ୍ରକାର, ଯଥା :—

ଏଣେ ଶ୍ୟାମସୁନ୍ଦର ଦ୍ୱାରକାବାସୀଙ୍କୁ ସୁଖ ପ୍ରଦାନ କରୁଥିଲେ, ତେଣେ ହସ୍ତିନାପୁରରେ ମହାରାଜ ପରୀକ୍ଷିତଙ୍କର ଜନ୍ମ ହେଲା । ଧର୍ମରାଜ ପଣ୍ଡିତମାନଙ୍କୁ ଡକାଇ ତାଙ୍କର ଜନ୍ମଗ୍ରହର ଫଳାଫଳ ପଚାରିଲେ । ତାହାପରେ ଧର୍ମରାଜଙ୍କର ଅଶ୍ୱମେଧ ଯଜ୍ଞ କରିବାର ବିଚାର, ଭଗବାନଙ୍କ ଆଜ୍ଞାରେ ପାଣ୍ଡବଙ୍କ ହିମାଳୟ ଯାତ୍ରା ଓ ସେଠାରେ ମହାରାଜ ମରୁତ୍ତଙ୍କ ଯଜ୍ଞରୁ ବଳିଥିବା ଧନକୁ ନେଇ ଆସିବା । ଧର୍ମରାଜ ସେଥିରେ ତିନିଟି ଅଶ୍ୱମେଧ ଯଜ୍ଞ କରିବା ଇତ୍ୟାଦି ପ୍ରକରଣ ଏହିଠାରେ ସମାପ୍ତ କରାଯାଇଛି । ପୁନଶ୍ଚ ବିଦୁରଙ୍କର ପୁଣ୍ୟ ପରିଚୟ କରାଯାଇଛି । ତୀର୍ଥଯାତ୍ରାରୁ ଫେରି ସେମାନେ ଯେପରି ହସ୍ତିନାପୁରକୁ ଆସିଥିଲେ ଓ ଯେପରି ନିଜର ବଡ଼ଭାଇ ପ୍ରଜ୍ଞାଚକ୍ଷୁ ଧୃତରାଷ୍ଟ୍ରଙ୍କୁ ବୈରାଗ୍ୟର ଉପଦେଶ ଦେଇଥିଲେ ଏବଂ ତାଙ୍କୁ ତଥା ଗାନ୍ଧାରୀଙ୍କୁ ସଙ୍ଗରେ ନେଇ ଯେପରି ସେମାନେ ଲୁଚିକରି ବନକୁ ଚାଲି ଯାଇଥିଲେ ସେ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି ।

ବିପରୀତ ଧର୍ମକୁ ଦେଖି ଧର୍ମରାଜ ଚିନ୍ତାକଲେ ଯେ, ଅର୍ଜୁନ କାହିଁକି ଦ୍ୱାରକାରୁ ଫେରି ନଆସିଲେ ? ଅର୍ଜୁନ ଦ୍ୱାରକାରୁ ଫେରି ଆସିବା ପରେ କାନ୍ଦି କାନ୍ଦି ଭଗବଦ୍ ନିର୍ବାଣ କଥା କହିଲେ । ଭଗବାନ୍ କେବେ କେବେ ଆମ୍ଭମାନଙ୍କ ଉପରେ ବିଶେଷ କୃପା କରିଥିଲେ, ତାହା ଅର୍ଜୁନ ବିଶେଷରୂପେ ବର୍ଣ୍ଣନା କଲେ । ତନ୍ମଧ୍ୟରେ ଖାଣ୍ଡବ ବନ ଦହନ ସମୟର କୃପା, ଜରାସନ୍ଧ ବଧ ସମୟର କୃପା, ଦ୍ରୌପଦୀଙ୍କ ବସ୍ତ୍ର ହରଣ ସମୟର କୃପା, ଦୁର୍ବାସାଙ୍କ ଶାପରୁ ଉଦ୍ଧାର କରିବାର କୃପା, ଶିବଙ୍କ ସହିତ ହୋଇଥିବା ଯୁଦ୍ଧ ସମୟର କୃପା, ନିବାତ କବଚ ବଧ ସମୟର କୃପା, ଗୋଧନ ହରଣ ସମୟର କୃପା, ମହାଭାରତ ଯୁଦ୍ଧ ସମୟର କୃପା ଓ ରଥ ଚଳାଇବା ସମୟର କୃପା ସମ୍ବନ୍ଧରେ ବିଶେଷରୂପେ ଉଲ୍ଲେଖ କରାଯାଇଛି । ଅର୍ଜୁନଙ୍କୁ କିପରି ଜଙ୍ଗଲି ଗୋପମାନଙ୍କଦ୍ୱାରା ପରାଜିତ ହେବାର ଶାପ ମିଳିଥିଲା ଓ କିପରି ସେ ସେମାନଙ୍କଦ୍ୱାରା ପରାଜିତ ହୋଇଥିଲେ, କିପରି ଯଦୁବଂଶ ବିନାଶ ହେଲା, ଏ ସମସ୍ତ କଥା ଧର୍ମରାଜଙ୍କୁ ଅର୍ଜୁନ ଆସି ଯେପରି କହିଥିଲେ, ତାହା ବିସ୍ତାରିତ ଭାବରେ ବର୍ଣ୍ଣିତ ହୋଇଛି ।

ଭଗବଦ୍ ନିର୍ମାଣ କଥା ଶୁଣି ତାଙ୍କ ବିୟୋଗରେ ମହାରାଣୀ କୁନ୍ତୀ ଯେପରି ଦେହତ୍ୟାଗ କଲେ । ବୀରସନ୍ୟାସର ନିଶ୍ଚୟ କରି ତଥା ମହାରାଜ ପରୀକ୍ଷିତଙ୍କୁ ରାଜ୍ୟ ପ୍ରଦାନ କରି ପଞ୍ଚୁପାଣ୍ଡବ ଯେପରି ପରଲୋକ ପ୍ରୟାଣ କଲେ, ଏପରିକି ମହାରାଜ ପରୀକ୍ଷିତଙ୍କ ପୂର୍ବଜଙ୍କ କଥା ଏଥିରେ ବର୍ଣ୍ଣିତ ହୋଇଛି । ଏବେ ମହାରାଜ ପରୀକ୍ଷିତଙ୍କ କଥା ଆରମ୍ଭ ହେଉଛି ।

ମହାରାଜ ପରୀକ୍ଷିତ କିପରି ଦିଗ୍‌ବିଜୟ କଲେ ଏଠାରେ ପାଣ୍ଡବଙ୍କ ମୁଖରୁ "ଭଗବାନ୍ ପାଣ୍ଡବଙ୍କୁ କିପରି ରକ୍ଷା କଲେ" ଏହି ପ୍ରସଙ୍ଗ ଶୁଣି ପରୀକ୍ଷିତ ପ୍ରସନ୍ନ ହେବା, ଦିଗ୍‌ବିଜୟ ପ୍ରସଙ୍ଗରେ ହିଁ ପୃଥ୍ୱୀ ତଥା ଧର୍ମଙ୍କର ଆଲୋଚନା କିପରି ହେଲା, ପୃଥ୍ୱୀ ନିଜର ଦୁଃଖର କାରଣ କିପରି ବତାଇଲେ, ମହାରାଜ ପରୀକ୍ଷିତ କିପରି କଳିଯୁଗକୁ ଭେଟିଲେ, ଧର୍ମ ଓ ପରୀକ୍ଷିତ କିପରି ଆଲୋଚନା କଲେ, ମହାରାଜ ପରୀକ୍ଷିତ ଅଧର୍ମ ବନ୍ଧୁ କଳିଯୁଗକୁ କିପରି ଅଭୟ ଦାନ କଲେ, କଳିଯୁଗର ରହିବା ପାଇଁ ସେ କେଉଁ କେଉଁ ସ୍ଥାନ ପ୍ରଦାନ କଲେ, ଏହିସବୁ କଥା କୁହାଯାଇ ଶେଷରେ ଜନକ ରାଜର୍ଷି ପରୀକ୍ଷିତଙ୍କର ଉତ୍ତର ଚରିତ୍ର ସମ୍ବନ୍ଧରେ ଶୌନକଙ୍କର ପ୍ରଶ୍ନ ହୋଇଛି ।

ଏ ପ୍ରସଙ୍ଗରେ ସୂତ ମହାରାଜ ପରୀକ୍ଷିତଙ୍କର ଉତ୍ତର ଚରିତ୍ର ବର୍ଣ୍ଣନା କରିଛନ୍ତି । ଏଥିରେ ଶମୀକ ମୁନିଙ୍କ ଆଶ୍ରମକୁ ମହାରାଜ ପରୀକ୍ଷିତଙ୍କର ଆଗମନ, ସମାଧିରେ ବସିଥିବା ମୁନିଙ୍କ ଗଳାରେ ମୃତ ସର୍ପ ଦୋଳାୟନ ଓ ପ୍ରତ୍ୟାବର୍ତ୍ତନ, ଏଥିରେ ମୁନିପୁତ୍ର ଶୃଙ୍ଗୀଙ୍କର ମହାରାଜଙ୍କୁ ଶାପ ପ୍ରଦାନ, ମୁନିଙ୍କ ଶିଷ୍ୟଙ୍କଠାରୁ ସମସ୍ତ କଥା ଶ୍ରବଣ କରି ମହାରାଜଙ୍କର ପଶ୍ଚାତାପ, ଗଙ୍ଗା-ତଟକୁ ମହାରାଜଙ୍କର ଆଗମନ, ମହାରାଜଙ୍କ ସମାଚାର ଶୁଣି ସେଠାକୁ ମୁନି ଋଷିମାନଙ୍କର ଆଗମନ ତଥା ଓ ସେମାନଙ୍କୁ ମହାରାଜଙ୍କର ପରମାର୍ଥିକ ପ୍ରଶ୍ନ, ସେହି ସମୟରେ ମୁନିମାନଙ୍କ ମଧ୍ୟରୁ ଶ୍ରୀଶୁକଦେବଙ୍କୁ ରାଜାଙ୍କର କେତେକ ପାରମାର୍ଥିକ ପ୍ରଶ୍ନ ଓ ଶୁକଦେବଙ୍କର ସମସ୍ତ ପ୍ରଶ୍ନର ଉତ୍ତର ପ୍ରଦାନ । ସମୟର ସ୍ୱଳ୍ପତା ଦୃଷ୍ଟିରୁ ରାଜର୍ଷି ଖଟ୍ୱାଙ୍ଗଙ୍କର ଦୃଷ୍ଟାନ୍ତ ପ୍ରଦାନ । ପୁନଶ୍ଚ ରାଜାଙ୍କଦ୍ୱାରା ଅନେକ ପ୍ରଶ୍ନ, ଏହିସବୁ କଥା ବର୍ଣ୍ଣନା କରାଯାଇଛି । ଏପର୍ଯ୍ୟନ୍ତ ଏହି ଭାଗବତ କଥାର ଭୂମିକା ପ୍ରସ୍ତୁତ କରାଗଲା । ଏହା ପରେ ଅନ୍ୟାନ୍ୟ ଭାଗବତ କଥା ଆରମ୍ଭ କରାଯିବ ।

ଏଥିରେ ସର୍ବପ୍ରଥମେ ଶୂକରାବତାର କଥା, ଅନ୍ୟ ଅବତାର କଥା ଓ ଶ୍ରୀରାମକୃଷ୍ଣାବତାର କଥା ଆଦି ସଂକ୍ଷେପରେ କୁହାଯାଇଛି । ପ୍ରାୟୋପବେଶନକାରୀ ମହାରାଜ ପରୀକ୍ଷିତ ଯେପରି ଦୃଢ଼ତା ପ୍ରଦର୍ଶନ କରିଛନ୍ତି ଓ ସୃଷ୍ଟି ସମ୍ବନ୍ଧରେ ପ୍ରଶ୍ନ କରିଛନ୍ତି, ତାହା ଏଥିରେ ପ୍ରକାଶିତ ହୋଇଛି । ପୁନଶ୍ଚ ବ୍ରହ୍ମାଙ୍କୁ ତପସ୍ୟାଦ୍ୱାରା ନିଜର ଅନ୍ତଃକରଣରେ କିପରି ବୈକୁଣ୍ଠ ଦର୍ଶନ ହୁଏ, ତାଙ୍କୁ କିପରି ପଞ୍ଚଶ୍ଲୋକୀ ଭାଗବତର ସ୍ଫୁରଣା ହେଲା ଏହା ବର୍ଣ୍ଣିତ ହୋଇଛି । ପୁନଶ୍ଚ ଦଶଲକ୍ଷଣ ବିଶିଷ୍ଟ ଭାଗବତର, ବିରାଟ ବ୍ରହ୍ମାଣ୍ଡର, ବିରାଟ ପୁରୁଷଙ୍କର କର୍ମେନ୍ଦ୍ରିୟର ଉତ୍ପତ୍ତି ତଥା ଶ୍ରୀମଦ୍ଭାଗବତର ଅନ୍ୟାନ୍ୟ ପରମ୍ପରା ବର୍ଣ୍ଣନାର ଉପକ୍ରମ ହୋଇଅଛି ।

ପ୍ରଥମେ ବିଦୁର-ମୈତ୍ରେୟ ସମ୍ବାଦର ଉପୋଦ୍‌ଘାତ, ବିଦୁର ଧୃତରାଷ୍ଟ୍ରଙ୍କୁ କିପରି ସମ୍ମତି ପ୍ରଦାନ କଲେ, ତାଙ୍କ ସମ୍ମତିର ଆଦର ନକରି ଦୁର୍ଯ୍ୟୋଧନ କିପରି ତାଙ୍କୁ ତିରସ୍କାର କଲେ, ତିରସ୍କୃତ ହୋଇ ବିଦୁର କିପରି ହସ୍ତିନାପୁର ତ୍ୟାଗକରି ତୀର୍ଥ ଭ୍ରମଣ କରିବାରେ ଲାଗିଲେ, ବୃନ୍ଦାବନରେ ଉଦ୍ଧବଙ୍କ ସହିତ ତାଙ୍କର କିପରି ଭେଟ ହେଲା, ବିଦୁର ତାଙ୍କୁ କିପରି ଭଗବାନଙ୍କ ପରିବାରର କୁଶଳ ପ୍ରଶ୍ନ କଲେ, ବିଦୁରଙ୍କ ପ୍ରଶ୍ନରେ ଉଦ୍ଧବଙ୍କର କିପରି ଭାବସମାଧି ହେଲା, ପୁନଶ୍ଚ ସେ କିପରି ଧୀରେ ଧୀରେ ପ୍ରକୃତିସ୍ଥ ହୋଇ କୃଷ୍ଣକଥା ବର୍ଣ୍ଣନାର ଉପକ୍ରମ କରିବାକୁ ଲାଗିଲେ, ଏହିସବୁ ବିଷୟରେ ସୁଖଦାୟକ କଥା ରହିଛି । ଏବେ ଉଦ୍ଧବଙ୍କୁ ବିଦୁର ଶ୍ରୀକୃଷ୍ଣଙ୍କ କଥା ଶୁଣାଉ ଅଛନ୍ତି । ଭଗବାନଙ୍କର କିପରି ଲୋକୋତ୍ତର ସୌନ୍ଦର୍ଯ୍ୟ ଥିଲା, ତାଙ୍କର କିପରି ଲୋକୋତ୍ତର ମାଧୁର୍ଯ୍ୟ ଥିଲା, ଅଜନ୍ମାଙ୍କର ଜନ୍ମ କିପରି ହେଲା, ଦୀନ ତଥା ଦୁଷ୍ଟମାନଙ୍କ ଉପରେ ଦୟାମୟ କିପରି ଅପାର କୃପା କଲେ, ଆତ୍ମାରାମ ହୋଇ କିପରି ରାଧାରମଣ ରମଣୀଗଣଙ୍କ ସହିତ କ୍ରୀଡ଼ା କଲେ, ମଥୁରାରେ ସେ କେଉଁ କେଉଁ ଲୀଳା ପ୍ରଦର୍ଶନ କଲେ, ଯଦୁବଂଶର ବିନାଶ କିପରି ହେଲା, ଭଗବାନ୍ କିପରି ଉଦ୍ଧବଙ୍କୁ ଉପଦେଶ ଦେଲେ ଏହିସବୁ ବିଷୟ ଅତି ସଂକ୍ଷେପରେ ଉଦ୍ଧବ ବିଦୁରଙ୍କୁ କହିଛନ୍ତି । ବିଦୁରଙ୍କ ଭାଗବତ ଧର୍ମ ସମ୍ବନ୍ଧୀୟ ଜ୍ଞାନ ଲାଭ କରିବାକୁ ଆଗ୍ରହ ଦେଖି ଉଦ୍ଧବ ତାଙ୍କୁ ଭଗବାନଙ୍କ ଆଜ୍ଞା ଶୁଣାଇ ଦେଇ କହିଲେ ଯେ, ତୁମେ ହରିଦ୍ୱାରକୁ ଯାଇ ମୈତ୍ରେୟ ମୁନିଙ୍କଠାରୁ ଜ୍ଞାନ ଲାଭ କର । ଏହା କହି ବିଦୁରଙ୍କଠାରୁ ବିଦାୟ ନେଇ ଉଦ୍ଧବ ବଦରୀବନକୁ ଚାଲିଗଲେ । ଏଣେ ବିଦୁର ହରିଦ୍ୱାର ଯାତ୍ରା କରିବାକୁ ଆରମ୍ଭ କଲେ । ଚାଲି ଚାଲି ଯାଇ ସେ ହରିଦ୍ୱାରରେ ଥିବା ମୈତ୍ରେୟ ମୁନିଙ୍କ ନିକଟରେ ପହଞ୍ଚିଲେ ଓ ସେଠାକୁ ଯାଇ ସେ ମୈତ୍ରେୟ ମୁନିଙ୍କୁ କିପରି ପାରମାର୍ଥିକ ପ୍ରଶ୍ନ ପଚାରିଲେ, ତାହା ଏଠାରେ ବର୍ଣ୍ଣିତ ହୋଇଛି ।

ଏବେ ବିଦୁର ମୈତ୍ରେୟ ସମ୍ବାଦ ଆରମ୍ଭ କରାଯାଉଛି । ଏହା ଶ୍ରୀମଦ୍ଭାଗବତର ଦ୍ୱିତୀୟ ପରମ୍ପରା । ବିଦୁରଙ୍କ ପ୍ରଶ୍ନରେ ମୈତ୍ରେୟ ମୁନି ପ୍ରଥମେ ବ୍ରହ୍ମାଙ୍କର ଉତ୍ପତ୍ତି ବିଷୟ

କହିଛନ୍ତି । ତାହାପରେ ସୃଷ୍ଟି ରଚନା ନିମିତ୍ତ ପରମୋହକ ସାମଗ୍ରୀର ଉତ୍ପତ୍ତି, ପୃଥିବୀର ଉଦ୍ଧାର ପାଇଁ ମନୁଙ୍କର ପ୍ରାର୍ଥନା, ବରାହ ଅବତାରଙ୍କ ସଂକ୍ଷିପ୍ତ କଥା, ବିଦୁରଙ୍କର ବରାହ ଚରିତ୍ରକୁ ବିସ୍ତାରିତରୂପେ ଶ୍ରବଣ କରିବାଂଖ ଆଗ୍ରହ, ଏହି ପ୍ରଶ୍ନର ଉତ୍ତରରେ ମୈତ୍ରେୟଙ୍କଦ୍ୱାରା ଦିତିଙ୍କର କଶ୍ୟପଙ୍କଠାରୁ ପ୍ରଦୋଷ ସମୟରେ ଅନୁଚିତ ପ୍ରସ୍ତାବ, ମନ୍ମଥର ପ୍ରାବଲ୍ୟ କଥା, ଗର୍ଭଧାନ ପରେ ଦିତିଙ୍କର ପଶ୍ଚାତାପ, ଦିତିଙ୍କ ଗର୍ଭରୁ ଦେବତାଙ୍କର ଭୟ, ଦେବତାମାନେ ମିଳିତ ହୋଇ ବ୍ରହ୍ମାଙ୍କ ନିକଟକୁ ଗମନ, ବ୍ରହ୍ମା ଦେବତାମାନଙ୍କୁ ସନକାଦିଙ୍କ କଥା ଶୁଣାଇବା, ବୈକୁଣ୍ଠର ବର୍ଣ୍ଣନା, ସନକାଦିଙ୍କଦ୍ୱାରା ଜୟବିଜୟଙ୍କୁ ଶାପ, ସନକାଦି କୁପିତ ହୋଇଥିବା ଶୁଣି ଭଗବାନଙ୍କର ନଗ୍ନପାଦରେ ଆଗମନ, ଭକ୍ତବତ୍ସଳତା ବଶତଃ ତାଙ୍କୁ ମନାଇବା, କୁମାରମାନଙ୍କର ଭଗବାନଙ୍କୁ ବିନତି କରିବା, ତାଙ୍କଠାରୁ ଆଜ୍ଞା ନେଇ ଯିବା, ଜୟ-ବିଜୟଙ୍କର ଦିତିଙ୍କ ଗର୍ଭରେ ପ୍ରବେଶ ହେବା କଥା କହି ବ୍ରହ୍ମାଙ୍କର ଦେବତାମାନଙ୍କୁ ସାନ୍ତ୍ୱନା ପ୍ରଦାନ । ଏହାପରେ ହିରଣ୍ୟକଶିପୁ ହିରଣ୍ୟାକ୍ଷଙ୍କର ଜନ୍ମ, ହିରଣ୍ୟାକ୍ଷର ଦିଗ୍‌ବିଜୟ ପାଇଁ ବରୁଣ ଲୋକକୁ ଗମନ, ହିରଣ୍ୟାକ୍ଷର ବରୁଣଙ୍କ ସହିତ କଥାବାର୍ତ୍ତା, ହିରଣ୍ୟାକ୍ଷକୁ ଶୂକର ରୂପରେ ଭଗବାନଙ୍କର ଦର୍ଶନ ଦାନ, ହିରଣ୍ୟାକ୍ଷ ଓ ବରାହ ଭଗବାନଙ୍କ ମଧ୍ୟରେ ଯୁଦ୍ଧ । ଏହାପରେ ହିରଣ୍ୟାକ୍ଷର ଯୁଦ୍ଧ କଥା । ଏ ସମସ୍ତ ବିଷୟ ପ୍ରଥମାହର ଆଲୋଚ୍ୟ ବିଷୟ । ହିରଣ୍ୟାକ୍ଷର ଉଦ୍ଧାର ପର୍ଯ୍ୟନ୍ତ ପ୍ରଥମାହର କଥା କୁହାଯାଇଛି । ଶ୍ରୀମଦ୍ଭାଗବତରେ ଏହି କଥା ତୃତୀୟ ସ୍କନ୍ଧର ଅଧ୍ୟାୟ ପର୍ଯ୍ୟନ୍ତ ରହିଛି । ''ଭାଗବତ କଥା''ର ସାତଖଣ୍ଡରେ ଏହି ପ୍ରଥମାହର କଥା କୁହାଯାଇଛି । ଏଥିରେ ସମୁଦାୟ ୧୪୮ ଅଧ୍ୟାୟ ରହିଛି । ଯଦି ପ୍ରଥମାହର କଥାକୁ ପାଠ କରାଯାଏ ଓ ଶୁଣାଯାଏ, ତାହାହେଲେ ମନୁଷ୍ୟର ସମସ୍ତ ଇଚ୍ଛା ପୂର୍ଣ୍ଣ ହୁଏ, ଦେବତାମାନେ ପାଠକ ଓ ଶ୍ରୋତା ଉପରେ ପ୍ରସନ୍ନ ହୁଅନ୍ତି । ଶ୍ରଦ୍ଧାପୂର୍ବକ ଏହା ଶ୍ରବଣ କରୁଥିବା ଓ ପାଠ କରୁଥିବା ବ୍ୟକ୍ତିର ଦୁଃଖ, ଶୋକ ଆଦି ଦୂର ହୁଏ ।

ସୂତ କହିଲେ—''ମୁନିଗଣ ! ମୁଁ ଅତି ସଂକ୍ଷେପରେ ଏହି ପ୍ରଥମାହର ବିଷୟ ସୂଚୀ କଥା କହିଲି, ଏବେ ଆପଣମାନେ ଦ୍ୱିତୀୟାହର ବିଷୟ ସୂଚୀ ଶ୍ରବଣ କରନ୍ତୁ ।

ଷଟ୍‌ପଦୀ

କଶ୍ୟପ ଦିତି ସମ୍ବାଦ ଗର୍ଭ ଜ୍ୟୋଂ ଦିତି ନେ ଧାର୍‌ୟୋ ।
ଭୟେ ଅସୁର ଜୟ ବିଜୟ କୁମାରନି କୁଁ ଜ୍ୟୋଂ ତାଡ୍‌ୟୋ ।।
ହିରନକଶିପୁ ହିରନାକ୍ଷ ଜନ୍ମ ତିନି ବିଜୟ କରୀ ଜ୍ୟୋଂ ।
ଧରି କେଂ ଶୂକର ରୂପ ସୁରନି-ହରି ବିପତି ହରୀ ଜ୍ୟୋଂ ।।
ହିରଣ୍ୟାକ୍ଷ କୁଁ ମାରି କେଂ, ଅଭୟ କରେ ସୁର ମୁନି ଯଥା ।
ଯହାଁ ତଇକ ପୂରନ ଭଇ, ପ୍ରଥମ ଆହ କୀ ଶୁଭ କଥା ।।



# ଦ୍ୱିତୀୟାହର ବିଷୟ ସୂଚୀ

**ଅବତାରୋ ଭଗବତଃ କପିଳସ୍ୟ ମହାତ୍ମନଃ ।**
**ଦେବହୂତ୍ୟାଶ୍ଚ ସମ୍ବାଦଃ କପିଳେନ ଚ ଧୀମତା ॥** ★
(ଶ୍ରୀ ଭା: ୧୨ସ୍କ: ୧୨ଅ: ୧୩ଶ୍ଳୋକ)

ଷଟ୍‌ପଦୀ

ଦ୍ୱିତୀୟ ଆହ ମେଂ ଦେବହୂତି କରଦମ ସଁଗ ବ୍ୟାହୀ ।
ପ୍ରକଟେ ହରି ବନି କପିଳ ମାତୁକୁଁ ସୀଖ ସିଖାଇ ॥
ମନୁ ପୁତ୍ରିନି କୋ ବଂଶ ଦକ୍ଷ ଶିବ ଶାପା ଶାପୀ ।
ସତୀ ଦେହ କୋ ତ୍ୟାଗ ଦକ୍ଷ ମାରେ୍ୟା ସଂତାପୀ ॥
ଭଇ ପୂର୍ତ୍ତି ଜ୍ୟୋଂ ଯଜ୍ଞ କୀ, ବଂଶ ଅଧର୍ମ ବତାଇ କେଂ ।
କହ୍ୟୋ ଚରିତ ଧ୍ରୁବ ବିଷ୍ଣୁ ଜ୍ୟୋଂ, ଦରଶନ ଦୀୟେ ଆଇକେଂ ॥

ସବୁ ଶାସ୍ତ୍ରରେ ସେହି ଗୋଟିଏ କଥା, ଈଶ୍ୱର ଓ ଜଗତର ସମ୍ବନ୍ଧ । ସମସ୍ତ ଶାସ୍ତ୍ରରେ ଏହି କଥା ଆଲୋଚିତ ହୋଇଛି । କେହି କେହି କହନ୍ତି ଈଶ୍ୱର ଓ ଜଗତର କୌଣସି ସମ୍ବନ୍ଧ ନାହିଁ । କେହି କେହି କହନ୍ତି ଈଶ୍ୱର ବୋଲି କେହି ନାହାନ୍ତି । ପୁନଶ୍ଚ କେହି କେହି ମଧ୍ୟ କହନ୍ତି ଈଶ୍ୱର ଅଛନ୍ତି, କିନ୍ତୁ ତାଙ୍କର ଜଗତ ସୃଷ୍ଟିରେ କୌଣସି ହାତ ନାହିଁ । କେତେକଙ୍କ ମତରେ ଜଗତ ବୋଲି କିଛି ନାହିଁ । ଆମେ ଯାହାସବୁ ଦେଖୁଥାଉଁ, ତାହା ମିଥ୍ୟା, ଭ୍ରମ । ସାମୁକାରେ ରଜତ ଭ୍ରମ ଭଳି ଏହା ମିଥ୍ୟା ଅଟେ । ଆଉ କେତେକ କହନ୍ତି ସଂସାର ରୂପକ ବୃକ୍ଷର ବୀଜ ହେଉଛନ୍ତି ଈଶ୍ୱର । ଈଶ୍ୱରଙ୍କ ବିନା କିଛି ହୋଇ ନ ପାରେ । ଏହିପରି ସମସ୍ତ ଆସ୍ତିକ ନାସ୍ତିକ ଶାସ୍ତ୍ର, ଈଶ୍ୱର ଅଛନ୍ତି, ଈଶ୍ୱର ନାହାନ୍ତି ଏହିପରି କହିଛନ୍ତି । ସେମାନଙ୍କ ବର୍ଣ୍ଣନର ମୁଖ୍ୟ ବିଷୟ ହିଁ ଈଶ୍ୱର ।

କେତେକ ଶାସ୍ତ୍ରକାର କଥାକୁ ସୂତ୍ର ରୂପରେ, କେତେକ ବାର୍ତ୍ତିକରେ, କେତେକ ସଂକ୍ଷେପରେ ଓ କେତେକ ବିସ୍ତାରିତ ଭାବରେ କହିଥାଆନ୍ତି । ଯେଉଁମାନେ ଶାସ୍ତ୍ରର ବିସ୍ତାର କରନ୍ତି, ସେମାନେ ଏହା ମଧ୍ୟ ଜାଣନ୍ତି ଯେ, ଅନେକ ଲୋକଙ୍କ ପକ୍ଷେ ଆମ୍ଭର ଏହି ବିସ୍ତୃତ ଗ୍ରନ୍ଥ ପଢ଼ିବା ସମ୍ଭବ ହେବ ନାହିଁ କିମ୍ବା ସେମାନଙ୍କୁ ସମୟ ମିଳିବ ନାହିଁ । ଏଣୁ ସେମାନେ ଗ୍ରନ୍ଥକୁ ବିସ୍ତାରିତ ଭାବରେ ଲେଖି ତାହାର ସୂଚୀ ପ୍ରସ୍ତୁତ କରିଥାଆନ୍ତି । ଏହା କମ୍ ସମୟ ମଧ୍ୟରେ ପାଠ କରିହୁଏ ଓ ଗ୍ରନ୍ଥର ସମସ୍ତ ବିଷୟକୁ ବୁଝିହୁଏ । ତେଣୁ ବିସ୍ତାରିତ ଭାବରେ ଲେଖା ହୋଇଥିବା ଏହି ଭାଗବତ କଥାର ଦ୍ୱିତୀୟ ଦିବସରେ ସୂଚୀକୁ ସଂକ୍ଷେପରେ ଲେଖା ଯାଇଅଛି । ଏହାକୁ ଶ୍ରବଣ କରନ୍ତୁ । ଏଥିରୁ ସମସ୍ତ ବିଷୟର ଆଭାସ ମିଳିଯିବ ।

---

★ କର୍ଦ୍ଦମ ପୁତ୍ର ଯେ କପିଳ । ସେ ବିଷ୍ଣୁ ଅଂଶେ କାମେ ଭୋକ ॥
ମାତାଙ୍କୁ (ଦେବହୂତି) ଜ୍ଞାନଧର୍ମ କହି । ବିଷ୍ଣୁର ମହିମା ବୁଝାଇ ॥
କପିଳ ଯୋଗସ୍ଥାନେ ଗଲେ । ଯୋଗ ଆସନରେ ବସିଲେ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ସୂତ କହିଲେ—‘‘ମୁନିଗଣ ! ହିରଣ୍ୟାକ୍ଷ ବଧ ପର୍ଯ୍ୟନ୍ତ ପ୍ରଥମାହ କଥାର ବିଷୟ ସୂଚୀ ଥିଲା, ଏବେ ଦ୍ୱିତୀୟାହର ସୂଚୀକୁ ଆପଣଙ୍କ ଆଗରେ କହୁଛି । ହିରଣ୍ୟାକ୍ଷ ବଧ ପର୍ଯ୍ୟନ୍ତ କଥା ‘ଭାଗବତ କଥା’ର ୭ମ ଖଣ୍ଡ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଛି । ଏବେ ଅଷ୍ଟମ ଖଣ୍ଡରୁ ଦ୍ୱିତୀୟାହ କଥା ଆରମ୍ଭ ହେବ ।

ଦ୍ୱିତୀୟାହରେ ସର୍ବପ୍ରଥମେ ବ୍ରହ୍ମାଙ୍କଦ୍ୱାରା ରଚିତ ବିବିଧ ପ୍ରକାରର ସୃଷ୍ଟିର ବର୍ଣ୍ଣନା କରାଯାଇଛି । ସୃଷ୍ଟିର ବର୍ଣ୍ଣନା କରୁ କରୁ ମନୁ-ଶତରୂପାଙ୍କ ଉତ୍ପତ୍ତି ସମ୍ବନ୍ଧରେ କୁହାଯାଇଛି । ମହାରାଜ ସ୍ୱାୟମ୍ଭୁବଙ୍କର ପ୍ରିୟବ୍ରତ ଓ ଉତ୍ତାନପାଦ ନାମକ ଦୁଇ ପୁତ୍ର ଓ ଆକୂତି, ପ୍ରସୂତି ଏବଂ ଦେବହୂତିଙ୍କ ଚରିତ୍ର ବର୍ଣ୍ଣନା କରାଯାଇଛି । ଭଗବତୀ ଦେବହୂତିଙ୍କର ବିବାହ ବ୍ରହ୍ମପୁତ୍ର କର୍ଦ୍ଦମ ମୁନିଙ୍କ ସହିତ ହୋଇଥିଲା । କର୍ଦ୍ଦମ ମୁନି ବ୍ରହ୍ମାଙ୍କ ଆଜ୍ଞାରେ ସୃଷ୍ଟି ବୃଦ୍ଧି ନିମିତ୍ତ କିପରି ତପ କଲେ, ଭଗବାନ୍ କିପରି ତାଙ୍କୁ ଦର୍ଶନ ଦେଲେ ଏବଂ କର୍ଦ୍ଦମ ମୁନି ସେତେବେଳେ ବୋହୂଙ୍କ ବରଦାନ ମାଗିଲେ ସେତେବେଳେ ଭଗବାନ୍ ହସି ହସି କିପରି ପରଦିନ ବିବାହ ହେବାର ତୁରନ୍ତ ବରଦାନ ଦେଲେ ତାହା ବର୍ଣ୍ଣନା କରାଯାଇଛି ।

ଏଣେ ନାରଦଙ୍କ କହିବା ଅନୁସାରେ ମହାରାଜା ମନୁ ନିଜର ମହାରାଣୀ ଶତରୂପା ଓ ବିବାହଯୋଗ୍ୟା କନ୍ୟା ଦେବହୂତିଙ୍କୁ ନେଇ କର୍ଦ୍ଦମ ମୁନିଙ୍କ ଆଶ୍ରମକୁ ଆସିଲେ ଓ ମୁନିଙ୍କ ସହିତ ଦେବହୂତିଙ୍କ ବିବାହ ପ୍ରସ୍ତାବ ଉପସ୍ଥାପିତ କଲେ । ବିବାହ କାର୍ଯ୍ୟ ସମାପନ ହେଲା । ବିବାହ ପରେ ମୁନି ପୁନଶ୍ଚ ତପସ୍ୟାରେ ରତ ହେଲେ । ରାଜକନ୍ୟା ମୁନିଙ୍କର ସେବା କଲେ । ତାଙ୍କ ସେବାରେ ସନ୍ତୁଷ୍ଟ ହୋଇ ମୁନି ଦେବହୂତିଙ୍କୁ ସନ୍ତାନବତୀ ହେବାକୁ ବର ଦେଲେ । ଯୋଗ ବଳରେ ଏକ ବିମାନ ସୃଷ୍ଟି କରି ମୁନି ସପତ୍ନୀକ ଲୋକପାଳଙ୍କର ପୁଣ୍ୟ ପୁରୀକୁ ପରିଭ୍ରମଣରେ ଗଲେ । ପୁନଶ୍ଚ ଆଶ୍ରମକୁ ଆସିଲେ । ଆଶ୍ରମରେ ତାଙ୍କର ନଅଟି କନ୍ୟା ଜାତ ହେଲେ । ଏହାପରେ ମୁନିଙ୍କର ବୈରାଗ୍ୟାଗ୍ନି ଦୀପ୍ତିମନ୍ତ ହୋଇ ଉଠିଲା । ସେ ଦଣ୍ଡ କମଣ୍ଡଳୁ ଧରି ପୁନଶ୍ଚ ତପସ୍ୟା କରିବାକୁ ବାହାରି ପଡ଼ିଲେ । ଦେବହୂତି ତାଙ୍କୁ ବିନୟ ପୂର୍ବକ ନଯିବାକୁ ବୁଝାଇଲେ ଓ ମୁନି ତାଙ୍କ କଥା ରଖି ଅଟକି ଗଲେ । ତାହାପରେ ଦେବହୂତିଙ୍କ ଗର୍ଭରୁ ଭଗବାନ୍ କପିଳ ଅବତାର ଗ୍ରହଣକରି ଜନ୍ମ ନେଲେ । ମୁନି ତାଙ୍କର ନଅ କନ୍ୟାଙ୍କୁ ନଅ ମୁନିଙ୍କୁ ପ୍ରଦାନକରି ପୁନଶ୍ଚ ତପସ୍ୟା କରିବାକୁ ଚାଲିଗଲେ ।

ଏଣେ ମାତା ଦେବହୂତି ନିଜର ପରମାତ୍ମା ପୁତ୍ର କପିଳଙ୍କଠାରୁ ତତ୍ତ୍ୱଜ୍ଞାନ ଶୁଣିବାକୁ ଜିଜ୍ଞାସା କଲେ । ଭଗବାନ କପିଳ ମାତାଙ୍କୁ ଭକ୍ତିଯୋଗ, ଜ୍ଞାନଯୋଗ ଓ ଅଷ୍ଟାଙ୍ଗଯୋଗ ଆଦି ଶିକ୍ଷାଦେଲେ । ଏହାଦ୍ୱାରା ଦେବହୂତି ଜୀବନ୍ମୁକ୍ତିର ସ୍ଥିତିରେ ଉପନୀତ ହେଲେ । ମାତାଙ୍କୁ ସତ୍‌ଶିକ୍ଷା ଦେଇ କପିଳ ଭଗବାନ୍ ବନକୁ ଚାଲିଗଲେ । ମାତା ନିର୍ବାଣପଦ ପ୍ରାପ୍ତ ହେଲେ । ସେ ବ୍ରହ୍ମଲୀନ ହୋଇଗଲେ । ଏହିପରି ଅତି ସଂକ୍ଷେପରେ କପିଳ ଚରିତ୍ର କୁହାଗଲା । ପୁନଶ୍ଚ ଦତ୍ତାତ୍ରେୟ ଭଗବାନଙ୍କ ଅବତାର କଥା କୁହାଯିବ । ତିନି ଦେବ କିପରି କର୍ଦ୍ଦମ କନ୍ୟା ଅନସୂୟାଙ୍କର ପୁତ୍ର ହୋଇଥିଲେ, ତାହା ଶ୍ରବଣ କରନ୍ତୁ । ପାତିବ୍ରତ ପ୍ରଭାବରୁ ତିନି ଦେବ କିପରି ମୁଗ୍ଧ ହୋଇଥିଲେ, ପୁତ୍ରପ୍ରାପ୍ତି ପାଇଁ କର୍ଦ୍ଦମ ମୁନି କିପରି ତପସ୍ୟା କଲେ, ତିନି ଦେବ କିପରି ପ୍ରକଟ ହୋଇ ମୁନିଙ୍କୁ ବର ପ୍ରାର୍ଥନା କରିବାକୁ କହିଲେ, କିପରି ଭଗବାନ୍ ଦତ୍ତାତ୍ରେୟ ଅବତାର ଗ୍ରହଣ କଲେ, ଏହିସବୁ କଥା ପ୍ରସଙ୍ଗରେ ଭାଗବତ କଥାର ଅଷ୍ଟମ ଖଣ୍ଡ ସମାପ୍ତ ହୋଇଛି ।

ନବମ ଖଣ୍ଡରେ ଦତ୍ତାତ୍ରେୟ ଭଗବାନଙ୍କର କୃପାକୁ ଉଦାହରଣ ଦେଇ ସେ ଯେପରି ସହସ୍ରାର୍ଜୁନ, ଯଦୁ ଆଦି ରାଜାମାନଙ୍କ ଉପରେ କୃପା କଲେ, ତାହା ବର୍ଣ୍ଣିତ ହୋଇଛି ।

ଦତ୍ତାତ୍ରେୟଙ୍କ ଚରିତ୍ରକୁ ସମାପ୍ତ କରିବା ପରେ ଦେବହୂତିଙ୍କର ନବକନ୍ୟାଙ୍କ ବଂଶର ବର୍ଣ୍ଣନା ବିଶଦ ଭାବରେ କରାଯାଇଛି । ଏହି ପ୍ରସଙ୍ଗରେ ଭୃଗୁଙ୍କ କନ୍ୟା ଶ୍ରୀଙ୍କର କଥା କୁହାଯାଇଛି । ଏବେ ପୁନଶ୍ଚ ମନୁଙ୍କର ତୃତୀୟ କନ୍ୟା ପ୍ରସୂତିଙ୍କ ବଂଶର ବର୍ଣ୍ଣନା କରାଯାଇଛି । ଏହାପରେ ଭଗବତୀ ମୂର୍ତ୍ତିଙ୍କ ଗର୍ଭରୁ ଭଗବାନ୍ ନର-ନାରାୟଣଙ୍କର ଅବତାର କିପରି ହେଲା, ସେ କିପରି ତପସ୍ୟା କଲେ, ଏହା ଦୁଇ ଅଧ୍ୟାୟରେ ପ୍ରସଙ୍ଗ କ୍ରମେ କୁହାଯାଇଛି । ପୁନଶ୍ଚ ଅଗ୍ନି ଓ ପିତରଙ୍କର ବଂଶ ବର୍ଣ୍ଣନା କରାଯାଇଛି । ଏବେ ସତୀ ଚରିତ୍ର ଆରମ୍ଭ ହେଉଛି ।

ଦକ୍ଷ ପ୍ରଜାପତିଙ୍କର କନ୍ୟା ସତୀଙ୍କର ସଦାଶିବଙ୍କ ସହିତ କିପରି ବିବାହ ହେଲା, ପ୍ରଜାପତିମାନଙ୍କ ଯଜ୍ଞରେ ଦକ୍ଷ ଶିବଙ୍କ ଉପରେ କିପରି ଦୁଃଖିତ ହେଲେ ଓ ଶେଷରେ କିପରି ଶାପାଶାପୀ ହେଲା, ତାହା ବର୍ଣ୍ଣନା କରାଯାଇଛି ।

ଏଥିରେ କଟୁକଥାକୁ ଦୂର କରିବା ପାଇଁ କେତେକ ଶିବମହିମା ଗାନ କରାଯାଇଛି । ପ୍ରସଙ୍ଗ ବଶତଃ ଉପମନ୍ୟୁ ମହର୍ଷିଙ୍କ ଚରିତ୍ର ମଧ୍ୟ ଗାନ କରାଯାଇଛି ।

ପ୍ରଜାପତିମାନଙ୍କ ଯଜ୍ଞରେ କ୍ରୁଦ୍ଧ ହୋଇ ଦକ୍ଷ ଶିବଙ୍କ ଉପରେ ପ୍ରତିଶୋଧ ନେବାପାଇଁ ବୃହସ୍ପତି ସତ୍ର ନାମକ ବଡ଼ ଯଜ୍ଞ ଅନୁଷ୍ଠାନ କରିଥିଲେ । ସେଥିରେ ଶିବଙ୍କୁ ଯୋଗ ଦେବାପାଇଁ ନିମନ୍ତ୍ରଣ କଲେନାହିଁ । ସେହି ଯଜ୍ଞକୁ ଯାଉଥିବା ବିମାନଗୁଡ଼ିକୁ ଦେଖି ସତୀଙ୍କର ଆଗ୍ରହ ବଢ଼ିଲା । ସେ ଶିବଙ୍କୁ ଦକ୍ଷ ଯଜ୍ଞରେ ଯୋଗ ଦେବାକୁ ଆଗ୍ରହ ସହକାରେ କହିଲେ । ଶିବ ନାନାଦି ଆଳ ଦେଖାଇ ସତୀଙ୍କୁ ନ ଯିବାପାଇଁ ବୁଝାଇଲେ, କିନ୍ତୁ ସତୀ ତାହା ମାନିଲେ ନାହିଁ । ସେ ଶିବଙ୍କ ଆଜ୍ଞାକୁ ଅବଜ୍ଞା କରି ପିତାଙ୍କ ଯଜ୍ଞରେ ଯୋଗ ଦେବାପାଇଁ ଚାଲିଗଲେ । ଯଜ୍ଞରେ ପହଞ୍ଚିବା ଦେଖି ପିତା ତାଙ୍କୁ ଆଦର କଲେ ନାହିଁ । ଅନ୍ୟ କୌଣସି ସଭାସଦ୍ ମଧ୍ୟ ତାଙ୍କୁ କିଛି ପଚାରିଲେ ନାହିଁ । ଏଥିରେ ଦେବୀ କ୍ରୁଧିତ ହେଲେ, ସେ ସେଠାରେ ଶିବଗୁଣ ଗାନ କଲେ । ଏଠାରେ ଏହି ପର୍ଯ୍ୟନ୍ତ ଭାଗବତ କଥାର ନବମ ଖଣ୍ଡ ଶେଷ ହୋଇଛି ।

ଏବେ ଦଶମ ଖଣ୍ଡ କଥା ଆରମ୍ଭ ହେଉଛି । ସେହି ଦକ୍ଷଯଜ୍ଞ କଥାକୁ ଚାଲୁରଖି ସେଠାରେ ସତୀ ଯେପରି ଯଜ୍ଞକୁଣ୍ଡରେ ପଡ଼ି ଭସ୍ମ ହୋଇଗଲେ, ତାହା ବର୍ଣ୍ଣିତ ହୋଇଛି । ପୁନଶ୍ଚ ଯେପରି ଲୋକମାନେ ଦକ୍ଷଙ୍କୁ ଧିକ୍କାର କଲେ, ଦେବଗଣ କୁପିତ ହେଲେ, ନାରଦ ଶିବଙ୍କୁ ଏହି ସମାଚାର ଶୁଣାଇଲେ, ଶିବ ଏହା ଶୁଣି ଯେପରି ବୀରଭଦ୍ରଙ୍କୁ ଉତ୍ପନ୍ନ କଲେ, ବୀରଭଦ୍ରମାନେ ଦକ୍ଷଯଜ୍ଞକୁ ଯେପରି ବିଧ୍ୱଂସ କଲେ, ରୁଦ୍ର ପାର୍ଷଦଗଣ ଯେପରି ବିଭତ୍ସତାରେ ଯଜ୍ଞର ବିନାଶ କଲେ ଓ ଦକ୍ଷଙ୍କର ଶିରଚ୍ଛେଦକରି ହବନକଲେ, ଏ ସମସ୍ତ ବିଷୟ ବର୍ଣ୍ଣିତ ହୋଇଛି ।

ପୁନଶ୍ଚ ଦକ୍ଷଯଜ୍ଞ କଥାକୁ ଚାଲୁ ରଖାଯାଇ ଦେବଗଣଙ୍କର ବ୍ରହ୍ମାଙ୍କ ନିକଟକୁ ଯିବା, କୈଳାସର ଶୋଭା ଦେଖି ଦେଖି ଶିବଙ୍କ ପାଖରେ ପହଞ୍ଚି ତାଙ୍କୁ ସ୍ତୁତି କରିବା, ଶିବଙ୍କଦ୍ୱାରା ଦକ୍ଷଯଜ୍ଞ ପୂରଣର ବରଦାନ ପାଇବା, ଦକ୍ଷଯଜ୍ଞର ପୁନରୁଦ୍ଧାର ହେବା, ଯଜ୍ଞରେ ଶ୍ରୀବିଷ୍ଣୁଙ୍କର ଆବିର୍ଭାବ ହେବା, ସମସ୍ତଙ୍କଦ୍ୱାରା ତାଙ୍କର ବିଭିନ୍ନ ସ୍ତୁତି କରାଯିବା ଆଦି ବିଷୟ କୁହାଯାଇ ଶେଷରେ ଦକ୍ଷଯଜ୍ଞର ସମାପ୍ତି ବର୍ଣ୍ଣନା କରାଯାଇଛି ।

ତାହାପରେ ଦକ୍ଷଯଜ୍ଞରେ ଭସ୍ମ ହୋଇଥିବା ସତୀ କିପରି ହିମାଞ୍ଚଳଙ୍କ ପତ୍ନୀ ମୈନାଙ୍କ ଗର୍ଭରୁ ପାର୍ବତୀ ରୂପରେ ଜନ୍ମ ଗ୍ରହଣକଲେ, ଶିବଙ୍କୁ ପାଇବା ପାଇଁ ତପକଲେ ଓ ତାଙ୍କର ଶିବଙ୍କ ସହିତ କିପରି ପୁନଃ ବିବାହ ହେଲା, ଏହି ବିଷୟ ବର୍ଣ୍ଣନା କରାଯାଇ ଭଗବାନ୍ ଶିବଙ୍କର ଚରିତ୍ରର ସମାପ୍ତି କରାଯାଇଛି । ଶେଷରେ ଅଧର୍ମର ବଂଶ କୁହାଯାଇ ଭାଗବତ କଥାର ଦଶମ ଖଣ୍ଡର ସମାପ୍ତି କରାଯାଇଛି ।

ଏବେ ଏକାଦଶ ଖଣ୍ଡରେ ପରମ ଭଗବତ ଶ୍ରୀ ଧ୍ରୁବଙ୍କର ଚରିତ୍ର ବର୍ଣ୍ଣିତ ହେବ । ମହାରାଜ ଉତ୍ତାନପାଦଙ୍କର ସୁନୀତି ଓ ସୁରୁଚି ଦୁଇ ରାଣୀଙ୍କ ମଧ୍ୟରୁ ସୁନୀତିଙ୍କ ଗର୍ଭରୁ ଧ୍ରୁବଙ୍କର ଜନ୍ମ, ସୁରୁଚିଙ୍କ ସଙ୍କେତରେ ପିତା ନିଜ କୋଳରୁ ଧ୍ରୁବଙ୍କୁ ଓହ୍ଲାଇ ଦେବା, ଏହି ତିରସ୍କାରରେ ଦୁଃଖୀ ହୋଇ ଧ୍ରୁବ ରୋଦନ କରିବାରୁ ମାତା ତାହାର ଧୈର୍ଯ୍ୟ ଧାରଣ କରାଇ ଭଗବାନଙ୍କ ଚରଣରେ ଶରଣ ନେବାକୁ ଉପଦେଶ ଦେବା, ମା'ଙ୍କର ଉପଦେଶରେ ଧ୍ରୁବ ଲୁଚିକରି ବନକୁ ଯିବା, ମାର୍ଗରେ ବୀଣା ବାଦନକରି ହରିନାମ ଗାନକରି ଆସୁଥିବା ନାରଦଙ୍କୁ ଭେଟିବା, ନାରଦ ତାଙ୍କୁ ପରୀକ୍ଷାକରି ଉପଦେଶ ଦେବା, ନାରଦ ଉତ୍ତାନପାଦଙ୍କୁ ବୁଝାଇ ତାଙ୍କର ଚିନ୍ତା ଲାଘବ କରାଇବା, ଏଣେ ଧ୍ରୁବ ନାରଦଙ୍କର ଉପଦେଶ ପାଇ ମଧୁବନକୁ ଯାଇ ଘୋର ତପସ୍ୟା କରିବା, ତାଙ୍କର ଘୋର ତପସ୍ୟାରେ ଚରାଚର ବିଶ୍ୱର ଶ୍ୱାସରୁଦ୍ଧ ହେବାକୁ ଲାଗିବା, ଦେବତାମାନେ ଦୟାନିଧିଙ୍କ ପାଖରେ ଯାଇ ପହଞ୍ଚିବା, ଦେବତାମାନଙ୍କୁ ବୁଝେଇ ଭଗବାନ୍ ଧ୍ରୁବଙ୍କୁ ଦର୍ଶନ ଦେବାକୁ ଯିବା ଆଦି ବର୍ଣ୍ଣନା ଏହିପରି କରାଯାଇଛି, ଯଥା:— ଧ୍ରୁବ ହରିଦର୍ଶନ ପାଇ କୃତାର୍ଥ ହେଲେ । ସେ ସ୍ତୁତି କରିବାକୁ ଚାହିଁଲେ, କିନ୍ତୁ କିଛି ପଢ଼ି ନଥିବାରୁ ସ୍ତୁତି କରି ପାରିଲେ ନାହିଁ । ଭଗବାନ୍ ପ୍ରେମରେ ତାଙ୍କ ଶଙ୍ଖଦ୍ୱାରା ସ୍ପର୍ଶ କଲେ, ଶଙ୍ଖ ସ୍ପର୍ଶ ପାଇବା ମାତ୍ରେ ସେ ଦିବ୍ୟ ସ୍ତୁତି କଲେ । ଭଗବାନ୍ ତାଙ୍କୁ ଧ୍ରୁବପଦ ଲାଭ କରିବାକୁ ବର ଦେଲେ, ବର ପାଇ ସେ ଖିନ୍ନ ମନରେ ଫେରିଲେ । ମୋକ୍ଷଦାତା ଭଗବାନଙ୍କଠାରୁ ରାଜା କାହିଁକି ବର ପାଇଲେ ଏଥିରେ ଧ୍ରୁବଙ୍କର ପୂର୍ବ ଜନ୍ମର ବୃତ୍ତାନ୍ତ କୁହାଯାଇ ଜନ୍ମାନ୍ତର ଦୃଷ୍ଟାନ୍ତ ଦିଆଯାଇଛି ।

ଧ୍ରୁବ ନଗରକୁ ଫେରି ଆସିଲେ । ଏହି ସମାଚାର ଶୁଣି ପୁରବାସୀଗଣଙ୍କ ସହିତ ସୈନ୍ୟମାନଙ୍କୁ ସଙ୍ଗରେ ଧରି ପିତାମାତା ତାଙ୍କୁ ପାଛୋଟି ନେବାକୁ ଆସିଲେ । ଧ୍ରୁବ ଘରକୁ ଆସିଲେ, ତାଙ୍କୁ ରାଜ୍ୟ ମିଳିଲା । ପିତାମାତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଅବସର ଦେଖି ଦିନେ ମା' ଧ୍ରୁବଙ୍କୁ ଏକାନ୍ତରେ କେତେକ ଉପଦେଶ ପ୍ରଦାନ କଲେ । ଧ୍ରୁବ ବନରୁ ଫେରି ପରେ ଗୃହସ୍ଥାଶ୍ରମୀ ହୋଇଥିଲେ । ତାଙ୍କର ଭାଇ ଉତ୍ତମଙ୍କୁ ଯକ୍ଷ ମାରି ଦେଇଥିଲେ । ଧ୍ରୁବ କ୍ରୋଧରେ ଯକ୍ଷମାନଙ୍କ ଉପରେ ଆକ୍ରମଣ କରିବାରୁ ସ୍ୱର୍ଗରୁ ସ୍ୱାୟମ୍ଭୁବ ମନୁ ଆସି ଧ୍ରୁବଙ୍କୁ ବୋଧ ଶୋଧ କରାଇ ଯୁଦ୍ଧରୁ ନିବୃତ୍ତ କରିଥିଲେ । କୁବେର ଏଥିରେ ପ୍ରସନ୍ନ ହୋଇ ଧ୍ରୁବଙ୍କୁ 'ଭକ୍ତି' ବରଦାନ ଦେଲେ । ଏତକ କଥା ଏକାଦଶ ଖଣ୍ଡରେ ବର୍ଣ୍ଣିତ ହୋଇଅଛି ।

ଦ୍ୱାଦଶ ଖଣ୍ଡରେ ଧ୍ରୁବ ଚରିତ୍ରକୁ ହିଁ ଚାଲୁ ରଖାଯାଇ ଧ୍ରୁବ ବଦରିକା ଆଶ୍ରମକୁ ଯାଇ ଯେପରି ତପସ୍ୟା କଲେ, ତାହା ବର୍ଣ୍ଣିତ ହୋଇଛି । ଏହାପରେ ଧ୍ରୁବ ଯେପରି ଧ୍ରୁବଲୋକକୁ ଗଲେ, ତାହା ସଂକ୍ଷେପରେ ବର୍ଣ୍ଣିତ ହୋଇଛି । ଶେଷରେ ଧ୍ରୁବଙ୍କର ମାହାତ୍ମ୍ୟ କୁହାଯାଇ ତାଙ୍କ ବଂଶ ବର୍ଣ୍ଣନା କରାଯାଇଛି । ଏ ପର୍ଯ୍ୟନ୍ତ ଏହିପରି ଧ୍ରୁବ ଚରିତ୍ରର ପ୍ରସଙ୍ଗ କୁହାଯାଇଛି ।

ଏହାପରେ ଅଙ୍ଗପୌତ୍ର ମହାରାଜ ପୃଥୁଙ୍କର ଅବତାର ବର୍ଣ୍ଣନ । ମୃତ୍ୟୁ କନ୍ୟା ସୁନୀଥା କିପରି ମହାରାଜା ଅଙ୍ଗଙ୍କୁ ବିବାହ କଲେ, ତାଙ୍କ ଗର୍ଭରୁ କ୍ରୂରକର୍ମା ବେନଙ୍କର ଜନ୍ମ କିପରି ହେଲା, ବେନଙ୍କର କ୍ରୂରତାରେ ମହାରାଜ ଅଙ୍ଗଙ୍କର ରାଜ୍ୟ ତ୍ୟାଗ, ରାଜା ହେବାପରେ ବେନଙ୍କର ନିରଙ୍କୁଶତା, ମୁନିମାନେ ଯାଇ ତାଙ୍କୁ ଉପଦେଶ ଦେବା, ବେନ ମୁନିଋଷିମାନଙ୍କୁ ଅପମାନିତ କରିବା, ମୁନିମାନଙ୍କର ହୁଙ୍କାରଦ୍ୱାରା ବେନଙ୍କର ମୃତ୍ୟୁ ହେବା, ଏହି ପର୍ଯ୍ୟନ୍ତ ପୃଥୁଙ୍କର ଜନକ ବେନଙ୍କ କଥା ବର୍ଣ୍ଣିତ ହୋଇଛି ।

ବିନା ରାଜାରେ ଦେଶରେ ତ ଅରାଜକତା ସୃଷ୍ଟି ହେବା ସ୍ୱାଭାବିକ, ଏହା ଦେଖି ଦୟାଳୁ ବିପ୍ରଗଣ ଦୁଃଖିତ ହେବା, ସେମାନେ ସୁନୀଥାଙ୍କ ନିକଟକୁ ଯାଇ ବେନଙ୍କର ଶରୀରକୁ ମାଗିବା, ତାହାର ମନ୍ଥନରେ ମହାରାଜ ପୃଥୁଙ୍କର ପ୍ରାଦୁର୍ଭାବ ହେବା, ସମସ୍ତ ମୁନିଋଷିଙ୍କଦ୍ୱାରା ତାଙ୍କର ରାଜ୍ୟାଭିଷେକ ହେବା, ସୂତ ଓ ବନ୍ଦୀମାନଙ୍କଦ୍ୱାରା ତାଙ୍କ ସ୍ତୁତି, ପ୍ରଜାଗଣଙ୍କ ଦୁଃଖ

ଶୁଣି ପୃଥୁଙ୍କର ପୃଥ୍ୱୀ ଉପରେ କୋପ, ପୃଥ୍ୱୀଙ୍କ ସହିତ ତାଙ୍କର ସୁନ୍ଦର ସମ୍ବାଦ, ପୃଥ୍ୱୀର ଦହନ ତଥା ମହାରାଜଙ୍କଦ୍ୱାରା ପୃଥ୍ୱୀର ସଂସ୍କାର କରାଇବା, ଏହି ସମସ୍ତ ବିଷୟ ମଧ୍ୟ ଭାଗବତ କଥାର ଦ୍ୱାଦଶ ଖଣ୍ଡରେ ବର୍ଣ୍ଣିତ ହୋଇଛି ।

ତ୍ରୟୋଦଶ ଖଣ୍ଡରେ ପୃଥୁ ଚରିତ୍ରକୁ ଚାଲୁ ରଖାଯାଇ ସନକାଦି ଋଷିଙ୍କର ଆଗମନ ଓ ସେମାନଙ୍କର ଉପଦେଶ ବର୍ଣ୍ଣନା କରାଯାଇଛି । ଏହାପରେ ମହାରାଜ ପୃଥୁଙ୍କର ବନ-ଗମନ ତଥା ତାଙ୍କର ପରଲୋକ ପ୍ରୟାଣ କଥା କୁହାଯାଇଛି । ପୁନଶ୍ଚ ପ୍ରଚେତାମାନଙ୍କର ପୁଣ୍ୟ ପରିଚୟ, ସେମାନଙ୍କ ଉପରେ ଶିବଙ୍କର କୃପା, ରୁଦ୍ରଗୀତ, ସେମାନଙ୍କର ଘୋର ତପସ୍ୟା ତଥା ନାରଦଙ୍କର ସେମାନଙ୍କୁ ଉପଦେଶର ବର୍ଣ୍ଣନା ଏଠାରେ କରାଯାଇଛି ।

ଏଣେ କର୍ମରେ ଆସକ୍ତ ପ୍ରଚେତାଗଣଙ୍କର ପିତା ମହାରାଜ ପ୍ରାଚୀନବର୍ହିଙ୍କୁ ନାରଦ ଜ୍ଞାନ ପ୍ରଦାନ କରିବା ପାଇଁ ଆସିଥାଆନ୍ତି । ପୁରଞ୍ଜନୋପାଖ୍ୟାନର ବ୍ୟାଜକୁ ସେ ଆଧ୍ୟାତ୍ମଜ୍ଞାନ ଉପଦେଶ ଦେଲେ । ପୁରଞ୍ଜନ (ଜୀବ) ନିଜ ରହିବା ପାଇଁ ସ୍ଥାନ ଖୋଜି ଖୋଜି ଏକ ପୁରୀ (ମାନବ ଶରୀର)ରେ ପହଞ୍ଚିଲେ । ସେଠାରେ ଏକ ସ୍ତ୍ରୀ ପୁରଞ୍ଜନୀ (ବୁଦ୍ଧି)କୁ ପାଇଲେ । ପୁରଞ୍ଜନ ତାକୁ ତାହାର ପରିଚୟ ପଚାରିଲେ । ଦୁଇଜଣଙ୍କ ମଧ୍ୟରେ ସମ୍ବନ୍ଧ ସ୍ଥାପିତ ହେଲା । ଉଭୟେ ବିବାହ କଲେ । ଉଭୟେ ମିଶି ଆନନ୍ଦରେ ବିହାର କଲେ । ଦିନେ ପୁରଞ୍ଜନ ମୃଗୟା ଉଦ୍ଦେଶ୍ୟରେ ବାହାରିଲେ । ସେଥିରେ ପୁରଞ୍ଜନୀ ମାନ କରି ବସିଲେ । କାମୀ ପୁରଞ୍ଜନ ତାକୁ ମାନନ୍ତି, ତା ପାଦତଳେ ପଡ଼ନ୍ତି, ତାଠାରୁ ଗାଳି ଶୁଣନ୍ତି । ଏଥିରେ ମାନିନୀ ହସେ, ତାହାର ମାନ କର୍ପୂର ପରି ଉଡ଼ିଯାଏ । ଉଭୟେ ପୁନଶ୍ଚ ମିଳିମିଶି ଯାଆନ୍ତି । ପୁରଞ୍ଜନ ଏହିପରି ପତ୍ନୀ, ପୁତ୍ର ଓ କନ୍ୟାଙ୍କ ପ୍ରତି ଆସକ୍ତ ହୋଇ ସମୟ କଟାଉଥିଲେ । ସେହି ସମୟରେ (ଜରା, ଭୟ, ମୃତ୍ୟୁ, କାଳ ଆଦି) ଶତ୍ରୁ ତାଙ୍କ ପୁରୀ ଉପରେ ଆକ୍ରମଣ କରିଦେଲେ । କାଳକନ୍ୟା (ଜରା)ର ପରିଚୟ ଏଥିରେ ଦିଆଯାଇଛି । ସମସ୍ତେ ମିଳିତ ହୋଇ ପୁରଞ୍ଜନର ପୁରୀକୁ ବିଧ୍ୱଂସ କରିଦେଲେ । ପୁରୀ ନଷ୍ଟ ହୋଇଗଲା । ପୁରଞ୍ଜନ ପୁରଞ୍ଜନୀଙ୍କୁ ଧ୍ୟାନ କରୁ କରୁ ମରିଗଲେ । ତେଣୁ ପରଜନ୍ମରେ ସେ ଏକ ସ୍ତ୍ରୀ ହୋଇ ଜନ୍ମ ଗ୍ରହଣ କଲେ । ତାଙ୍କର ମଧ୍ୟ ଅନେକ ପୁତ୍ରକନ୍ୟା ହେଲେ । ତାଙ୍କର ପତି ତାଙ୍କୁ ନେଇ ବନକୁ ତପ କରିବାକୁ ଚାଲିଗଲେ । ବନରେ ତାଙ୍କର ମୃତ୍ୟୁ ହୋଇଗଲା । ସେ ସମୟରେ ହଂସ ଆସି ଉପଦେଶ ଦେଲେ । ପୁରଞ୍ଜନଙ୍କର ମୁକ୍ତି ହୋଇଗଲା । ପୁନଶ୍ଚ ଏହି ଆଖ୍ୟାୟିକା ଆଧ୍ୟାତ୍ମିକା ଅର୍ଥ ପ୍ରକାଶ କରି ସେଥିରୁ ମିଳିଥିବା ଶିକ୍ଷା ଏଠାରେ ବତାଇ ଦିଆଯାଇଛି । ଏହି କଥାକୁ ଶୁଣି ପ୍ରାଚୀନବର୍ହି ଜ୍ଞାନଲାଭ କରିଥିଲେ । ନାରଦ ଫେରିଆସିଲେ । ନାରଦ ଓ ପ୍ରାଚୀନବର୍ହିଙ୍କ ସମ୍ବାଦ ଏହି ପ୍ରକାର ଏଠାରେ ଉପସ୍ଥାପିତ କରାଯାଇଛି ।

ଏଣେ ତପରେ ନିମଗ୍ନ ପ୍ରଚେତାମାନଙ୍କୁ ଭଗବାନଙ୍କ ଦର୍ଶନ ମିଳିଗଲା । କୃତାର୍ଥ ହୋଇ ଯେତେବେଳେ ସେମାନେ ସଂସାରରେ ବୃକ୍ଷ ସଦୃଶ ବୃକ୍ଷକୁ ଦେଖିଲେ (ପ୍ରକୃତ ବୃକ୍ଷକୁ ଦେଖିଲେ), ସେତେବେଳେ ସେମାନେ ମୁଖରୁ ଅଗ୍ନି ବାହାର କରି ସେଗୁଡ଼ିକୁ ଜାଳିବାରେ ଲାଗିଲେ । ବ୍ରହ୍ମା ଆସି ସେମାନଙ୍କୁ ବୁଝାଇଲେ ଓ ବୃକ୍ଷମାନଙ୍କର କନ୍ୟା ବାର୍କ୍ଷୀଙ୍କ କଥା ଶୁଣାଇ ତାଙ୍କ ସହିତ ସମସ୍ତଙ୍କୁ ବିବାହ କରିବାକୁ ଆଜ୍ଞା ଦେଲେ । ବ୍ରହ୍ମାଙ୍କ ଆଜ୍ଞା ପାଳନ କରି ଦଶ ପ୍ରଚେତା ବାର୍କ୍ଷୀଙ୍କୁ ବିବାହ କଲେ ଓ ଗୃହସ୍ଥ ଧର୍ମ ପାଳନ କଲେ ।

ଦକ୍ଷ ପ୍ରଜାପତିଙ୍କୁ ଯେଉଁ ବ୍ରହ୍ମଜ୍ଞାନ ନହେବାର ଶାପ ଥିଲା ଓ ଯଜ୍ଞରେ ଯେଉଁ ଭଳି ଅପମାନ ସେ ଶିବଙ୍କୁ ଦେଇଥିଲେ, ସେଥିପାଇଁ ତାଙ୍କୁ ପୁନର୍ଜନ୍ମ ନେବାକୁ ପଡ଼ିଥିଲା । ସେହି ଦକ୍ଷ ଆସି ବାର୍କ୍ଷୀଙ୍କ ଉଦରରୁ ଉତ୍ପନ୍ନ ହେଲେ । ଏ ଜନ୍ମରେ ମଧ୍ୟ ତାଙ୍କ ନାମ ଦକ୍ଷ ରହିଥିଲା । ଏହି ପୁତ୍ର ଜନ୍ମ ହେଲାପରେ ପ୍ରଚେତାମାନେ ଗୃହସ୍ଥାଶ୍ରମ ତ୍ୟାଗକରି ବନକୁ ଚାଲିଗଲେ । ଭଗବତ କଥାର ତ୍ରୟୋଦଶ ଖଣ୍ଡରେ ଏହି ପର୍ଯ୍ୟନ୍ତ ଉପାଖ୍ୟାନ କୁହାଯାଇଛି ।

ଚତୁର୍ଦ୍ଦଶ ଖଣ୍ଡରେ ନାରଦଙ୍କଦ୍ୱାରା ପ୍ରଚେତାମାନଙ୍କୁ ଯେଉଁ ସଦୁପଦେଶ ପ୍ରାପ୍ତ ହୋଇଛି, ସର୍ବପ୍ରଥମେ ତାହା କୁହାଯାଇଛି ।' ଏହାପରେ ପ୍ରଚେତା ପ୍ରକରଣର ସମାପ୍ତି ହୋଇଛି । ଏହା ସହିତ ବିଦୁର-ମୈତ୍ରେୟ ସମ୍ବାଦର ମଧ୍ୟ ସମାପ୍ତି ହୋଇଛି । ଏହାପରେ ଭଗବାନ୍ ଋଷଭଦେବଙ୍କର ଚରିତ୍ର ଆରମ୍ଭ ହୋଇଛି ।

ମହାରାଜ ମନୁଙ୍କର ପ୍ରଥମ ପୁତ୍ର ଉତ୍ତାନପାଦଙ୍କ ଚରିତ୍ର ତ ପ୍ରଥମେ କୁହାଯାଇଛି, ଏବେ ତାଙ୍କର ଦ୍ୱିତୀୟ ପୁତ୍ର ପ୍ରିୟବ୍ରତଙ୍କ ଚରିତ୍ର କୁହାଯାଇଛି । ମହାରାଜ ପ୍ରିୟବ୍ରତ କିପରି ଗୃହତ୍ୟାଗ କରି ବନରେ ନାରଦଙ୍କ ଶିକ୍ଷା ଗ୍ରହଣ କରୁଥିଲେ, ସେହି ସମୟରେ ବ୍ରହ୍ମାଙ୍କୁ ସଙ୍ଗରେ ଧରି ତାଙ୍କ ପିତା ଆସି ସେଠାରେ କିପରି ପହଞ୍ଚିଲେ, ବ୍ରହ୍ମା ତାଙ୍କୁ ଗୃହସ୍ଥାଶ୍ରମର ଉପଯୋଗିତା ସମ୍ପର୍କରେ କିପରି ବୁଝାଇଲେ, ପ୍ରିୟବ୍ରତ ବ୍ରହ୍ମାଙ୍କର ଆଜ୍ଞା ପାଳନକରି ଗୃହସ୍ଥାଶ୍ରମରେ କିପରି ପ୍ରବେଶ କଲେ, ଗୃହସ୍ଥାଶ୍ରମରେ ରହି ମଧ୍ୟ ସେ ବିଷୟ ପ୍ରତି ଉଦାସୀନ ରହୁଥିଲେ । ତାଙ୍କର ପୁତ୍ର ହୋଇଯିବାରୁ ସେ ନିଜକୁ ଧିକ୍କାର କରି ଗୃହତ୍ୟାଗ କରି ଚାଲିଗଲେ । ତାଙ୍କର ପୁତ୍ର ଅଗ୍ନୀଧ୍ର ରାଜା ହେଲେ । ବ୍ରହ୍ମା ପ୍ରେରିତ "ପୂର୍ବଚିତ୍ତି ଅପ୍‌ସରା" ଠାରେ ମୋହିତ ହୋଇ ତାଙ୍କୁ ବିବାହ କରିବା ଓ ଅପ୍‌ସରାଠାରୁ ପୁତ୍ରମାନେ ଜାତ ହେବା, ଏହିସବୁ ପୁତ୍ରଙ୍କ ମଧ୍ୟରେ "ନାଭି" ସବୁଠାରୁ ବଡ଼ ଥିବାରୁ ସେ ରାଜା ହେବା—ଏହି ମହାରାଜ ନାଭିଙ୍କୁ ଭଗବାନ୍ ଋଷଭଙ୍କ ପିତାଶ୍ରୀ ହେବାର ସୁଦୁର୍ଲଭ ପଦ ପ୍ରାପ୍ତହେବା—ମହାରାଜ ନାଭି ଯଜ୍ଞ କରିବା—ଯଜ୍ଞରେ ଭଗବାନ୍ ପ୍ରକଟ ହେବା—ବ୍ରାହ୍ମଣ ଭଗବାନଙ୍କୁ "ଏହି ରାଜା ଆପଣଙ୍କ ଭଳି ପୁତ୍ର ଚାହୁଁଛନ୍ତି" ଏହି କଥା କହିବାରୁ ଭଗବାନ୍ କହିଲେ—"ମୋ ସମାନ ତ ମୁଁ କେବଳ । ମୁଁ ହିଁ ଏହାଙ୍କ ଘରେ ପୁତ୍ରରୂପେ ପ୍ରକଟ ହେବି ।" ଏଥିପାଇଁ ପାରମହଂସ ଧର୍ମ ପୃଥିବୀରେ ପ୍ରକାଶ କରିବା ନିମିତ୍ତ ଭଗବାନ୍ ଋଷଭ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କର ଶହେ ପୁତ୍ର ହୋଇଥିଲେ । ସେମାନଙ୍କ ମଧ୍ୟରେ ଭରତ ସର୍ବଶ୍ରେଷ୍ଠ ଥିଲେ । ନବେଟି ପୁତ୍ର ନବେଟି ରାଜ୍ୟର ରାଜା ହୋଇଥିଲେ । ଋଷଭଦେବ ନବେ ପୁତ୍ରଙ୍କୁ ଉପଦେଶ ପ୍ରଦାନ କରିଥିଲେ । ପୁନଶ୍ଚ ଅବଧୂତ ବୃତ୍ତି ଧାରଣ କରି ଅଜଗରୀ ବୃତ୍ତି ପ୍ରଦର୍ଶନ କରିଥିଲେ । ଆପେ ଆପେ ଆସି ପହଞ୍ଚୁଥିବା ସିଦ୍ଧିଗୁଡ଼ିକୁ ଟାଳି ଦେଉଥିଲେ, ଶେଷରେ ଦାବାଗ୍ନିରେ ଶରୀରକୁ ଭସ୍ମ କରି ନିର୍ବାଣପଦ ଲାଭ କରିଥିଲେ । ଏହାପରେ ଶ୍ରୀଭରତଙ୍କ ଚରିତ୍ର ଆରମ୍ଭ ହୋଇଛି । ଏହିପରି ଋଷଭ ଚରିତ୍ର ପର୍ଯ୍ୟନ୍ତ ଦ୍ୱିତୀୟାହ କଥା କୁହାଯାଇଛି । ଏଠାରେ ଦ୍ୱିତୀୟାହ ସମାପ୍ତ ହୋଇଛି, କିନ୍ତୁ ଭାଗବତ କଥାର ଚତୁର୍ଦ୍ଦଶ ଖଣ୍ଡ ସମାପ୍ତ ହୋଇ ନାହିଁ । ତୃତୀୟାହରେ କେତେକ କଥା ଏହି ଖଣ୍ଡରେ ଏବେ ଶେଷ ହେବ । ତୃତୀୟାହରେ ଭରତ ଚରିତ୍ର କୁହାଯାଇଛି ।

ସୂତ କହିଲେ—"ମୁନିଗଣ ! ମୁଁ ଅତି ସଂକ୍ଷେପରେ ଦ୍ୱିତୀୟାହର ସୂଚୀ ଆପଣମାନଙ୍କୁ କହିଲି । ଏବେ ଆପଣମାନେ ତୃତୀୟାହର ବିଷୟ ସୂଚୀ ଧ୍ୟାନପୂର୍ବକ ଶ୍ରବଣ କରନ୍ତୁ ।"

ଷଟ୍‌ପଦୀ

ଧ୍ରୁବ ଚରିତ୍ର କହି ପୂର୍ଣ୍ଣ ବେନକୋ ଚରିତ ବଖ୍ୟାନ୍ୟୋଂ ।
ପୁନି ପୃଥୁରାଜ ଚରିତ୍ର ପଚେତାନି ମୁନି ସନ୍ମାନ୍ୟୋଂ ॥
କହୀ ପୁରଞ୍ଜନ କଥା ଭୂପକୁଁ ଶିକ୍ଷା ଦୀହ୍ନୀଂ ।
ପୁନି ପ୍ରିୟବ୍ରତ କୋ ଚରିତ୍ର ଋଷଭ ଜ୍ୟୋଂ ଶିକ୍ଷା କୀହ୍ନୀଂ ॥
ଋଷଭ ଚରିତ ଅତି ହୀ ସୁଖଦ, ମୁନି ସମାସ ହୀ ତେଂ କହ୍ୟୋ ।
ୟହାଁ ତଲକ ସପ୍ତାହ ମେଂ, ଦ୍ୱିତୀୟ ଆହ ପୂରନ ଭୟୋ ॥



# ତୃତୀୟାହର ବିଷୟ ସୂଚୀ

ଦକ୍ଷଜନ୍ମ ପ୍ରଚେତୋଭ୍ୟସ୍ତତ୍ପୁତ୍ରୀଣାଂ ଚ ସନ୍ତତିଃ ।
ଯତୋ ଦେବାସୁରନରାସ୍ତିର୍ଯଙ୍ନଗଖଗାଦୟଃ ।।
ତ୍ୱାଷ୍ଟ୍ରସ୍ୟ ଜନ୍ମ ନିଧନଂ ପୁତ୍ରୟୋଶ୍ଚ ଦିତେର୍ଦ୍ୱିଜାଃ ।
ଦୈତ୍ୟେଶ୍ୱରସ୍ୟ ଚରିତଂ ପ୍ରହ୍ଲାଦସ୍ୟ ମହାତ୍ମନଃ ।। ☆

(ଶ୍ରୀ ଭାଁ: ୧୨ସ୍କ: ୧୨ଅ: ୧୭-୧୮ଶ୍ଳୋକ)

ଷଟ୍‌ପଦୀ

ତୃତୀୟ ଆହ୍ନ ମେ ପ୍ରଥମ ଭରତ ଜଡ଼ ଚରିତ ବଖାନ୍ୟୋ ।
କହ୍ୟୋ ଫେରି ଭୂଗୋଲ ଧ୍ୟାନ ତେଂ ମୁନିବର ଜାନ୍ୟୋ ।।
ନରକନି କୋ କଢ଼ୁ ବୃତ ଅଜାମିଲ ଚରିତ ବତାୟୌ ।
ନାମ ମହାତମ କହ୍ୟୋ ବିବିଧ ବିଧିତେଂ ସମୁଝାୟୌ ।।
ନାରଦଜୀ କୂଁ ଦତ୍ତ ନେ, ଦୟୋ ଶାପ ପୁନି ସୋ କଥା ।
ବିଶ୍ୱରୂପ ସୁର ପୁରୋହିତ, ସୁରପତି କାଟ୍ୟୋ ସିର ଯଥା ।।

ଏ ସାରା ସଂସାର ଭେଦରେ ସୃଷ୍ଟି ହୋଇଛି । ଭିନ୍ନତାରେ ହିଁ ସୃଷ୍ଟି ସଂଭବ । ସମତାରେ ସୃଷ୍ଟି ଅପୂର୍ଣ୍ଣ । ସର୍ବଜ୍ଞ ଋଷିଗଣଙ୍କ ମତରେ ସ୍ଥାନେ ସ୍ଥାନେ ଭିନ୍ନତା ଭଳି ଦୃଷ୍ଟିଗୋଚର ବି ହୋଇଥାଏ । ଗ୍ରନ୍ଥର ପାଠରେ ଭିନ୍ନତା, ସିଦ୍ଧାନ୍ତରେ ଭିନ୍ନତା, ବିଭାଜନ ମଧ୍ୟରେ ଭିନ୍ନତା, ଏପରି କି ଏକ ପଦର ଅର୍ଥରେ ବିଭିନ୍ନତା ରହିଛି । ଗୋଟିଏ ଗୋଟିଏ ଶ୍ଳୋକର ବିଭିନ୍ନ ଅର୍ଥ, ଏହିପରି ସପ୍ତାହ ପାରାୟଣରେ ମଧ୍ୟସ୍ଥଳର ଭିନ୍ନତା ରହିଛି । କେଉଁଠାରେ ଦ୍ୱିତୀୟାହର କଥା ଋଷଭାବଧି କୁହାଯାଇଛି ତ କେଉଁଠାରେ ଭରତାବଧି କୁହାଯାଇଛି । ଏହାକୁ ଆମେ ମଧ୍ୟ ଋଷଭାବଧି ବୋଲି ଗ୍ରହଣ କରିଥାଉ । ଋଷଭ-ଚରିତକୁ ସମାପ୍ତ କରିବା ପରେ ଦ୍ୱିତୀୟାହ କଥା ସମାପ୍ତ ହୁଏ । ଏବେ ଭରତ ଚରିତରୁ ତୃତୀୟାହ କଥା ଆରମ୍ଭ ହେବ । ଭାଗବତ କଥାର ଚତୁର୍ଦ୍ଦଶ ଖଣ୍ଡରେ ଋଷଭଦେବଙ୍କ ଚରିତ ଶେଷକୁ ରାଜର୍ଷି ଭରତଙ୍କ ତିନି ଜନ୍ମର କଥା

---

☆ ଦକ୍ଷ ପ୍ରଜାପତି ଚରିତ । ଯେମନ୍ତେ ପୁତ୍ର କଲେ ଜାତ ।।
ସେ ଦକ୍ଷ ପ୍ରଜାପତିଙ୍କର । ଷାଠିଏ ଝିଅଙ୍କୁ ସେ ବର ।।
ତାହାଙ୍କ ସନ୍ତତି ଯେମାନ । ଯକ୍ଷ ମନୁଷ୍ୟ ଦେବ ଗଣ ।।
ଅସୁର ପଶୁପକ୍ଷୀ ଜନ୍ତୁ । ଏ ଆଦି ଜନମର ହେତୁ ।।
ତ୍ୱଷ୍ଟା ପ୍ରଜାପତି ନନ୍ଦନ । ବିଶ୍ୱରୂପରେ ଉତପନ୍ନ ।।
ଏହାଙ୍କ ଜନ୍ମମରଣାଦି । ବୃତ୍ରାସୁରକୁ ଇନ୍ଦ୍ର ବଧି ।।
ଦିତିର ପୁତ୍ର ଯେ ହିରଣ୍ୟ । ଆବର ହିରଣ୍ୟାକ୍ଷ ପୁଣ ।।
ତାହାର ପୁତ୍ର ପ୍ରହଲାଦ । ସେ ଯେ ଦଇତ୍ୟେଶ୍ୱର ଇନ୍ଦ୍ର ।।
ତାହାଙ୍କ ଯେତେକ ଚରିତ । ...........

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

କୁହାଯାଇଛି । ମହାରାଜ ଭରତ ନିଜ ପିତାଙ୍କ ପରେ କିପରି ଏହି "ଅଜନାଭ ଖଣ୍ଡ"ର ରାଜା ହେଲେ । ସେ ଏପରି ପ୍ରତାପୀ ଥିଲେ ଯେ, ତାଙ୍କ ନାମ ଅନୁସାରେ ଏହି ଖଣ୍ଡ ଭରତଖଣ୍ଡ ନାମରେ ନାମିତ ହୋଇଥିଲା । ରାଜପାଟ ତ୍ୟାଗକରି ସେ ପୁଲହାଶ୍ରମକୁ ଯାଇ ତପ କରିବାକୁ ଲାଗିଲେ । ସେଠାରେ ଗଣ୍ଡକୀ ତୀରରେ ତପ କରୁଥିବା ସମୟରେ ଯେପରି ସେଠାକୁ ଗର୍ଭିଣୀ ହରିଣୀ ଆସିଲା ଓ ସିଂହ ଆକ୍ରମଣ ସମୟରେ ଧାଉଁଥିବା ଅବସ୍ଥାରେ ଯେପରି ଏକ ଛୁଆ ଜନ୍ମହୋଇ ନଦୀରେ ପଡ଼ିଗଲା, ଭରତ ଯେପରି ତାକୁ ଆଶ୍ରମକୁ ଆଣି ପୁତ୍ର ଭଳି ପାଳନ କରିବାକୁ ଲାଗିଲେ, ତାଠାରେ ତାଙ୍କର ଯେପରି ମୋହ ହୋଇଗଲା, ସେହି ମୋହ କାରଣରୁ ତା' ମୃତ୍ୟୁ ପରେ ଯେପରି ତାଙ୍କୁ ଅପାର ଦୁଃଖ ହେଲା, ସେହି ଦୁଃଖରେ ତାଙ୍କର ମୃତ୍ୟୁ ହେବାରୁ ପୁନଶ୍ଚ ସେ ମୃଗଯୋନିରେ ଜନ୍ମ ନେଲେ—ଏହା ହିଁ ଭରତଙ୍କର ପ୍ରଥମ ଜନ୍ମର ଚରିତ୍ର । ଦ୍ୱିତୀୟ ଜନ୍ମରେ ସେ ହରିଣ ହୋଇ ଜନ୍ମ ହେଲେ । ଜାତିସ୍ମର ହୋଇଥିବାରୁ ସେ ନିଜର ଜନ୍ମସ୍ଥାନ କାଲିଞ୍ଜର ପର୍ବତକୁ ତ୍ୟାଗକରି ପୁନଃ ଗଣ୍ଡକୀ ତଟସ୍ଥ ପୁଲହାଶ୍ରମରେ ଆସି ରହିଲେ ଓ ଶୁଷ୍କପତ୍ର ଖାଇ ଗଣ୍ଡକୀ ଜଳପାନ କରି ଭଗବନ୍ନାମ ଉଚ୍ଚାରଣ ପୂର୍ବକ ସମୟ କଟାଇଲେ । ତାଙ୍କର ଦେହ ତ୍ୟାଗ ହେବାରୁ ମୃଗଜନ୍ମରୁ ଉଦ୍ଧାର ପାଇଲେ । ଏହା ହିଁ ଥିଲା ଭରତଙ୍କ ଦ୍ୱିତୀୟଜନ୍ମ ବୃତ୍ତାନ୍ତ ।

ତୃତୀୟ ଜନ୍ମରେ ଭରତ ଆଙ୍ଗୀରସ ଗୋତ୍ରୀୟ ବ୍ରାହ୍ମଣ ରୂପରେ ଜନ୍ମ ହେଲେ । ଜାତିସ୍ମର ହୋଇଥିବାରୁ ସେ କାହାରି ସହିତ କୌଣସି ସମ୍ବନ୍ଧ ରଖିଲେ ନାହିଁ । ସେ ଜଡ଼ ଭଳି ବ୍ୟବହାର କରୁଥିଲେ । ତେଣୁ ତାଙ୍କୁ ଜଡ଼ଭରତ ବୋଲି ସମସ୍ତେ ଡାକୁଥିଲେ । ସମସ୍ତେ ତାଙ୍କଦ୍ୱାରା ମନଇଚ୍ଛା କାମ କରାଇ ନେଉଥିଲେ । ତାଙ୍କ ଭାଇମାନେ ମଧ୍ୟ ତାଙ୍କୁ ଖେତ ଜଗୁଆଳୀ କରି ରଖିଲେ । ସେଠାରେ ତାଙ୍କୁ ବୃଷଳ ରାଜାଙ୍କ ଭୃତ୍ୟମାନେ ଧରି ଦେବୀଙ୍କ ପାଖରେ ବଳି ଦେବାକୁ ନେଇଗଲେ । ସେଠାରେ ସେ ଯେପରି ଦେବୀଙ୍କ କୃପାରୁ ବଞ୍ଚିଯାଇ ଜଙ୍ଗଲକୁ ପଳାଇଲେ ଓ ସେହିବାଟେ ପାଲିଙ୍କିରେ ବସି ଯାଉଥିବା ରାଜା ରହୁଗଣ ଆସି ପହଞ୍ଚିଲେ, ଏହିକଥା ଏଠାରେ ବର୍ଣ୍ଣିତ ହୋଇଛି । ପାଲିଙ୍କି କାନ୍ଧେଇବା ପାଇଁ ଆଉ ଜଣେ ଅଧିକା ଲୋକ ଦରକାର ପଡୁଥିବାରୁ ରାଜାଙ୍କ ପାଲିଙ୍କିବାହକ ଚାକରମାନେ ତାଙ୍କୁ ଧରିନେଇ ପାଲିଙ୍କି ବୁହାଇଲେ । ରହୁଗଣ ଯେପରି ଅବସ୍ଥାରେ ତାଙ୍କୁ ଭେଟିଲେ ସେ ସମ୍ବନ୍ଧରେ ଏହି ପର୍ଯ୍ୟନ୍ତ କଥା "ଭାଗବତ କଥା"ର ଚତୁର୍ଦ୍ଦଶ ଖଣ୍ଡରେ ବର୍ଣ୍ଣିତ ହୋଇଛି ।

ପଞ୍ଚଦଶ ଖଣ୍ଡରେ ଜଡ଼ଭରତଙ୍କ ଚରିତ୍ରକୁ ଚାଲୁ ରଖାଯାଇ ରାଜା ରହୁଗଣ ଯେପରି ଭରତଙ୍କୁ ବ୍ୟଙ୍ଗ ବଚନ କହିଥିଲେ ଓ ସେ ତାଙ୍କ ପ୍ରଶ୍ନର ଉତ୍ତର ଦେଇଥିଲେ, ତାହାର ଯୁକ୍ତିଯୁକ୍ତ ବର୍ଣ୍ଣନ କରାଯାଇଛି । ଭରତଙ୍କ ବିଜ୍ଞାନଭରା କଥା ତଥା ଅକାଟ୍ୟ ଯୁକ୍ତିରେ ପରାସ୍ତ ହୋଇ ରାଜା ଯେପରି ତାଙ୍କର ଶରଣାପନ୍ନ ହେଲେ, ରାଜାଙ୍କର ପ୍ରଶ୍ନଗୁଡ଼ିକର ଉତ୍ତର ଦେଇ ସମସ୍ତ ସଂଶୟ ଦୂର କଲେ ଓ ଯେପରି ପରମାର୍ଥ ବିଚାର କରି, ବନ୍ଧ-ମୋକ୍ଷର କାରଣ ତାଙ୍କଠାରୁ ଜାଣି ଓ ସତ୍‌ସଙ୍ଗର ପ୍ରଭାବ ସମ୍ବନ୍ଧରେ ଶୁଣି ଭବାଟବୀରେ ଭ୍ରମୁଥିବା ପଥିକର ଉପାଖ୍ୟାନ ଶୁଣି ଯେପରି ରହୁଗଣ ଜୀବନର ଗତିପଥ ପରିବର୍ତ୍ତନ କରିଥିଲେ, ତାହା ଏ ପର୍ଯ୍ୟନ୍ତ ଜଡ଼ଭରତ ଉପାଖ୍ୟାନରେ କୁହାଯାଇଛି । ଏହାପରେ ରାଜର୍ଷି "ଗୟଙ୍କ" ଚରିତ୍ର କୁହାଯାଇଛି । ଶେଷରେ ପ୍ରିୟବ୍ରତ ବଂଶର ଶେଷାଂଶ କୁହାଯାଇ ନରକପୁରର ବର୍ଣ୍ଣନା କରାଯାଇଛି । ମହାରାଜ ପରୀକ୍ଷିତ ପ୍ରଶ୍ନ କରିବାରୁ ଶୁକଦେବ ଏହିସବୁ କଥା ତାଙ୍କୁ କହିଛନ୍ତି ଯେ, କେଉଁ କେଉଁ ପାପ କଲେ କି କି ନରକ ଯନ୍ତ୍ରଣା ଭୋଗ କରିବାକୁ ପଡ଼େ ଓ ଶେଷରେ ଗତି କ'ଣ ହୁଏ । ମହାପାପ କେଉଁଗୁଡ଼ିକୁ କୁହାଯାଏ, ସେହି ମହାପାପ କରିଥିବା ବ୍ୟକ୍ତିଙ୍କୁ କି କି ନାରକୀୟ

ଯାତନା ଭୋଗିବାକୁ ହୁଏ, ଏହିସବୁ ବିଷୟ ବର୍ଣ୍ଣିତ ହୋଇଛି । ସେତେବେଳେ ରାଜା ନରକରୁ କିପରି ଉଦ୍ଧାର ପାଇବାକୁ ହୁଏ ? ପାପଗୁଡ଼ିକର ପ୍ରାୟଶ୍ଚିତ କ'ଣ ? ବୋଲି ପ୍ରଶ୍ନ କଲେ ସେତେବେଳେ ଏଠାରେ କେତେକ ପ୍ରାୟଶ୍ଚିତ ବିଷୟ କୁହାଯାଇ ଶେଷରେ ପ୍ରଭୁପ୍ରେମର ମହିମା ବର୍ଣ୍ଣନା କରାଯାଇ କୁହାଯାଇଛି ଯେ, ଏକମାତ୍ର ଭଗବନ୍ନାମ ସଂକୀର୍ତ୍ତନ ହିଁ ସମସ୍ତ ପାପକୁ ନାଶ କରିବା ନିମିତ୍ତ ଶ୍ରେଷ୍ଠ ପନ୍ଥା । ଏହି ପ୍ରସଙ୍ଗରେ ଅଜାମିଳ ଚରିତ୍ର ବର୍ଣ୍ଣନା କରାଯାଇଛି ।

ପ୍ରଥମରୁ ଅଜାମିଳ କିପରି ସଦାଚାରୀ କର୍ମକାଣ୍ଡୀ ବ୍ରାହ୍ମଣ ଥିଲେ, ସମିଧ ଆଣୁଥିବା ସମୟରେ କିପରି ବନରେ ବେଶ୍ୟା ସହିତ ସମାଗମ ହେଲା ଓ ସେ କିପରି ତା ମୋହରେ ପଡ଼ି ଧର୍ମଭ୍ରଷ୍ଟ ହୋଇଗଲେ ଓ ସେ କିପରି ସେହି କୁଳଟା କାମିନୀକୁ ଆତ୍ମସମର୍ପଣ କରିଦେଲେ, ଏହିସବୁ କଥା ଏଠାରେ ବର୍ଣ୍ଣିତ ହୋଇଛି । ପ୍ରସଙ୍ଗବଶତଃ ପୂର୍ବଜନ୍ମର ସଂସ୍କାର ହିଁ ସମ୍ବନ୍ଧର କାରଣ ହୋଇଥାଏ । ଏହି ପ୍ରସଙ୍ଗକୁ ବୁଝାଇବା ପାଇଁ ଅଜାମିଳଙ୍କର ପୂର୍ବଜନ୍ମର ବୃତ୍ତାନ୍ତ ଏଠାରେ କୁହାଯାଇଛି ।

ମହାତ୍ମାମାନଙ୍କର ଉପଦେଶରେ ଅଜାମିଳ ନିଜର ଅନ୍ତିମ ପୁତ୍ରର ନାମ କିପରି ''ନାରାୟଣ'' ରଖିଲେ ଓ ସେହି ପୁତ୍ରଠାରେ କିପରି ତାଙ୍କର ଆତ୍ୟନ୍ତିକ ଆସକ୍ତି ହୋଇଗଲା, ଏହିକଥା ଏଠାରେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରାଯାଇଛି ।

ଏହି ଅଭ୍ୟାସ କାରଣରୁ, ମୃତ୍ୟୁକାଳ ନିକଟ ହୋଇଯିବାରୁ, ଯମଦୂତଙ୍କୁ ଦେଖି ସେ ଉଚ୍ଚସ୍ୱରରେ ''ନାରାୟଣ'' ନାମକୁ (ପୁତ୍ର ନାମକୁ) ଉଚ୍ଚାରଣ କରିଛନ୍ତି, ଏହି ପର୍ଯ୍ୟନ୍ତ କଥା ''ଭାଗବତ କଥା''ର ପଞ୍ଚଦଶ ଖଣ୍ଡ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଛି ।

ଷୋଡ଼ଶ ଖଣ୍ଡରେ ଅଜାମିଳ ଚରିତକୁ ଚାଲୁ ରଖାଯାଇଛି । ସର୍ବପ୍ରଥମେ ସେହି ପ୍ରସଙ୍ଗରେ କୁହାଯାଇଛି, ଯେତେବେଳେ ନାରାୟଣ ନାମକୁ ଶୁଣି ବିଷ୍ଣୁପାର୍ଷଦମାନେ ଅଜାମିଳଙ୍କ ନିକଟକୁ ଆସିଛନ୍ତି ଓ ଯମଦୂତଗଣ ପ୍ରଥମରୁ ଆସି ତାଙ୍କୁ ନେବାପାଇଁ ଟଣା ଓଟରା କରୁଛନ୍ତି, ସେତେବେଳେ ଉଭୟଙ୍କ ମଧ୍ୟରେ ଶାସ୍ତ୍ରାର୍ଥ ଯୁକ୍ତି ହୋଇଛି । ବିଷ୍ଣୁପାର୍ଷଦଗଣ ଜିତି ଯାଇଛନ୍ତି ଓ ଯମଦୂତଗଣ ହାରିଯାଇ ସେଠାରୁ ଫେରି ଯାଇଛନ୍ତି ।

ଭଗବନ୍ନାମ ମାହାତ୍ମ୍ୟ ପ୍ରସଙ୍ଗରେ ବହୁତ ଆଖ୍ୟାୟିକା ମଧ ଏଠାରେ କୁହାଯାଇଛି । ଏଥିରେ ହରିନାମରେ ପାପର ଆତ୍ୟନ୍ତିକ ନିବୃତ୍ତି ହୁଏ, ହସ ବିନୋଦନରେ ମଧ ଭଗବନ୍ନାମ ଶ୍ରେୟସ୍କର, ''ହରି'' ଉଚ୍ଚାରଣ ମାତ୍ରେ ହିଁ ପାପ ହରଣ ହୋଇଯାଏ । ନାମୋଚ୍ଚାରଣର ଶକ୍ତି ଅମୋଘ । ଏଠାରେ ଏହା ମୁଖ୍ୟ ଆଲୋଚନାର ବିଷୟ ହୋଇଛି । ବିଷ୍ଣୁପାର୍ଷଦ ଓ ଯମଦୂତଙ୍କର ସମ୍ବାଦକୁ ଶୁଣି ଅଜାମିଳଙ୍କର ଭଗବନ୍ନାମରେ ଶ୍ରଦ୍ଧା ଆସିଲା, ତାଙ୍କର ପୂର୍ବକୃତ ପାପ ଉପରେ ସେ ପଶ୍ଚାତାପ କଲେ । ଗୃହତ୍ୟାଗ କରି ସେ ହରିଦ୍ୱାର ଚାଲିଗଲେ ଓ ସେଠାରେ ସେ ଭଗବଦ୍ ପାର୍ଷଦପଦ ପ୍ରାପ୍ତହେଲେ ।

ଏଣେ ଯମଦୂତଗଣ ନିରାଶହୋଇ ରିକ୍ତ ହସ୍ତରେ ଫେରିଯାଇ ଯମ ଆଗରେ ସମସ୍ତ ବୃତ୍ତାନ୍ତ କହିବାରୁ ଯମରାଜ ଏହା ଶୁଣି ଦୂତମାନଙ୍କର ପ୍ରଶ୍ନର ଯଥାର୍ଥ ଉତ୍ତର ଦେଲେ ଓ କହିଲେ—''ଭଗବନ୍ନାମ ନେଇଥିବାରୁ ଅଜାମିଳ ମହାପାପରୁ ଉଦ୍ଧାର ପାଇଲେ ।''

ଏହିପରି ଭଗବନ୍ନାମ ମାହାତ୍ମ୍ୟରେ ପରିପୂର୍ଣ୍ଣ ଅଜାମିଳ ଚରିତ୍ର ଏଠାରେ ସମାପ୍ତ ହୋଇଛି । ଏବେ ପୁନଶ୍ଚ ପ୍ରଚେତାଗଣଙ୍କର ପୁତ୍ର ଦକ୍ଷଙ୍କ କଥା ଆରମ୍ଭ ହୋଇଛି । ପ୍ରଜାବୃଦ୍ଧି ହେତୁ ପ୍ରଜାପତି ଦକ୍ଷ କିପରି ତପ କଲେ ଓ ସେ କିପରି ଭଗବାନଙ୍କୁ ଦର୍ଶନ କଲେ, ଭଗବଦ୍ ଆଜ୍ଞାରେ ଦକ୍ଷ କିପରି ମୈଥୁନୀ ସୃଷ୍ଟିକରି ହର୍ଯ୍ୟଶ୍ୱ ନାମକ ଦଶହଜାର ପୁତ୍ର ଉତ୍ପନ୍ନ କଲେ, ପ୍ରଜାବୃଦ୍ଧି ପାଇଁ ସେମାନେ ସମସ୍ତେ କିପରି ନାରାୟଣ ସରୋବର ନିକଟରେ ତପ କରିବାକୁ

ଚାଲିଗଲେ, ସେଠାରେ ସେମାନେ ବୀଣା ବଜାଇ, ହରିଗୁଣ କୀର୍ତ୍ତନ କରି ଆସି ପହଞ୍ଚିଥିବା ନାରଦଙ୍କୁ କିପରି ଭେଟିଲେ, ଏହିସବୁ କଥା ଏଠାରେ ବର୍ଣ୍ଣିତ ହୋଇଛି । ନାରଦ ଏଠାରେ ଦଶଟି କୂଟ ପ୍ରଶ୍ନ ପଚାରିଥିଲେ । ସରଳ ବାଳକମାନେ ବାବାଜୀଙ୍କ ବଚନରେ ବିମର୍ଶ ହେଲେ । ପରିଣାମ ଏହା ହେଲା ଯେ, ସେମାନେ ସମସ୍ତେ ସେଠାରେ ବାବାଜୀ ହୋଇଗଲେ । ପୁତ୍ର ବିୟୋଗରେ ଦୁଃଖିତ ହୋଇ ଦକ୍ଷ ପୁନଶ୍ଚ ଏକହଜାର ଶବଳାଶ୍ୱଙ୍କୁ ଉତ୍ପନ୍ନ କଲେ । ନାରଦ ତ ଲାଭ ଉଠାଇବାରେ ଧୁରନ୍ଧର, ଲାଭରୁ ଲୋଭ ବଢ଼େ । ସେମାନଙ୍କୁ ମଧ୍ୟ ସେ କୂଟ ବଚନ ଶୁଣାଇ ଚେଲା କରିନେଲେ । ଏଥିରେ ଦକ୍ଷଙ୍କର କ୍ରୋଧ ବଢ଼ିଗଲା । ସେ ନାରଦଙ୍କୁ ସର୍ବଦା ଭ୍ରମଣକାରୀ ହେବାକୁ ଶାପ ଦେଲେ । ବ୍ରହ୍ମା ଏହା ଶୁଣି ତାଙ୍କୁ କହିଲେ—"ତୁମେ ପୁତ୍ର ଉତ୍ପନ୍ନ କରିବା ବନ୍ଦ କର ଓ କେବଳ କନ୍ୟା ଉତ୍ପନ୍ନ କର । ନାରଦ ଯଦି ସେହି କନ୍ୟାମାନଙ୍କୁ ଏପରି ଥଟ୍ଟାପରିହାସ କରି କଥା କହିବେ, ତାହାହେଲେ ନିଜେ ହିଁ ଚେଲା ହୋଇଯିବେ ।" ପିତାମହ ବ୍ରହ୍ମାଙ୍କ କଥା ଦକ୍ଷଙ୍କ ମନକୁ ପାଇଲା । ସେ ଷାଠିଏ କନ୍ୟା ଉତ୍ପନ୍ନ କଲେ । ନାରଦ ଆଖି ଉଠାଇ ମଧ୍ୟ ସେହି ପରମ ସୁନ୍ଦରୀ କନ୍ୟାମାନଙ୍କୁ ଚାହିଁଲେ ନାହିଁ । ସେହି ଷାଠିଏ କନ୍ୟାଙ୍କର ସନ୍ତାନ ସନ୍ତତିଦ୍ୱାରା ଏ ପୃଥିବୀ ପୂର୍ଣ୍ଣ ହୋଇଗଲା । ଦକ୍ଷଙ୍କର କନ୍ୟାମାନଙ୍କର ବଂଶ ବର୍ଣ୍ଣନା ପ୍ରସଙ୍ଗରେ ଗରୁଡ଼ ଓ ଅରୁଣଙ୍କର ଉତ୍ପତ୍ତି କଥା କୁହାଯାଇଛି । ଦକ୍ଷ ଚନ୍ଦ୍ରମାଙ୍କୁ କାହିଁକି ଶାପ ଦେଲେ ଏହି କଥା ମଧ୍ୟ ଏଥିରେ କୁହାଯାଇଛି । ପୁନଶ୍ଚ କଶ୍ୟପଙ୍କ ପତ୍ନୀମାନଙ୍କଠାରୁ କିଏ କିଏ ଜନ୍ମ ହୋଇଥିଲେ ତାହା ଏଥିରେ ବର୍ଣ୍ଣିତ ହୋଇଛି । ଏହି ପ୍ରସଙ୍ଗରେ ଇନ୍ଦ୍ର ଯେପରି ନିଜ ଗୁରୁ ବୃହସ୍ପତିଙ୍କୁ ଅପମାନିତ କରିଥିଲେ, ସେ ଆସି ପହଞ୍ଚିବା ମାତ୍ରେ ଆସନରୁ ଉଠି ନଥିଲେ, ଏହି ପର୍ଯ୍ୟନ୍ତ କଥା ଭାଗବତ କଥାର ଷୋଡ଼ଶ ଖଣ୍ଡରେ ବର୍ଣ୍ଣିତ ହୋଇଛି ।

ଏବେ ସପ୍ତଦଶ ଖଣ୍ଡର କଥା ଶୁଣନ୍ତୁ । ଇନ୍ଦ୍ର ବୃହସ୍ପତିଙ୍କୁ ଯେପରି ଅପମାନିତ କରିଥିଲେ ଓ ତାହାର ପରିଣାମ ଏହି ଖଣ୍ଡରେ କୁହାଯାଇଛି । ଅପମାନିତ ହୋଇ ଦେବଗୁରୁ ଦେବତାମାନଙ୍କୁ ତ୍ୟାଗ କଲେ । ଗୁରୁତ୍ୟକ୍ତ ଦେବତାମାନଙ୍କ ଉପରେ ଅସୁରମାନେ ଆକ୍ରମଣ କଲେ । ଦେବଗଣ ପରାଜିତ ହେଲେ ଓ ଦୁଃଖିତ ହୋଇ ବ୍ରହ୍ମାଙ୍କ ନିକଟରେ ଶରଣ ପଶିଲେ । ବ୍ରହ୍ମା ସେମାନଙ୍କୁ ଉପଦେଶ ଦେଲେ ଯେ, ଗୁରୁଦ୍ରୋହୀଙ୍କ କଲ୍ୟାଣ ଗୁରୁକୃପା ବିନା ହୋଇ ନ ପାରେ । ତୁମ୍ଭେମାନେ ଗୋଟିଏ କାମ କର, ବିଶ୍ୱରୂପଙ୍କୁ ନିଜର ପୁରୋହିତ କରିନିଅ । ପିତାମହଙ୍କ ଆଜ୍ଞାରେ ଦେବଗଣ ବିଶ୍ୱରୂପଙ୍କ ନିକଟକୁ ଗଲେ । ବିଶ୍ୱରୂପ ସବୁକଥା ଶୁଣି ପୌରହିତ୍ୟ କାର୍ଯ୍ୟପାଇଁ ନିଜର ଅନିଚ୍ଛା ପ୍ରକାଶ କଲେ । ଦେବତାମାନେ ବହୁତ ଅନୁରୋଧ କରିବାରୁ ସେ ପୁରୋହିତ ହୋଇଗଲେ । ଦେବେନ୍ଦ୍ର ଯେତେବେଳେ ଦେଖିଲେ ଯେ, ମାତୃପକ୍ଷ ସମ୍ବନ୍ଧରୁ ବିଶ୍ୱରୂପ ଯଜ୍ଞରେ ଲୁଚାଇ ଲୁଚାଇ ଅସୁରମାନଙ୍କୁ ଯଜ୍ଞର ବଳି ପ୍ରଦାନ ବି କରୁଛନ୍ତି, ସେତେବେଳେ ଇନ୍ଦ୍ର ତାଙ୍କୁ ହତ୍ୟା କଲେ । ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିଲା । ସ୍ତ୍ରୀ, ଜଳ, ଭୂମି ତଥା ବୃକ୍ଷ ଦେବେନ୍ଦ୍ରଙ୍କ ହତ୍ୟାଦୋଷ ବାଣ୍ଟିନେଲେ । ଇନ୍ଦ୍ରଙ୍କର ହତ୍ୟାଦୋଷ କଟିଗଲା, କିନ୍ତୁ ବିଶ୍ୱରୂପଙ୍କର ପିତା ତ୍ୱଷ୍ଟା ମୁନି ପୁତ୍ରବଧ ଯୋଗୁ ଇନ୍ଦ୍ର ଉପରେ କୁପିତ ହୋଇ ଯଜ୍ଞକୁଣ୍ଡରୁ ବୃତ୍ରାସୁରର ଉତ୍ପତ୍ତି କଲେ । ବୃତ୍ର ଯୁଦ୍ଧରେ ଦେବତାମାନଙ୍କୁ ପରାଜିତ କରିଦେଲା । ପରାଜିତ ଦେବଗଣ ଭଗବାନଙ୍କୁ ସ୍ତୁତି କଲେ । ଭଗବାନ୍ ଦେବତାମାନଙ୍କୁ କହିଲେ ଯେ, ତୁମ୍ଭେମାନେ ଦଧିଚୀ ମୁନିଙ୍କ ଅସ୍ଥିରେ ଅସ୍ତ୍ର ତିଆରି କରି ଅସୁରକୁ ପରାଜିତ କର । ଦେବତାମାନେ ଏହା ଅସମ୍ଭବ ମନେ କରିବାରୁ ଭଗବାନ୍ ଦଧିଚୀଙ୍କର ମାହାତ୍ମ୍ୟ ତଥା ଭଗବନ୍ନାମର ମାହାତ୍ମ୍ୟ ସେମାନଙ୍କୁ ବୁଝାଇଲେ । ଭଗବାନଙ୍କ ଆଜ୍ଞାରେ ଦେବତାମାନେ ଦଧିଚୀ ମୁନିଙ୍କ ଶରଣ ନେବାକୁ

ଗଲେ । ତାଙ୍କୁ ସମସ୍ତ କଥା କହି ଅସ୍ଥି ମାଗିଲେ । ଦଧିଚୀ ମୁନି ପରୀକ୍ଷା ନେବାପାଇଁ ଏହା ଅସମ୍ଭବ ବୋଲି କହିଲେ । ଏହା ଶୁଣି ଦେବତାମାନେ ପରୋପକାରର ମହିମା ଗାନ କଲେ । ଏଥିରେ ପ୍ରସନ୍ନ ହୋଇ ମୁନି ଅସ୍ଥି ଦେବାକୁ ରାଜି ହେଲେ ଓ ନିଜ ଶରୀର ତ୍ୟାଗ କଲେ । ତାଙ୍କ ଅସ୍ଥିରେ ଇନ୍ଦ୍ର ବଜ୍ର ତିଆରି କରି ଦେବତାମାନଙ୍କୁ ସଙ୍ଗରେ ନେଇ ଅସୁର ଉପରେ ଆକ୍ରମଣ କଲେ । ବୃତ୍ରାସୁର ବୀରତ୍ୱ ସହକାରେ ଦେବତାମାନଙ୍କ ସହିତ ଲଢ଼ିଲା ଓ ସେମାନଙ୍କ ଅଧର୍ମ ଯୁଦ୍ଧ ଯୋଗୁ ସେମାନଙ୍କୁ ଲଜ୍ଜିତ କଲା । ଏହାପରେ ବୃତ୍ରାସୁର ଓ ଇନ୍ଦ୍ରଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଯୁଦ୍ଧ ସମୟରେ ବୃତ୍ରାସୁରକୁ ଭଗବାନ୍ ଦର୍ଶନ ଦେଲେ । ସେ କରୁଣ ସ୍ୱରରେ ଭଗବାନଙ୍କର ଦିବ୍ୟସ୍ତୁତି କଲା ଓ ନିଜର ଅନ୍ତିମ କାମନା ଜଣାଇଲା । ପୁନଶ୍ଚ ଅସ୍ତ୍ର ଶସ୍ତ୍ର ଧରି ଇନ୍ଦ୍ରଙ୍କ ସହିତ ଯୁଦ୍ଧ କଲା । ଇନ୍ଦ୍ର ପରାଜିତ ଭଳି ହୋଇଗଲେ । ସେତେବେଳେ ବୃତ୍ରାସୁର ତାଙ୍କୁ ଉପଦେଶ ଦେଲା, ଇନ୍ଦ୍ର ବୃତ୍ରାସୁରର ବଚନକୁ ଅଭିନନ୍ଦିତ କଲେ ଓ ପୁନଶ୍ଚ ଲଢ଼ିଲେ । ବୃତ୍ରାସୁର ଐରାବତ ହସ୍ତୀ ସହିତ ଇନ୍ଦ୍ରଙ୍କୁ ଗିଳି ପକାଇଲା । ଦେବେନ୍ଦ୍ର ବୃତ୍ରାସୁରର ପେଟ ଭିତରକୁ ଚାଲିଗଲେ । ଏହି ପର୍ଯ୍ୟନ୍ତ କଥା ଭାଗବତ କଥାର ସପ୍ତଦଶ ଖଣ୍ଡରେ ରହିଛି ।

ଅଷ୍ଟାଦଶ ଖଣ୍ଡରେ ସେହି ବୃତ୍ର ଚରିତ୍ରକୁ ଚାଲୁରଖି ଇନ୍ଦ୍ର ଓ ବୃତ୍ରାସୁରଙ୍କ ଯୁଦ୍ଧ ବିଷୟ ବର୍ଣ୍ଣନା କରାଯାଇଛି । ବୃତ୍ରାସୁରର ପେଟକୁ ଚିରି ଇନ୍ଦ୍ର ବାହାରି ଆସିଲେ ଓ ବଜ୍ରଦ୍ୱାରା ବୃତ୍ରକୁ ବଧ କଲେ । ବୃତ୍ରାସୁର ବ୍ରାହ୍ମଣ ହୋଇଥିବାରୁ ଇନ୍ଦ୍ରଙ୍କୁ ପୁନଶ୍ଚ ବ୍ରହ୍ମହତ୍ୟା ଦୋଷ ଲାଗିଲା । ଏହି ଭୟରେ ସେ ମାନସ-ସରୋବରରେ ଯାଇ ଲୁଚିଲେ । ଇନ୍ଦ୍ର ନ ରହିବାରୁ ରାଜା ନହୁଷଙ୍କୁ ଇନ୍ଦ୍ରଙ୍କ ସ୍ଥାନରେ ଅବସ୍ଥାପିତ କରାଗଲା । ଇନ୍ଦ୍ରାଣୀଙ୍କ ପ୍ରତି ଆସକ୍ତ ହେବାରୁ ତାଙ୍କର ସ୍ୱର୍ଗରୁ ପତନ ହେଲା । ତେଣୁ ଋଷିମାନେ ଅଶ୍ୱମେଧ ଯଜ୍ଞ କରାଇ ଇନ୍ଦ୍ରଙ୍କୁ ପାପରହିତ କରାଇଲେ । ନିଷ୍ପାପ ହେବାରୁ ଇନ୍ଦ୍ର ପୁନଶ୍ଚ ସ୍ୱର୍ଗର ରାଜା ହେଲେ । ମହାରାଜ ପରୀକ୍ଷିତ ପଚାରିବାରୁ ଶୁକଦେବ ବୃତ୍ରାସୁରର ପୂର୍ବଜନ୍ମ ବୃତ୍ତାନ୍ତ ଶୁଣାଇଲେ । ପୁତ୍ରହୀନ ରାଜା ଚିତ୍ରକେତୁଙ୍କ ମହଲରେ ଦିନେ ଅଙ୍ଗିରା ମୁନି ପଦାର୍ପଣ କରିଥିଲେ । ରାଜା ମୁନିଙ୍କୁ ସନ୍ତାନ ପାର୍ଥନା କଲେ । ମୁନି ଯଜ୍ଞାବଶେଷ ଚରୁ ଦେଇ ପୁତ୍ର ହେବାକୁ ବର ଦେଲେ । ମୁନିଙ୍କ କୃପାରୁ ବଡ଼ରାଣୀଙ୍କର ଏକ ପୁତ୍ର ହେଲା । ବଡ଼ରାଣୀଙ୍କ ଆଦର ବଢ଼ିବାରୁ ତାଙ୍କର ଅନ୍ୟ ସଉତୁଣୀମାନେ କ୍ଷୋଭ କଲେ । ସେମାନେ ସମସ୍ତେ ମିଳି ରାଜକୁମାରଙ୍କୁ ବିଷ ଦେଇଦେଲେ । କୁମାର ମରିଗଲା । ମୃତପୁତ୍ର ପାଇଁ ପିତାମାତା ଅତ୍ୟନ୍ତ ବିଳାପ କଲେ । ଏହି ଅବସ୍ଥାରେ ସେଠାରେ ଅଙ୍ଗିରା ଓ ନାରଦ ମୁନି ଆସି ପହଞ୍ଚିଲେ । ମହାମୁନି ଅଙ୍ଗିରା ଶୋକସନ୍ତପ୍ତ ରାଜାରାଣୀଙ୍କୁ ଜ୍ଞାନୋପଦେଶ ଦେଲେ । ରାଜାଙ୍କର ଶୋକ ଦୂର ହେବାରୁ ନାରଦ ଶିକ୍ଷାଦୀକ୍ଷା ଦେଲେ । ମୃତପୁତ୍ରର ଜୀବାତ୍ମାକୁ ଡାକି ତାକୁ ମଧ୍ୟ ଶିକ୍ଷା ଦେଲେ । ଏଣେ ବିଷ ଦେଇଥିବା ରାଣୀମାନଙ୍କର ମଧ୍ୟ ସେମାନଙ୍କ ଦୁଷ୍କର୍ମ ପାଇଁ ପଶ୍ଚାତାପ ହେଲା । ସେମାନେ ଯମୁନା ତଟକୁ ଯାଇ ପାପର ପ୍ରାୟଶ୍ଚିତ କଲେ ।

ରାଜା ଚିତ୍ରକେତୁ ନାରଦ ପ୍ରଦତ୍ତ ମନ୍ତ୍ର ପ୍ରଭାବରୁ ବିଦ୍ୟାଧରମାନଙ୍କର ରାଜା ହୋଇଗଲେ । ସଙ୍କର୍ଷଣ ଭଗବାନ୍ ତାଙ୍କୁ ସଦୁପଦେଶ ଦେଲେ । ବିଦ୍ୟାଧରଙ୍କର ରାଜା ହୋଇ ସେ ବିମାନରେ ଇଚ୍ଛାନୁସାରେ ସର୍ବତ୍ର ଭ୍ରମଣ କରିବାକୁ ଲାଗିଲେ । ଦିନେ ଶିବଙ୍କ ଅଙ୍କରେ ବିରାଜମାନ କରିଥିବା ଶିବାଙ୍କୁ ଦେଖି ସେ ଶିବଙ୍କୁ ହସି ଉଡ଼ାଇ ଦେଲେ । ଏଥିରେ ଶିବ ରାଗିଯାଇ ତାଙ୍କୁ ଆସୁରୀ ଯୋନିରେ ଜନ୍ମ ହେବାକୁ ଶାପ ଦେଲେ । ଏଥିରେ ରାଜା ସୁଖୀ ହେଲେ ନାହିଁ କି ଦୁଃଖୀ ହେଲେ ନାହିଁ । ଏହାଦେଖି ଶିବଭକ୍ତ ରାଜାଙ୍କର ପ୍ରଶଂସା କଲେ । ସେହି ରାଜା ଚିତ୍ରକେତୁ ତ୍ୱଷ୍ଟା ମୁନିଙ୍କ ଯଜ୍ଞକୁଣ୍ଡରୁ ବୃତ୍ରାସୁର ହୋଇ ଉତ୍ପନ୍ନ ହେଲେ । ଏହି ପର୍ଯ୍ୟନ୍ତ ବୃତ୍ରାସୁରର ଚରିତ୍ର କୁହାଯାଇଛି ।

ବୃତ୍ର ଚରିତ୍ରକୁ ସମାପ୍ତ କରି ଅଦିତିଙ୍କର ଶେଷବଂଶର ବର୍ଣ୍ଣନା କରାଯାଇଛି । ଏହି ପ୍ରସଙ୍ଗରେ ମହିଷାସୁର କଥା ମଧ୍ୟ କୁହାଯାଇଛି । ପୁନଶ୍ଚ ଦିତିଙ୍କ ଉଦରରୁ ଜନ୍ମହୋଇ ମଧ୍ୟ ଅଣଚାଶ ପବନଙ୍କର ଦୈତ୍ୟ ସଂଜ୍ଞା ନ ହୋଇ ସେମାନେ କିପରି ଦେବତାମାନଙ୍କ ମଧ୍ୟରେ ଗଣାହେଲେ, ଏହି କଥା କୁହାଯାଇଛି । ମରୁତଙ୍କ ଉତ୍ପତ୍ତି ସହିତ ହିଁ ''ଭାଗବତ କଥା''ର ଅଷ୍ଟାଦଶ ଖଣ୍ଡ ସମାପ୍ତ ହୋଇଛି ।

ଊନବିଂଶ ଖଣ୍ଡରେ ମରୁତଙ୍କ ଚରିତକୁ କ୍ରମ ରଖାଯାଇ ଇନ୍ଦ୍ର ଯେପରି ଛଦ୍ମବେଶରେ ନିଜର ମାଉସୀ ଦିତିଙ୍କର ସେବା କରିଥିଲେ ଓ ଅବସର ଦେଖି ତାଙ୍କ ଉଦରରେ ପ୍ରବେଶ କରି ତାଙ୍କ ଗର୍ଭକୁ ଅଣଚାଶ ଖଣ୍ଡ କରିଦେଇଥିଲେ ଏହିକଥା କୁହାଯାଇ ମରୁତ ଚରିତ ସମାପ୍ତ କରାଯାଉଛି । ଏହାପରେ ପ୍ରହ୍ଲାଦ ଚରିତ ଆରମ୍ଭ ହୋଇଛି ।

ନାରଦ ଓ ଯୁଧିଷ୍ଠିରଙ୍କ ସମ୍ବାଦରୂପେ ପ୍ରହ୍ଲାଦ ଚରିତ କୁହାଯାଇଛି । ମହାରାଜ ପରୀକ୍ଷିତ ଶ୍ରୀଶୁକଦେବଙ୍କୁ ପଚାରିଛନ୍ତି, 'ଭଗବାନଙ୍କ ବ୍ୟବହାରରେ ବିଷମତା କାହିଁକି ଦେଖାଯାଏ ?' ଏହାର ଉତ୍ତରରେ ଶୁକଦେବ କହିଛନ୍ତି, ଭଗବାନ୍ ତ ନିର୍ଗୁଣ, ନିର୍ଲେପ । ଏହି ପ୍ରସଙ୍ଗରେ ସେ ଧର୍ମରାଜ ଯୁଧିଷ୍ଠିର ଓ ନାରଦଙ୍କ ସମ୍ବାଦ ଶୁଣାଇଛନ୍ତି । ଜୟ-ବିଜୟ କିପରି ଶାପଗ୍ରସ୍ତ ହେଲେ, ସେ ଦୁହେଁ କିପରି ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ହେଲେ, ଭଗବାନ୍ ବରାହ ଅବତାରରେ କିପରି ହିରଣ୍ୟାକ୍ଷକୁ ମାରିଲେ । ଏଥିରେ ହିରଣ୍ୟକଶିପୁ କିପରି ଭଗବାନଙ୍କ ଉପରେ କୁପିତ ହେଲା, ସେ ସର୍ବପ୍ରଥମେ ନିଜର ସମସ୍ତ ସମ୍ବନ୍ଧୀୟଙ୍କୁ କିପରି ସାନ୍ତ୍ୱନା ଦେଲା, ଏହି ପ୍ରସଙ୍ଗରେ ସେ ବାଳକ ହୋଇ ଯମରାଜ ଓ ପ୍ରେତବନ୍ଧୁମାନଙ୍କର ସମ୍ବାଦ ଶୁଣାଇଛନ୍ତି । ଶେଷରେ ନିଜର ଉପଦେଶର ସାର ବତାଇ ସେ କହିଛନ୍ତି, ଜଗଦୀଶ ହେଉଛନ୍ତି ସମସ୍ତଙ୍କର ରକ୍ଷକ, ଦୈବରକ୍ଷିତ ହିଁ ଯଥାର୍ଥ ରକ୍ଷିତ । ଆତ୍ମା ଶରୀରଠାରୁ ଭିନ୍ନ । ଦେହାତ୍ମବୋଧ ଅଜ୍ଞାନତା କାରଣରୁ ହୋଇଥାଏ । ଶୁକଦେବ ଏହିପରି ସମସ୍ତଙ୍କୁ ବୁଝାଇଛନ୍ତି । ଏହାପରେ ହିରଣ୍ୟକଶିପୁ ତପସ୍ୟା କରିବାକୁ ବନକୁ ଚାଲିଯାଇଛି । ତାହାର କଠିନ ତପସ୍ୟାକୁ ଦେଖି ବ୍ରହ୍ମା ତାହାର ଇଚ୍ଛା ଅନୁରୂପ ବର ଦେଇଛନ୍ତି । ବର ପାଇ ତାହାର ଐଶ୍ୱର୍ଯ୍ୟ ବୃଦ୍ଧି ପାଇଛି । ସେହି ଦୁଷ୍ଟ ଦେବତାମାନଙ୍କୁ ଅନେକ ଦୁଃଖ ଦେଇଛି । ଦୁଃଖିତ ଦେବଗଣ ଦୀନବନ୍ଧୁଙ୍କ ଦୟା ପ୍ରାର୍ଥୀ ହୋଇଛନ୍ତି । ଭକ୍ତବତ୍ସଳ ଭଗବାନ୍ କହିଛନ୍ତି, ପ୍ରହ୍ଲାଦଙ୍କ ଜନ୍ମକୁ ତୁମ୍ଭେମାନେ ଅପେକ୍ଷା କର । ସେତେବେଳେ ମୁଁ ତୁମ୍ଭମାନଙ୍କର ସମସ୍ତ ଦୁଃଖ ଦୂର କରିବି ।

ପ୍ରହ୍ଲାଦ ଜନ୍ମ ହୋଇ ଭଗବଦ୍ ଭକ୍ତ ହୋଇଛନ୍ତି । ଭକ୍ତର ସମସ୍ତ ଲକ୍ଷଣ ତାଙ୍କଠାରେ ଦେଖାଯାଇଛି । ଅସୁର ପିତା ଓ ଭକ୍ତପୁତ୍ରଙ୍କ ମଧ୍ୟରେ ପ୍ରଥମରୁ ମତଭେଦ ଦେଖାଯାଇଛି । ପ୍ରହ୍ଲାଦଙ୍କୁ ପାଠଶାଳାକୁ ପଠାଇ ଦିଆଯାଇଛି, ସେଠାରେ ସେ ହରିନାମ ପାଠ କରିଛନ୍ତି । ଏହି ପର୍ଯ୍ୟନ୍ତ କଥା ''ଭାଗବତ କଥା''ର ଊନବିଂଶ ଖଣ୍ଡରେ ରହିଛି ।

ବିଂଶ ଖଣ୍ଡରେ ପ୍ରହ୍ଲାଦ ଚରିତକୁ କ୍ରମ ରଖାଯାଇ ଯେପରି ପ୍ରହ୍ଲାଦଙ୍କୁ ହିରଣ୍ୟକଶିପୁ ପ୍ରଶ୍ନମାନ ପଚାରିଛି ତାହା ସେଥିରେ ବର୍ଣ୍ଣିତ ହୋଇଛି । ପିତା ଯେତେବେଳେ ଗୁରୁପୁତ୍ର ଉପରେ ଦୋଷ ଦେଇଛନ୍ତି, ସେତେବେଳେ ପ୍ରହ୍ଲାଦ ତାଙ୍କୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିଛନ୍ତି । ଏଥିରେ ପ୍ରହ୍ଲାଦଙ୍କୁ ପିତା ପ୍ରହାର କରିଛନ୍ତି । ତାଙ୍କୁ ମାରିଦେବା ପାଇଁ ନାନା ପ୍ରକାର ଚେଷ୍ଟା କରାଯାଇଛି, କିନ୍ତୁ ସେହିସବୁ ଯାତନାରେ ପ୍ରହ୍ଲାଦ ଭୟଭୀତ ହୋଇ ନାହାନ୍ତି । ଭଗବାନଙ୍କ ଭକ୍ତ କାହାକୁ ଅବା କାହିଁକି ଭୟ କରିବେ ? ଯେତେବେଳେ ପ୍ରହ୍ଲାଦ ପାଇଁ ହିରଣ୍ୟକଶିପୁ ଅଧିକ ଚିନ୍ତାଗ୍ରସ୍ତ ହୋଇଛି, ସେତେବେଳେ ଗୁରୁପୁତ୍ର ତାଙ୍କୁ ଚିନ୍ତା ନ କରିବାକୁ କହି କହିଛନ୍ତି— ''ବାଳକର ମତି ପରିବର୍ତ୍ତନ ହେବ, ଧୈର୍ଯ୍ୟ ଧରନ୍ତୁ ।''

ଏହାଶୁଣି ଦୈତ୍ୟରାଜ ପୁନଃ ପୁତ୍ରକୁ ପାଠଶାଳା ପଠାଇଛି । ସେଠାରେ ପ୍ରହ୍ଲାଦ ନିଜେ ଶିକ୍ଷକଙ୍କ ପରି ସହପାଠୀମାନଙ୍କୁ ଭଗବତ ପ୍ରେମ ସମ୍ବନ୍ଧୀୟ ପାଠ ପଢ଼ାଇଛନ୍ତି । ଦୈତ୍ୟପୁତ୍ରମାନଙ୍କୁ ତାହା ପ୍ରାଞ୍ଜଳ ଭାବରେ ବୁଝାଇଛନ୍ତି । ସେ ସେମାନଙ୍କୁ କହିଛନ୍ତି— "ଦେଖ, ଗୃହସ୍ଥାଶ୍ରମରେ ବହୁତ ଅବ୍ୟବସ୍ଥା ରହିଛି, ଗୃହସ୍ଥୀମାନଙ୍କର ବୈରାଗ୍ୟ ଲାଭ ହେବା ଅତି କଠିନ । ମନୁଷ୍ୟ ଜୀବନର ପ୍ରଧାନ କର୍ତ୍ତବ୍ୟ ହେଉଛି, ଭଗବଦ୍ ଭକ୍ତି ଲାଭ । ମୁଁ ଏହି ଜ୍ଞାନ ନାରଦଙ୍କଠାରୁ ଲାଭ କରିଛି ।" ଏହା ଶୁଣି ଦୈତ୍ୟପୁତ୍ରମାନେ ପଚାରିଲେ ଯେ, ନାରଦ ତୁମ ସହିତ କେବେ କେଉଁଠି ଦେଖା ହୋଇଥିଲେ ? ଏହା ଶୁଣି ପ୍ରହ୍ଲାଦ କହିଛନ୍ତି—"ମୋର ପିତା ଯେତେବେଳେ ତପ କରୁଥିଲେ, ସେତେବେଳେ ଇନ୍ଦ୍ର ମୋର ମାତାଙ୍କୁ ଧରି ନେଇଗଲେ, ହଠାତ୍ ନାରଦଙ୍କୁ ସେ ବାଟରେ ଭେଟିଲେ । ନାରଦଙ୍କ କଥା ମାନି ଇନ୍ଦ୍ର ମାତାଙ୍କୁ ଛାଡ଼ିଦେଲେ । ନାରଦ ନିଜ ଆଶ୍ରମକୁ ନେଇ ମାତାଙ୍କୁ ରଖିଲେ । ସେଠାରେ ସେ ମୋତେ ଲକ୍ଷ୍ୟକରି ଉପଦେଶ ଦେଉଥିଲେ । ମୁଁ ମାତୃଗର୍ଭରେ ରହି ସବୁକଥା ଶୁଣିଥିଲି । ମାତା ତ ସେ ସବୁକଥା ଭୁଲିଗଲେ, କିନ୍ତୁ ନାରଦଙ୍କ କୃପାରୁ ସେ ସମସ୍ତ ମୋର ମନେଅଛି । ମାତୃଗର୍ଭରେ ହିଁ ନାରଦଙ୍କଠାରୁ ମୁଁ ଭାଗବତ ଧର୍ମ, ଆତ୍ମାନୁଭବ ଉପାୟ, ଗୁରୁ ଶୁଶ୍ରୁଷାଦି ସାଧନ, ଯୋଗାଦିର ଉପାୟ, ପ୍ରଭୁ ପାଦପଦ୍ମରେ ରତି, ଭଗବଦ୍ ଭକ୍ତଙ୍କର ପ୍ରେମଦଶା, ଭଗବଦ୍ ପ୍ରାପ୍ତିର ସୁଲଭତା ଓ ଭଗବଦ୍ ପ୍ରାପ୍ତିରେ ସମସ୍ତଙ୍କର ଅଧିକାର ଆଦି ବିଷୟ ଶୁଣି ବୁଝିପାରିଥିଲି ।

ପ୍ରହ୍ଲାଦ ଏହିପ୍ରକାର ଉପଦେଶ ଦେଉଥିବା ସମୟରେ ଗୁରୁପୁତ୍ର ସେଠାରେ ଆସି ପହଞ୍ଚିଲେ । ସେ ସମସ୍ତକଥା ଯାଇ ହିରଣ୍ୟକଶିପୁ ଆଗରେ କହିଲେ । ଅନ୍ୟ ଦୈତ୍ୟପୁତ୍ରମାନଙ୍କୁ ବିଗାଡୁଥିବାରୁ ହିରଣ୍ୟକଶିପୁ ପ୍ରହ୍ଲାଦ ଉପରେ ରାଗିଯାଇ ହସ୍ତରେ ଖଡ୍ଗ ଧରି ପ୍ରହ୍ଲାଦକୁ ପଚାରିଲା—"ତୋ ହରି କେଉଁଠି ଅଛି ମୋତେ କହ ?" ପ୍ରହ୍ଲାଦ କହିଲେ— "ହରି ସବୁଠାରେ ଅଛନ୍ତି ।" ହିରଣ୍ୟକଶିପୁ ପଚାରିଲା—"ତେବେ ହରି କ'ଣ ସମ୍ମୁଖସ୍ଥ ସ୍ତମ୍ଭରେ ଅଛନ୍ତି ?" ପ୍ରହ୍ଲାଦ କହିଲେ—"ହଁ ।" ସେ ହଁ କହିବା ମାତ୍ରେ କ୍ରୋଧରେ ହିରଣ୍ୟକଶିପୁ ସେହି ସ୍ତମ୍ଭକୁ ଖଣ୍ଡାରେ ଚୋଟେ ପକାଇଲା । ସଙ୍ଗେ ସଙ୍ଗେ ସେହି ସ୍ତମ୍ଭରୁ ଭଗବାନ୍ ନୃସିଂହ ଆବିର୍ଭୂତ ହୋଇ ହିରଣ୍ୟକଶିପକୁ ମାରିଦେଲେ । ଦେବତାମାନେ ଭଗବାନଙ୍କର ଜୟ ଜୟକାର କଲେ । ଭଗବାନ୍ ନୃସିଂହ ପ୍ରହ୍ଲାଦ ଉପରେ ପ୍ରୀତ ହୋଇ ତାଙ୍କୁ ସିଂହାସନରେ ବସାଇଲେ । ଏହି ପର୍ଯ୍ୟନ୍ତ କଥା "ଭାଗବତ କଥା"ର ବିଂଶ ଖଣ୍ଡରେ କୁହାଯାଇଛି ।

ଏକବିଂଶ ଖଣ୍ଡରେ ମଧ୍ୟ ପ୍ରହ୍ଲାଦ ଚରିତକୁ କ୍ରମ ରଖାଯାଇ ହିରଣ୍ୟକଶିପୁ ମରିଯିବା ପରେ ଯେପରି ଦେବତାମାନେ ଆସି ଭଗବାନଙ୍କର ସ୍ତୁତି କରିଛନ୍ତି, ତାହା ବର୍ଣ୍ଣନା କରାଯାଇଛି । ପୁନଶ୍ଚ ଭଗବାନ୍ ଯେପରି ନିଜର ଭକ୍ତ ପ୍ରହ୍ଲାଦ ପ୍ରତି ପ୍ରେମ ପ୍ରଦର୍ଶନ କରିଛନ୍ତି ତାହା ଏଠାରେ ବର୍ଣ୍ଣନା କରାଯାଇଛି । ଏହାପରେ ପ୍ରହ୍ଲାଦ ଅତି ମାର୍ମିକ ଭାବରେ ଭଗବାନଙ୍କର ଦିବ୍ୟସ୍ତୁତି କରିଛନ୍ତି, ତାହାର ପ୍ରତ୍ୟେକ ଅକ୍ଷର ପ୍ରତ୍ୟେକେ ପାଠ କରିବା ଉଚିତ୍ (ସ୍ତୋତ୍ର ରତ୍ନାବଳୀ ଆଦି ଗ୍ରନ୍ଥରୁ ପ୍ରହ୍ଲାଦ ସ୍ତୁତି ପାଠ କରିବା ଉଚିତ୍ ।)

ପ୍ରହ୍ଲାଦଙ୍କର ସ୍ତୁତି ଶୁଣି ଭଗବାନ ନୃସିଂହ ତାଙ୍କୁ ବର ମାଗିବାକୁ କହିଛନ୍ତି । ପ୍ରହ୍ଲାଦ ବଡ଼ ବିଚିତ୍ର ବର ମାଗିଛନ୍ତି ଯେ, ମୋର ମନରେ କିଛି ମାଗିବାର ବାସନା ନାହିଁ ଓ ତାହା ଯେପରି ନ ରହେ ଓ ଦ୍ୱେଷୀ ପିତାଙ୍କର ସଦ୍‌ଗତି ହେଉ । ଭଗବାନ୍ ନିଜ ଭକ୍ତର ଇଚ୍ଛା ଅନୁସାରେ ବରଦାନ କରି ତିରୋହିତ ହୋଇଗଲେ । ଏହାପରେ ପ୍ରହ୍ଲାଦଙ୍କର ତିନି ଜନ୍ମର ବୃତ୍ତାନ୍ତ କୁହାଯାଇଛି । ଏହିପରି ନୃସିଂହ ଚରିତ ସମାପ୍ତ ହୋଇଛି ।

ଏହାପରେ ତ୍ରିପୁର ବୃତ୍ତାନ୍ତ ତଥା ଶିବଙ୍କଦ୍ୱାରା ତ୍ରିପୁରର ଦାହ କଥା କୁହାଯାଇଛି । ଧର୍ମରାଜ ଓ ନାରଦ ମୁନିଙ୍କ ସମ୍ବନ୍ଧରେ ସମାପ୍ତି ପର୍ଯ୍ୟନ୍ତ ତୃତୀୟାହ କଥା ପାଠ କରାଯାଏ ଓ ତୃତୀୟ ଦିବସର ବିଶ୍ରାମ ହୁଏ ।

ସୂତ କହିଲେ—''ମୁନିଗଣ ! ମୁଁ ଅତ୍ୟନ୍ତ ସଂକ୍ଷେପରେ ଏଠାରେ ତୃତୀୟାହର ସୂଚୀ ସମାପ୍ତ କଲି । ଏବେ ଆପଣମାନେ ମନଯୋଗ ସହକାରେ ଚତୁର୍ଥାହର ସୂଚୀ କୃପାକରି ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ପୂର୍ବ ବୃତ୍ରକୋ ଚରିତ ଚରିତ ମରୁତନିକୋ ଭାଖ୍ୟୌ ।
ପୁନି ପ୍ରହ୍ଲାଦ ଚରିତ୍ର ପିତା ଜ୍ୟୋଂ ଗୁରୁଗୃହ ରଖ୍ୟୌ ।।
ଦୀୟେ ଜ୍ୟୋଂ ବହୁ କଷ୍ଟ କରେ୍ୟା କୀର୍ତ୍ତନ ଜ୍ୟୋଂ ହରିକୋ ।
ପ୍ରକଟେ ଶ୍ରୀନରସିଂହ ଉଦର ଫାରେ୍ୟା ଜ୍ୟୋଂ ଅରିକୋ ।।
ନାରଦ ମୁନି ତୈଂ ଧରମସୁତ, ତୈଂ ଜୈସେ ୟହ ସବ କହ୍ୟୌ ।
ଧରମରାଜ ସମ୍ବାଦତକ, ତୃତୀୟ-ଆହ ପୂରନ ଭୟୌ ।।



# ଚତୁର୍ଥାହର ବିଷୟ ସୂଚୀ

**ମନ୍ୱନ୍ତରାନୁକଥନଂ ଗଜେନ୍ଦ୍ରସ୍ୟ ବିମୋକ୍ଷଣମ୍ ।**
**ମନ୍ୱନ୍ତରାବତାରଶ୍ଚ ବିଷ୍ଣୋର୍ହୟଶିରାଦୟଃ ।।** ☆

(ଶ୍ରୀ ଭା: ୧୨ସ୍କ: ୧୨ଅ: ୧୯ଶ୍ଳୋକ)

ଷଟ୍‌ପଦୀ

ଅବ ଚତୁର୍ଥମେଂ ପ୍ରଥମ ଗ୍ରାହ ଗଜ ଚରିତ ମନୋହର ।
ସୁର ବିନତୀ ପୁନି ମଥନ ପୟୋନିଧି ପାନ ଗରଲହର ।।
ଧନ୍ୱନ୍ତରି ଅବତାର ମୋହିନୀ ଚରିତ ଉଁଗାରୌ ।
ଦେବାସୁର ସଂଗ୍ରାମ ଭୟୋ ଦୈତ୍ୟନି ବଲ ହାରୌ ।।
ମିଲନ ମୋହିନୀ ଶମ୍ଭୁକୋ, ଜରି ବିଜୟ ବଲି ନେ ଯଥା ।
ଯ୍ୟୋଂ ବଲି ଛଲିୟେ ଜୀ କହୀ, ଛଲିୟା ବଟୁ ବାମନ କଥା ।।

---

☆ ଚତୁର୍ଦ୍ଦଶ ମନୁ ଚରିତ । ଭୂତ ବର୍ତ୍ତମାନ ଯେମନ୍ତ ।।
ଗଜଇନ୍ଦ୍ରର ଯେ ମୋକ୍ଷଣ । ଗ୍ରାହକୁ ଚକ୍ରେ ନିବାରିଣ ।।
ଶାପରୁ କରି ପରିତ୍ରାଣ । ଦେଲେ ସେ ବଇକୁଣ୍ଠେ ସ୍ଥାନ ।।
ବିଷ୍ଣୁ ମନ୍ୱନ୍ତର ମାନରେ । ହୟଗ୍ରୀବାଦି ଅବତାରେ ।।

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଗାଈ, ମଇଁଷି ଆଦି ପଶୁ ଘାସ ଆଦି ଚାରାକୁ ପ୍ରଥମେ ଯେପରି ଗୋଳା କରି ଗିଳି ଦିଅନ୍ତି, ଯେପରି ପେଟ ଭରିଗଲେ ଏକାନ୍ତରେ ବିଶ୍ରାମ କରି ତାହା ପାକୁଳି କରନ୍ତି । ତଦ୍ୱାରା ପେଟକୁ ଯାଇଥିବା ଘାସ ଆଦି ପୁନଃ ପାଟିକୁ ଆସିବାରୁ ତାହା ସେମାନେ ଚର୍ବଣ କରନ୍ତି । ପ୍ରଥମେ ସେମାନେ ଯାହାସବୁ ଖାଇଥାଆନ୍ତି, ପେଟ ଭିତରକୁ ତାହା ଯାଇଥାଏ । କିନ୍ତୁ ଦ୍ୱିତୀୟଥର ପାକୁଳି କରି ଚୋବାଇବାଦ୍ୱାରା ତହିଁରୁ ରସ ବାହାରେ ଓ ତାହା ସହଜରେ ପରିପାକ ହୁଏ । ସେହିପରି ପୁସ୍ତକ ପାଠ କଲାପରେ ତହିଁରୁ ପାଠ କରିଥିବା ବିଷୟର ସଂକ୍ଷିପ୍ତ ସୂଚୀ ମନନ କରିବାଦ୍ୱାରା ସେହି କଥା ନବୀନ ହୋଇ ଦୃଷ୍ଟିପଥ ସମ୍ମୁଖରେ ନୃତ୍ୟ କରେ । ଏହାଦ୍ୱାରା ବିସ୍ମୃତ ବିଷୟଗୁଡ଼ିକ ପୁନଃ ସ୍ମରଣ ହୋଇଥାଏ ।

ସୂତ କହିଲେ—''ମୁନିଗଣ ! ମୁଁ ଏବେ ଚତୁର୍ଥାହର ସୂଚୀ ସମ୍ବନ୍ଧରେ ଆପଣମାନଙ୍କୁ କହୁଅଛି । ଭାଗବତ କଥାର ଏକବିଂଶ ଖଣ୍ଡରେ ତୃତୀୟାହ ପୂର୍ଣ୍ଣ ହୋଇ ନ ଥିଲା । ଧର୍ମରାଜ ଓ ଦେବର୍ଷି ନାରଦଙ୍କ ସମ୍ବାଦ ସମାପ୍ତି ପର୍ଯ୍ୟନ୍ତ ତୃତୀୟ ଦିବସର କଥା ଥିଲା । ଯେଉଁଠାରୁ ମନ୍ୱନ୍ତର କଥା ଆରମ୍ଭ ହୋଇଛି, ତାହା ଚତୁର୍ଥାହର କଥା । ସର୍ବପ୍ରଥମେ ମନ୍ୱନ୍ତରର ନାମ ଏଥିରେ କୁହାଯାଇଛି । ସେହି ସେହି ମନ୍ୱନ୍ତରରେ କେଉଁ କେଉଁ ଅବତାର ହୋଇଥିଲେ ତାହା ବର୍ଣ୍ଣନା କରାଯାଇଛି । ପ୍ରଥମ ଦ୍ୱିତୀୟ ମନ୍ୱନ୍ତରରେ ତୃତୀୟ ଚତୁର୍ଥ କଥା ରହିଛି । ଚତୁର୍ଥ ମନ୍ୱନ୍ତରରେ ହିଁ ହରିଙ୍କ ଅବତାର ହୋଇଥିଲା । ଏଥିରେ ଗଜକୁ ଗ୍ରାହ କବଳରୁ ହରି ଉଦ୍ଧାର କରିଥିଲେ । ପ୍ରଥମେ ଗଜ ଓ ଗ୍ରାହ କିଏ ଥିଲେ ତାହା କୁହାଯାଇଛି । ଗ୍ରାହ କାହିଁକି ଗଜର ଗୋଡ଼କୁ ଧରିଲା, ଅଧୀର ଗଜ କିପରି ଭଗବାନଙ୍କୁ ସ୍ତୁତି କଲା, ଗଜର ବିନୟ ଶୁଣି ଭଗବାନ୍ କିପରି ଉଭୟଙ୍କୁ ଉଦ୍ଧାର କଲେ ଏବଂ ଗଜ ଓ ଗ୍ରାହ ପୂର୍ବଜନ୍ମରେ କିଏ ଥିଲେ, ଏହି ପ୍ରକାର ଗଜ-ଗ୍ରାହଙ୍କ ଚରିତ୍ରକୁ ଛଅ ଅଧ୍ୟାୟରେ କୁହାଯାଇଛି ।

ତାହାପରେ ପଞ୍ଚମ ଷଷ୍ଠ ମନ୍ୱନ୍ତରାବତାର କଥା । ଷଷ୍ଠ ମନ୍ୱନ୍ତରାବତାର ଯେଉଁ ଅଜିତ ଭଗବାନ୍ ଅବତୀର୍ଣ୍ଣ ହୋଇଥିଲେ, ସେ କ୍ଷୀରସାଗରକୁ ମନ୍ଥନ କରାଇଥିଲେ । ଏଥିପାଇଁ ଏବେ ସମୁଦ୍ର ମନ୍ଥନ କଥା ଆରମ୍ଭ ହୋଇଛି । ଇନ୍ଦ୍ରଙ୍କ ଅପରାଧରୁ ଦୁର୍ବାସା ମୁନିଙ୍କ ଶାପରେ ତିନିଲୋକର ଶ୍ରୀ ନଷ୍ଟ ହୋଇଗଲା । ସମସ୍ତ ଦେବତା ମିଳି ବ୍ରହ୍ମାଙ୍କ ନିକଟକୁ ଗଲେ । ବ୍ରହ୍ମା ସମସ୍ତ ଦେବତାଙ୍କୁ ସଙ୍ଗରେ ନେଇ ଭଗବାନଙ୍କ ନିକଟକୁ ଗଲେ । ଭଗବାନ୍ ଅଜିତ ଦେବତାମାନଙ୍କୁ ସମ୍ମତି ଦେଲେ, 'ତୁମ୍ଭେମାନେ ଅସୁରଙ୍କ ସହିତ ସନ୍ଧି କରିନିଅ, ଦୁଇପକ୍ଷ ମିଳି ସମୁଦ୍ରକୁ ମନ୍ଥନ କର, ସେଥିରୁ ଶ୍ରୀ ବାହାରିବେ । ଅନ୍ୟାନ୍ୟ ରତ୍ନ ଓ ଅମୃତ ମଧ୍ୟ ବାହାରିବ ।' ସୁରମାନଙ୍କୁ ନୀତି ନିୟମ ବତାଇ ଭଗବାନ୍ କହିଲେ—''ଦେଖ, ଦେବଗଣ ! ସ୍ୱାର୍ଥ ସିଦ୍ଧି ପାଇଁ ଶତ୍ରୁ ସହିତ ସନ୍ଧି କରିନେବା ଉଚିତ୍ ।'' ଭଗବାନଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଦେବତାଗଣ ଅସୁରଙ୍କ ସହିତ ଆନନ୍ଦରେ ସନ୍ଧି କରିନେଲେ । ଏହି ପର୍ଯ୍ୟନ୍ତ କଥା ଭାଗବତ କଥାର ଏକବିଂଶ ଖଣ୍ଡରେ ରହିଛି ।

ଦ୍ୱାବିଂଶ ଖଣ୍ଡରେ ସେହି ସମୁଦ୍ର ମନ୍ଥନ କଥାର କ୍ରମ ରଖାଯାଇ ଦେବତା ଓ ଦୈତ୍ୟଗଣ ମିଳିତ ହୋଇ ସମୁଦ୍ର ମନ୍ଥନ କରିଥିବା କଥା କୁହାଯାଇଛି । ଏଥିରେ ମନ୍ଦର ପର୍ବତକୁ ଖୁଆ ଓ ବାସୁକୀ ନାଗକୁ ଦଉଡ଼ି କରାଯାଇଛି । ବାସୁକୀର ମୁଣ୍ଡ ପଟ ଅସୁରମାନେ ଓ ଲାଞ୍ଜପଟ ଦେବତାମାନେ ଧରି ମନ୍ଦର ପର୍ବତରେ ଗୁଡ଼ାଇ ସମୁଦ୍ର ମନ୍ଥନ କରିବାକୁ ଆରମ୍ଭ କଲେ । ଭଗବାନ୍ ନିଜେ କଚ୍ଛପ ହୋଇ ମନ୍ଦର ପର୍ବତକୁ ପିଠିରେ ଟେକି ସମୁଦ୍ରରେ ଭସାଇ ରଖିଲେ । ମନ୍ଥନରୁ ସର୍ବପ୍ରଥମେ ବିଷ ବାହାରିଲା । ତାହା ପାନ କରିବାକୁ ବିଶ୍ୱନାଥଙ୍କୁ ଅନୁରୋଧ କରାଗଲା । ପରୋପକାର ପାଇଁ ବିଶ୍ୱନାଥ ବିଷପାନ କଲେ । ଏହାପରେ

ସମୁଦ୍ର ମନ୍ଥନରୁ ରତ୍ନ ଓ ଲକ୍ଷ୍ମୀ ବାହାରିଲେ । ଶ୍ରୀମନ୍ନାରାୟଣ ଲକ୍ଷ୍ମୀଙ୍କୁ ବରଣ କଲେ । ଏହାପରେ ଅମୃତ ଓ ଧନ୍ୱନ୍ତରୀ ଉତ୍ପନ୍ନ ହେଲେ । ଅସୁରଗଣ ଅମୃତ କଳସକୁ ଧରି ପଳାଇଗଲେ ଓ ନିଜ ନିଜ ମଧ୍ୟରେ ଝଗଡ଼ା କଲେ । ଭଗବାନ୍ ମୋହିନୀ ରୂପ ଧାରଣ କରି ଅସୁରମାନଙ୍କୁ ମୋହିତ କଲେ ଓ ଅମୃତ କଳସ ତାଙ୍କଠାରୁ ନେଇ ଆସିଲେ । ଦେବତାମାନଙ୍କୁ ଅମୃତ ପାନ କରାଇ ଭଗବାନ୍ ମୋହିନୀରୁ ମୋହନରେ ପରିଣତ ହେଲେ । ଭଗବାନ୍ ଏପରି କପଟ ବ୍ୟବହାର କାହିଁକି କଲେ, ସମାନ ପ୍ରଯତ୍ନ କରି ମଧ୍ୟ ଅସୁରମାନଙ୍କୁ ଅମୃତ କାହିଁକି ନ ଦେଲେ ଏହି ପ୍ରଶ୍ନର ଉତ୍ତର ଦିଆଯାଇ କୁହାଯାଇଛି ଯେ, ବିଷୟାସକ୍ତିରେ ହିଁ ମୃତ୍ୟୁ ହୁଏ ।

ଏହାପରେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ଯୁଦ୍ଧର ବର୍ଣ୍ଣନା, ଉଭୟଙ୍କ ମଧ୍ୟରେ କିପରି ଦ୍ୱନ୍ଦ୍ୱଯୁଦ୍ଧ ହେଲା, ବଳି ଇନ୍ଦ୍ରଙ୍କ ସହିତ କିପରି ମାୟାଯୁଦ୍ଧ କଲେ, ଇନ୍ଦ୍ର କିପରି ଆସୁରୀ ମାୟାର ବିନାଶ କଲେ ଓ ଅସୁରଙ୍କୁ ହରାଇଲେ, ବଳିକୁ ହରାଇ ଇନ୍ଦ୍ର ନମୁଚିକୁ ମାରିବା— ଏହି ପ୍ରକାର ଯୁଦ୍ଧ ହେବାରୁ ବ୍ରହ୍ମାଙ୍କ ଆଜ୍ଞାରେ ନାରଦ ମୁନି ଆସି ଯୁଦ୍ଧ ବନ୍ଦ କରାଇବା—ଏହି ପର୍ଯ୍ୟନ୍ତ ଦେବାସୁର ସଂଗ୍ରାମ କଥା କୁହାଯାଇଛି ।

ଏବେ ରଙ୍ଗ ରସଯୁକ୍ତ କଥା କୁହାଯିବ । ଶିବ କୈଳାସରେ ବସିଥିବାବେଳେ ଭଗବାନଙ୍କର ମୋହିନୀ ରୂପ ଦର୍ଶନ କରିବାକୁ ଇଚ୍ଛା ହେବାରୁ ସେ ନିଜର ଗଣ ଓ ନନ୍ଦୀଙ୍କ ସହିତ ବୈକୁଣ୍ଠକୁ ଯାତ୍ରା କଲେ ଓ ଭଗବାନଙ୍କର ମୋହିନୀ ରୂପ ଦେଖି ତାଙ୍କ ପଛରେ ଦଉଡ଼ିଲେ । ସେଠାରେ ତାଙ୍କର ହରିହରାତ୍ମକ ସମ୍ମିଳନ ହୋଇଗଲା । ''ଭାଗବତ କଥା''ର ଦ୍ୱାବିଂଶ ଖଣ୍ଡ ଏହିଠାରେ ସମାପ୍ତ ହୋଇଛି ।

ତ୍ରୟୋବିଂଶ ଖଣ୍ଡର ଆରମ୍ଭରେ ମୋହିନୀ ଚରିତର ଶେଷାଂଶ କୁହାଯାଇ ଏହା ସମାପ୍ତ କରାଯାଇଛି । ଏହି ପ୍ରକାର ଷଷ୍ଠ ମନ୍ୱନ୍ତରରେ ଅବତାର ଭଗବାନ୍ ଅଜିତଙ୍କର ଏହି ସମୁଦ୍ର ମନ୍ଥନ ଲୀଳା ସମାପ୍ତ ହୋଇଛି । ପୁନଶ୍ଚ ସପ୍ତମ ମନ୍ୱନ୍ତର ଓ ଆଗତ ସପ୍ତମ ମନ୍ୱନ୍ତର କଥା ସଂକ୍ଷେପରେ କୁହାଯାଇ ଚଉଦ ମନ୍ୱନ୍ତର କଥା ସମ୍ପୂର୍ଣ୍ଣ କରାଯାଇଛି । ଏଥିରେ ମନ୍ୱନ୍ତରର ମନୁ ଆଦିଙ୍କର କାର୍ଯ୍ୟ ବର୍ଣ୍ଣନା କରାଯାଇଛି । ଏବେ ଛଳିଆ ବଟୁ ବାମନଙ୍କ କଥା କୁହାଯିବ ।

ମହାରାଜ ବଳି ସ୍ୱର୍ଗକୁ ଜୟ କରିବା ପାଇଁ ପୁନଶ୍ଚ ପ୍ରଯତ୍ନ କଲା । ଗୁରୁଙ୍କ କୃପାରୁ ସେ ସ୍ୱର୍ଗର ଦେବତାମାନଙ୍କ ଉପରେ ଆକ୍ରମଣ କଲା । ଦେବତାମାନଙ୍କର ଗୁରୁ ବୃହସ୍ପତି ଦେବତାମାନଙ୍କୁ କହିଲେ, ''ତୁମ୍ଭେମାନେ ଏବେ ଅସୁରମାନଙ୍କୁ ଜିଣିପାରିବ ନାହିଁ । ସ୍ୱର୍ଗ ଛାଡ଼ି ତୁମ୍ଭେମାନେ ପଳାଇଯାଅ ।'' ଗୁରୁଙ୍କ ଆଜ୍ଞାରେ ଦେବତାମାନେ ସ୍ୱର୍ଗ ଛାଡ଼ି ଚାଲିଗଲେ । ବିନା ଯୁଦ୍ଧରେ ବଳି ତିନିଲୋକର ରାଜା ହୋଇଗଲା । ଦେବଗଣଙ୍କର ମାତା ଅଦିତିଙ୍କର ଏଥିରେ ବଡ଼ ଦୁଃଖ ହେଲା । ସେ ଭଗବାନଙ୍କୁ ଆରାଧନା କଲେ । କଶ୍ୟପଙ୍କର ସମ୍ମତିରେ ସେ ପୟୋବ୍ରତ ଅନୁଷ୍ଠାନ କଲେ । ତାଙ୍କ ନିୟମ ପାଳନ ଓ ବ୍ରତରେ ସନ୍ତୁଷ୍ଟ ହୋଇ ଭଗବାନ୍ ତାଙ୍କ ସମ୍ମୁଖରେ ଉଭା ହୋଇ ସ୍ୱୟଂ ତାଙ୍କ ପୁତ୍ର ହୋଇ ଦେବଗଣଙ୍କର ଦୁଃଖ ଦୂର କରିବାକୁ ଆଶ୍ୱାସନା ଦେଲେ ଓ ବାମନ ହୋଇ ତାଙ୍କ ଗର୍ଭରୁ ଜନ୍ମ ନେଲେ । କଶ୍ୟପ ତାଙ୍କୁ ସେହି ଛୋଟ ଅବସ୍ଥାରେ ବ୍ରତ କରାଇଦେଲେ । ସେ ସଙ୍ଗେ ସଙ୍ଗେ ଦଣ୍ଡ କମଣ୍ଡଳୁ ଧରି ମୃଗଛାଲ ପିନ୍ଧି ଯଜ୍ଞରେ ଦୀକ୍ଷିତ ବଳିକୁ ଛଳରେ ପରୀକ୍ଷା କରିବାକୁ ଗଲେ । ବଳି ସେହି ତେଜସ୍ୱୀ ବଟୁଙ୍କୁ ସ୍ୱାଗତ କଲେ ।

ବିବାହ ଆଦି କରିବାର ପ୍ରଶ୍ନ ତ ନ ଥିଲା । ସେ ତ ବଳିକୁ ଛଳରେ ପକାଇବାକୁ ଯାଇଥିଲେ । ପ୍ରଥମେ ଯାଇ ସେ ବଳିର ପିତା, ପିତାମହଙ୍କର ବହୁତ ପ୍ରଶଂସା କଲେ । ଏହାପରେ ତିନିପାଦ ଭୂମି ମାଗିଲେ । ବଳିର ଗୁରୁ ଶୁକ୍ରାଚାର୍ଯ୍ୟ ବୁଝିପାରିଲେ ଯେ ଭଗବାନ

ଛଳକରି ବଟୁ ରୂପରେ ମୋ ଶିଷ୍ୟଙ୍କୁ ବିପଦରେ ପକାଇବାକୁ ଆସିଛନ୍ତି । ସେ ଶିଷ୍ୟଙ୍କୁ ବୁଝାଇ ବ୍ୟାବହାରିକ ଧର୍ମ ବତାଇ ଦେଲେ । ସେ କେତେକ ହିତାହିତ ଧର୍ମ ବତାଇ କେଉଁ କେଉଁ ସ୍ଥଳରେ ମିଛ କହିଲେ ବିଶେଷ ଦୋଷ ହେବ ନାହିଁ ତାହା ମଧ୍ୟ ବୁଝାଇଦେଲେ । କିନ୍ତୁ ଉଦାରମନା ବଳି ତାହା ମାନିଲେ ନାହିଁ । ସେ ନିଜ ସତ୍ୟରେ ଦୃଢ ରହିଲେ । ଶୁକ୍ରାଚାର୍ଯ୍ୟ କ୍ରୁଦ୍ଧ ହୋଇ ତାଙ୍କୁ ଶ୍ରୀହୀନ ହେବାକୁ ଶାପ ଦେଲେ । ଏଥିରେ ବଳି ବିଚଳିତ ହେଲେନାହିଁ । ଏବେ ବାମନ ବଟୁ ଛୋଟରୁ ବିରାଟକାୟ ଧାରଣକଲେ । ଏହି ପର୍ଯ୍ୟନ୍ତ ପ୍ରସଙ୍ଗ ''ଭାଗବତ କଥାର'' ତ୍ରୟୋବିଂଶ ଖଣ୍ଡରେ ରହିଛି । ଏହାପରେ ଚତୁର୍ବିଂଶ ଖଣ୍ଡର ସୂଚୀ ବର୍ଣ୍ଣନା କରା ଯାଇଛି ।

ଚତୁର୍ବିଂଶ ଖଣ୍ଡରେ ବାମନାବତାର କଥାର କ୍ରମ ରଖାଯାଇ ଦୁଇପାଦରେ ଭଗବାନ ଯେପରି ଏହି ବିଶ୍ୱବ୍ରହ୍ମାଣ୍ଡକୁ ମାପିନେଲେ ତାହା ବର୍ଣ୍ଣନା କରାଯାଇଛି । ଏହାପରେ ଯେପରି ପ୍ରଭୁଙ୍କ ପାଦପଦ୍ମରୁ ବିଷ୍ଣୁପଦୀ ଗଙ୍ଗା ଉତ୍ପନ୍ନ ହେଲେ, ଅସୁର ବଟୁବାମନଙ୍କ ଉପରେ କୋପ କଲେ, ବଳି ତାହା ନିବାରଣ କରି ତୃତୀୟପାଦ ପାଇଁ ନିଜ ଶରୀରକୁ ଅର୍ପଣ କଲେ ଏବଂ ସେହି ସମୟରେ ତାଙ୍କର ପିତାମହ ପ୍ରହ୍ଲାଦ ଆସି ଉପସ୍ଥିତ ହେଲେ, ତାହା ଏଠାରେ ବର୍ଣ୍ଣନା କରାଯାଇଛି ।

ତାହାପରେ ବ୍ରହ୍ମାଙ୍କ ପ୍ରଶ୍ନର ଉତ୍ତର ଦେଇ ଭଗବାନ କହିଲେ ଯେ, ଯାହାଙ୍କ ଉପରେ ମୁଁ କୃପା କରେ, ପ୍ରଥମେ ତାଙ୍କର ଧନ ଅପହରଣ କରିନିଏ । ଏହା କହି ଭଗବାନ୍ ବଳି ଉପରେ କୃପାକଲେ ଓ ତାଙ୍କୁ ସୁତଳ ଲୋକରେ ରାଜା କରାଇଲେ । ସେ ନିଜେ ମଧ ବଳିର ଦ୍ୱାରପାଳ ହୋଇ ସେଠାରେ ରହିଲେ । ଦେବତାମାନଙ୍କୁ ସେମାନଙ୍କ ସ୍ୱର୍ଗରାଜ୍ୟ ମିଳିଗଲା ଓ ବାମନ ଭଗବାନ୍ ଉପେନ୍ଦ୍ର ହୋଇଗଲେ । ବାମନାବତାର କଥା ଏହିପରି ସମାପ୍ତ ହୋଇଅଛି । ଏହାପରେ ମତ୍ସ୍ୟାବତାର କଥା ।

ପ୍ରଥମ ଅବତାରର ପ୍ରୟୋଜନ ସମ୍ବନ୍ଧରେ କୁହାଯାଇ ଏହାପରେ ଧର୍ମର କ୍ଷୟିଷ୍ଣୁ ହେବାର କାରଣ କୁହାଯାଇଛି । ଏହାପରେ ମହାରାଜ ସତ୍ୟବ୍ରତଙ୍କ ଉପରେ ମତ୍ସ୍ୟ ଭଗବାନ୍ କିପରି କୃପା କରିଥିଲେ, କିପରି ସେ ଛୋଟରୁ ବଡ଼ ହେଲେ, ରାଜା ଯେତେବେଳେ ତାଙ୍କୁ ଜାଣିଲେ ସେତେବେଳେ ସେ ସିଂଘରେ ନୌକା ବାନ୍ଧି ସପ୍ତର୍ଷିଙ୍କ ସହିତ ପ୍ରଳୟ କାଳର ଜଳରେ କିପରି ବିହାର କରିବାରେ ଲାଗିଲେ ଏହିସବୁ କଥା କୁହାଯାଇ ମତ୍ସ୍ୟାବତାର ଚରିତ ସମାପ୍ତ କରାଯାଇଛି । ସେହି ରାଜା ସତ୍ୟବ୍ରତ ହିଁ ଏହି କଳ୍ପରେ ବୈବସ୍ୱତ ମନୁ ହୋଇଥିଲେ ଓ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ଏହି ଦୁଇ ପ୍ରସିଦ୍ଧ କ୍ଷତ୍ରିୟ ବଂଶକୁ ଚଳାଇଥିଲେ ।

ମନୁଙ୍କ ପୁତ୍ର ସୁଦ୍ୟୁମ୍ନଙ୍କ କଥା ପ୍ରଥମେ ଏଠାରେ କୁହାଯାଇଛି । ସେ କିପରି ଇଳାବୃତଖଣ୍ଡକୁ ଯାଇ ପୁରୁଷରୁ ସ୍ତ୍ରୀ ହୋଇଥିଲେ, ବୁଧଙ୍କ ସହିତ ତାଙ୍କର କିପରି ସମାଗମ ହୋଇଥିଲା, ବୁଧ କିପରି ଉତ୍ପନ୍ନ ହୋଇଥିଲେ, ବୁଧ ଓ ଇଳାଙ୍କଠାରୁ ପୁରୁରବାଙ୍କର ଜନ୍ମ କିପରି ହେଲା, ଏତିକି କଥା ଏଠାରେ କୁହାଯାଇ ଛାଡ଼ି ଦିଆଯାଇଛି । କାରଣ ଚନ୍ଦ୍ରପୁତ୍ର ବୁଧଙ୍କର ପୁତ୍ର ହିଁ ପୁରୁରବା । ଏହାଙ୍କଠାରୁ ଚନ୍ଦ୍ରବଂଶର ଆରମ୍ଭ । ସୂର୍ଯ୍ୟବଂଶ ପରେ ଏହି ଚନ୍ଦ୍ରବଂଶ କଥା କୁହାଯିବ । ତେଣୁ ଏହି କଥାକୁ ଏହିଠାରେ ରଖାଯାଇ ପ୍ରଥମେ ସୂର୍ଯ୍ୟବଂଶ କଥା ଆରମ୍ଭ ହେବ । ଏ ପର୍ଯ୍ୟନ୍ତ କଥା ''ଭାଗବତ କଥା''ର ଚତୁର୍ବିଂଶ ଖଣ୍ଡରେ ବର୍ଣ୍ଣିତ ହୋଇଛି । ଏବେ ପଞ୍ଚବିଂଶ ଖଣ୍ଡର କଥା ଆରମ୍ଭ ହେବ ।

ପଞ୍ଚବିଂଶ ଖଣ୍ଡରେ ସୂର୍ଯ୍ୟବଂଶର ବର୍ଣ୍ଣନା କରାଯାଇ ସର୍ବପ୍ରଥମେ ପୃଷଧ୍ରଙ୍କ କଥା କୁହାଯାଇଛି । ତାହାପରେ କରୁଷ ଆଦିଙ୍କର ବଂଶ ବର୍ଣ୍ଣନା କରାଯାଇଛି ଓ ନାଭାଗ ଚରିତ କୁହାଯାଇଛି । ପୁନଶ୍ଚ ବସ୍ତ୍ରପ୍ରୀତି, ପ୍ରାଂଶୁ, ଖନିତ୍ର, ଖନିନେତ୍ର, କରନ୍ଧମ, ଅବୀକ୍ଷିତ୍, ମରୁତ୍ତ,

ଦମ, ରାଜ୍ୟବର୍ଦ୍ଧନ, ତୃଣବିନ୍ଦୁ ଓ ଶର୍ଯାତି ଆଦି ରାଜାଙ୍କର ଚରିତ କୁହାଯାଇଛି । ପୁନଶ୍ଚ ଶର୍ଯାତି ରାଜାଙ୍କର କନ୍ୟା ''ସୁକନ୍ୟା''ଙ୍କ କଥା ରାଜା ନିଜର କନ୍ୟା ଓ ସୈନ୍ୟଙ୍କ ସହିତ କିପରି ଚ୍ୟବନାଶ୍ରମକୁ ଯାଇଥିଲେ, କିପରି ଉଇହୁଙ୍କା ହୋଇ ଯାଇଥିବା ଚ୍ୟବନ ମୁନିଙ୍କ ଆଖିକୁ ସୁକନ୍ୟା ଫୋଡ଼ିଦେଲେ, ତାଙ୍କର ବିବାହ ସେହି ଅନ୍ଧ ଚ୍ୟବନ ମୁନିଙ୍କ ସହିତ କିପରି ହେଲା—ଅଶ୍ୱିନୀ କୁମାରଙ୍କ କୃପାରୁ ମୁନି କିପରି ବୃଦ୍ଧରୁ ତରୁଣ ହୋଇଗଲେ—ଚ୍ୟବନ ମୁନି ଦେବତାମାନଙ୍କ ପଙ୍କ୍ତିରୁ ବିତାଡ଼ିତ ହୋଇଥିବା ଅଶ୍ୱିନୀ କୁମାରଙ୍କୁ କିପରି ଯଜ୍ଞରେ ଦେବତାମାନଙ୍କ ସହିତ ଭାଗ ପ୍ରଦାନ କରାଇଲେ, ଏହିସବୁ କଥା ବିସ୍ତାରିତ ଭାବରେ ଏଠାରେ ବର୍ଣ୍ଣନା କରାଯାଇଛି । ତାହାପରେ ଶର୍ଯାତିଙ୍କ ପୁତ୍ରମାନଙ୍କ କଥା କୁହାଯାଇଛି । ଏହି ପ୍ରସଙ୍ଗରେ ବଳରାମଙ୍କ ସହିତ ରେବତୀଙ୍କର ବିବାହ କିପରି ହେଲା, ତାହା କୁହାଯାଇଛି । ତାହାପରେ ନଭଗ ବଂଶର ବର୍ଣ୍ଣନା ବିସ୍ତାରିତ ଭାବରେ କରାଯାଇଛି ।

ନଭଗଙ୍କର ପୁତ୍ର ନାଭଗଙ୍କର ଜନ୍ମ, ତାଙ୍କ ପୁତ୍ର ପରମ ଭାଗବତ ମହାରାଜ ଅମ୍ବରୀଷଙ୍କର ଜନ୍ମ ବୃତ୍ତାନ୍ତ । ଏହାଙ୍କର ଏକାଦଶୀ ବ୍ରତରେ ନିଷ୍ଠା । ଏହି ପର୍ଯ୍ୟନ୍ତ କୁହାଯାଇ ''ଭାଗବତ କଥା''ର ପଞ୍ଚବିଂଶ ଖଣ୍ଡ ସମାପ୍ତ ହୋଇଛି । ଏବେ ଷଡ୍‌ବିଂଶ ଖଣ୍ଡର କଥାସୂଚୀ ଆରମ୍ଭ ହେବ ।

ଷଡ଼୍‌ବିଂଶ ଖଣ୍ଡରେ ଅମ୍ବରୀଷଙ୍କର ଚରିତ କ୍ରମ ରଖାଯାଇ ପ୍ରଥମେ ଏକାଦଶୀ ବ୍ରତର ଉତ୍ପତ୍ତି କଥା କୁହାଯାଇଛି । ଏହି ବ୍ରତରେ ଏକାଦଶୀପ୍ରେମୀ ମହାରାଜ ରୁକ୍ମାଙ୍ଗଦଙ୍କ କଥା ମଧ୍ୟ କୁହାଯାଇଛି । ଏହାପରେ ଅମ୍ବରୀଷ ରାଜାଙ୍କର ଦ୍ୱାଦଶୀ ପାରଣାରେ ଦୁର୍ବାସା ମୁନି କିପରି ଆସି ପହଞ୍ଚିଲେ, ସେ କିପରି କ୍ରୋଧକରି କୃତ୍ୟାକୁ ସୃଷ୍ଟି କଲେ, ମୁନିଙ୍କର ଦୁର୍ଦ୍ଦଶା କିପରି ହେଲା, ସେ କିପରି ଭଗବାନ ବିଷ୍ଣୁଙ୍କର ଶରଣ ପଶିଲେ ଓ ଶେଷରେ ଅମ୍ବରୀଷଙ୍କର ଶରଣ ପଶିବାରୁ କିପରି ତାଙ୍କ ଦୁଃଖର ନିବୃତ୍ତି ଘଟିଲା, ଇତ୍ୟାଦି କଥା କୁହାଯାଇ ଅମ୍ବରୀଷ ଚରିତ ସମାପ୍ତ କରାଯାଇଛି । ଏହାପରେ ଶଶାଦ, କକୁତ୍‌ସ୍ଥ, ଧୁନ୍ଧୁମାର, ଯୁବନାଶ୍ୱ ଓ ମାନ୍ଧାତା ଆଦି ରାଜାଙ୍କର କଥା କୁହାଯାଇଛି । ଏହି ପ୍ରସଙ୍ଗରେ ମହର୍ଷି ସୌଭରିଙ୍କ ଚରିତ୍ର ବର୍ଣ୍ଣନା କରାଯାଇଛି । ତପସ୍ୟାନିରତ ସୌଭରି ଋଷି ମତ୍ସ୍ୟମୈଥୁନ ଦେଖି କିପରି ବିବାହ କରିବାକୁ ଇଚ୍ଛା କଲେ, ସେ କିପରି ମାନ୍ଧାତାଙ୍କର ପଚାଶ କନ୍ୟାଙ୍କୁ ବିବାହ କଲେ, ସେ ଯୋଗ ପ୍ରଭାବରେ କିପରି ଗାର୍ହସ୍ଥ୍ୟ ଜୀବନ କଟାଇଲେ, ସୌଭରି ଋଷିଙ୍କ ବଂଶଜଙ୍କୁ କିପରି ବିପ୍ର ଅହିବାସୀ କୁହାଗଲା, ବୈରାଗ୍ୟ ହେବାରୁ ପୁନଶ୍ଚ କିପରି ସବୁକିଛି ତ୍ୟାଗକରି ସୌଭରି ତପସ୍ୟା କରିବାକୁ ବନକୁ ଚାଲିଗଲେ, ଏହିସବୁ କଥା କୁହାଯାଇ ସୌଭରି ଋଷିଙ୍କ ଚରିତ୍ର ସମାପ୍ତ କରାଯାଇଛି । ତଦନନ୍ତର ମାନ୍ଧାତାଙ୍କର ବଂଶଜ ତ୍ରିଶଙ୍କୁ ଓ ମହାରାଜ ହରିଶ୍ଚନ୍ଦ୍ରଙ୍କ ଚରିତ୍ର ପର୍ଯ୍ୟନ୍ତ ''ଭାଗବତ କଥା''ର ଷଡ୍‌ବିଂଶ ଖଣ୍ଡ ସମାପ୍ତ କରାଯାଇଛି । ଏବେ ସପ୍ତବିଂଶ ଖଣ୍ଡର କଥାସୂଚୀ ଆରମ୍ଭ ହେବ ।

ସପ୍ତବିଂଶ ଖଣ୍ଡରେ ହରିଶ୍ଚନ୍ଦ୍ରଙ୍କ ଚରିତ୍ରକୁ କ୍ରମ ରଖାଯାଇ ତାଙ୍କର ଉତ୍ତର ଚରିତ୍ର କୁହାଯାଇଛି । ପୁନଶ୍ଚ ବାହକପୁତ୍ର ମହାରାଜ ସଗରଙ୍କ କଥା—ମହାରାଜ ସଗର କିପରି ଅଶ୍ୱମେଧ ଯଜ୍ଞ କଲେ—ଇନ୍ଦ୍ର କିପରି ଅଶ୍ୱ ଚୋରିକରି ନେଲେ, ଅଶ୍ୱ ଚୋରିଯିବାରୁ ତାଙ୍କର ଷାଠିଏ ହଜାର ପୁତ୍ର କିପରି ପାତାଳକୁ ଗଲେ ଓ କପିଳ ମୁନିଙ୍କ କୋପରେ କିପରି ଭସ୍ମ ହୋଇଗଲେ—ପୁନଶ୍ଚ ତାଙ୍କର ପୌତ୍ର ଅଂଶୁମାନ କିପରି ଅଶ୍ୱକୁ ଫେରାଇ ଆଣିଲେ । ଅଂଶୁମାନଙ୍କର ପୁତ୍ର ଦିଲୀପ କିପରି ପ୍ରଭାବଶାଳୀ ହେଲେ, ଦିଲୀପଙ୍କ ପୁତ୍ର ଭଗୀରଥ କିପରି ସ୍ୱର୍ଗରୁ ଗଙ୍ଗାଙ୍କୁ ଆଣିଲେ, ମାର୍ଗରେ ସେ ଗଙ୍ଗାଙ୍କୁ କିପରି ପାତାଳକୁ ନେଇଗଲେ ଓ ନିଜର ପିତୃପୁରୁଷଙ୍କର ଉଦ୍ଧାର କଲେ, ଏହିସବୁ ପ୍ରସଙ୍ଗ ଏଠାରେ ବର୍ଣ୍ଣନା କରାଯାଇଛି । ଏହାପରେ ମହାରାଜ ଋତୁପର୍ଣ୍ଣ, ସୌଦାସ, ମୂଳକ ଓ ରାଜା ରଘୁଙ୍କ ଚରିତ୍ର ବର୍ଣ୍ଣନା କରାଯାଇଛି ।

ସୂତ କହିଲେ—''ମୁନିଗଣ ! ମହାରାଜ ରଘୁ ବଡ଼ ପ୍ରତାପୀ ଥିଲେ । ତାଙ୍କ ନାମରେ ଇକ୍ଷ୍ୱାକୁ ବଂଶ ରଘୁବଂଶ ରୂପେ ପ୍ରସିଦ୍ଧ । ଆନନ୍ଦକନ୍ଦ ଦଶରଥନନ୍ଦନ ଭଗବାନ୍ ରାମଚନ୍ଦ୍ରଙ୍କୁ ଏହି କାରଣରୁ ରଘୁନନ୍ଦନ, ରଘୁକୁଳ ତିଳକ, ରାଘବ ତଥା ରାଘବେନ୍ଦ୍ର ବୋଲି କୁହାଯାଏ । ଏହାଙ୍କର ପୁତ୍ର ଅଜ ଓ ଅଜଙ୍କର ପୁତ୍ର ହିଁ ଦଶରଥ । ଏହି ଦଶରଥ ଭଗବାନଙ୍କ ପିତା ହୋଇ ଦେବଦୁର୍ଲଭ ପଦ ପ୍ରାପ୍ତହୋଇଥିଲେ । ମୁନିଗଣ ! ଭାଗବତ କଥାର ଚତୁର୍ଥାହ ବିଷୟ ବହୁତ ବଡ଼ । ଏଥିରେ ରାଘବେନ୍ଦ୍ର ଚରିତ୍ର ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି । ଏଠାରେ ଯଦି ଚତୁର୍ଥାହ ବିଷୟ ସମ୍ପୂର୍ଣ୍ଣ ବର୍ଣ୍ଣନା କରାଯାଏ, ତାହାହେଲେ ଏହି ପ୍ରସଙ୍ଗ ବହୁତ ବଡ଼ ହୋଇଯିବ । ଭଗବାନ ରାଘବେନ୍ଦ୍ରଙ୍କର ପରମ-ପାବନ କରୁଣାମୟ ପ୍ରସଙ୍ଗକୁ ସ୍ମରଣ କରିବା ମାତ୍ରେ ମୋର ଶରୀର ରୋମାଞ୍ଚିତ ହୋଇଯାଉଛି । ଜଗଜ୍ଜନନୀ ସୀତାଙ୍କର ବିଶୁଦ୍ଧ ନିର୍ମଳ କରୁଣାପୂର୍ଣ୍ଣ ଚରିତ୍ର ସ୍ମରଣ କରିବା ମାତ୍ରେ ହିଁ ମୋର କଣ୍ଠ ଅବରୁଦ୍ଧ ହୋଇଯାଉଛି । ତେଣୁ ଚତୁର୍ଥାହର କିଛି ସୂଚୀ ଏଠାରେ ରଖାଯାଇ ଏହାପରେ ଅବଶିଷ୍ଟ ପୁନଶ୍ଚ ବର୍ଣ୍ଣନା କରାଯିବ । ଆପଣମାନେ ଧୈର୍ଯ୍ୟ ଧାରଣ କରି ଅପେକ୍ଷା କରନ୍ତୁ ।''

ଷଟ୍‌ପଦୀ

ଜହ୍ୱୋ ଚରିତ ସୁଦ୍ୟୁମ୍ନ ପୁତ୍ର ମନୁ ଚରିତ କହେ ତବ ।
ଚ୍ୟବନ ସୁକନ୍ୟା ବ୍ୟାହ ନଭଗ ନାଭଗ ଚରିତ ସବ ।।
ପୁନି ଇକ୍ଷ୍ୱାକୁ ଚରିତ୍ର ସୌଭରି ଚରିତ ମନୋହର ।
ଭୟେ ତ୍ରିଶଙ୍କୁ ପୁତ୍ର ନୃପତି ହରିଶ୍ଚନ୍ଦ୍ର ଧରମଧର ।।
ଭୟେ ଭସ୍ମ ସୁତ ସଗର କେ, ଶ୍ରୀ ଗଙ୍ଗାଜୀ ଆଗମନ ।
ରଘୁବଂଶୀ ଭୂପତି କଥା, ଜ୍ୟୋଂ ଦଶରଥ ନୃପ ଗୁରୁଶରନ ।।



# ଚତୁର୍ଥାହର ଅବଶିଷ୍ଟ ବିଷୟ ସୂଚୀ

**ରାମସ୍ୟ କୋଶଲେନ୍ଦ୍ରସ୍ୟ ଚରିତଂ କିଲ୍ବିଷାପହମ୍ ।**
**ନିମେରଙ୍ଗପରିତ୍ୟାଗୋ ଜନକାନାଂ ଚ ସମ୍ଭବଃ ।।** ☆
(ଶ୍ରୀ ଭା: ୧୨ସ୍କ: ୧୨ଅ: ୨୪ଶ୍ଳୋକ)

☆ ଶ୍ରୀରଘୁନାଥଙ୍କ ଚରିତ । ହୋଇଲେ ଦଶରଥ ସୁତ ।।
ସେ ରାମନାମ ଯେ ଧରନ୍ତି । ସଂସାର ତାପୁଁ ନିସ୍ତରନ୍ତି ।।
ନିମି ରାଜାର ଯେ ଚରିତ । ଜନକ ରାଜାର ବୃତ୍ତାନ୍ତ ।।
ଜନକ ରାଜାର ସନ୍ତତି । ସୂର୍ଯ୍ୟବଂଶରେ ଉତପତ୍ତି ।।
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଷଟ୍‌ପଦୀ

ରାଘବେନ୍ଦ୍ର କୀ କଥା ପ୍ରଥମ ହୀ ବାଇ ଚରିତ ହୈ ।
ବ୍ୟାହ ଚରିତ ହୈ ଦ୍ୱିତୀୟ ତୃତୀୟ ବନବାସ ଚରିତ ହୈ ॥
ସୀତା ହରନ ଚତୁର୍ଥ କହ୍ୟୋ ସଂଯୋଗ ପଞ୍ଚମୋଂ ।
ରାଜ ତିଲକ ହୈ ଛଟୋ, କହ୍ୟୋ ସିୟ ତ୍ୟାଗ ସାତମୋଂ ॥
ଅଷ୍ଟମ ହୈ ଉତ୍ତର ଚରିତ, ନବମେ ମେଂ ମହିମା ରହୀ ।
ୟୋ ଇନି ନୌ ଅଧାୟ ମେଂ, ରଘବେନ୍ଦ୍ର ଲୀଲା କହୀ ॥

ହେ ରାମ ! ତୁମର ରୂପ ମନମୋହକ ଅଟେ । ତୁମର ପୁଣ୍ୟପୁରୀ ପରମ ପାବନ ଅଟେ । ତୁମର ଲଳିତ ଲୀଳାମାନ ସମସ୍ତ ଦୁରିତ ଦୂରକାରୀ ଓ ତୁମର ଶ୍ରୁତ ମଧୁର ନାମ ସମସ୍ତ ତାପ ସନ୍ତାପ ଓ ପାପର ପ୍ରଶାସକ ଅଟେ । ଯେ କୌଣସି ପ୍ରକାରେ ତୁମର ଚର୍ଚ୍ଚା କରାଗଲେ ତଥା ଭାବରେ, କୁଭାବରେ ହସ ବିନୋଦରେ ଯେ କୌଣସି ପ୍ରକାରେ ତୁମର ନାମ ନିଆଗଲେ ମଧ୍ୟ ତାହା ସୁଖଶାନ୍ତି ପ୍ରଦାନ କରିଥାଏ । ହେ ରାମ ! ବିଷୟ ସୂଚୀରେ ବାରମ୍ବାର ତୁମର ନାମ ନିଆଯାଇଥିବାରୁ ତହିଁରେ ମଧ୍ୟ ତୁମେ ପ୍ରସନ୍ନ ହେବ, ଏହା ମୁଁ ବିଶ୍ୱାସ କରେ ।

ସୂତ କହିଲେ—''ମୁନିଗଣ ! ମୁଁ ଆପଣମାନଙ୍କୁ ଚତୁର୍ଥାହର ବାକିଥିବା (ଅବଶିଷ୍ଟ) ବିଷୟ ସୂଚୀ କହୁଅଛି । ଅଜପୁତ୍ର ମହାରାଜ ଦଶରଥଙ୍କର ସନ୍ତାନ ନଥିଲେ । ଯଦିଚ ତାଙ୍କର ତିନି ପ୍ରଧାନ ରାଣୀ ଓ ବହୁତ ସାଧାରଣ ରାଣୀ ଥିଲେ, କାହାରିଠାରୁ ପୁତ୍ର ଜାତ ହୋଇ ନଥିଲେ । ବଂଶ ରକ୍ଷା ପାଇଁ ଦଶରଥ ନିଜର କୁଳଗୁରୁ ଭଗବାନଙ୍କ ଶରଣ ନେଲେ । ଏ ପର୍ଯ୍ୟନ୍ତ କଥା ''ଭାଗବତ କଥା''ର ସପ୍ତବିଂଶ ଖଣ୍ଡରେ ବର୍ଣ୍ଣିତ ହୋଇଛି । ଏବେ ସେହି କଥାକୁ ସେହି ଖଣ୍ଡରେ କ୍ରମ ରଖି ଯେପରି ଋଷ୍ୟଶୃଙ୍ଗ ମୁନିଙ୍କଦ୍ୱାରା ପୁତ୍ରେଷ୍ଟି ଯଜ୍ଞ କରାଯିବା ପରେ ଶ୍ରୀରାଘବେନ୍ଦ୍ର ଜନ୍ମ ଗ୍ରହଣ କଲେ ତାହା ବର୍ଣ୍ଣନା କରାଯାଇଛି । ପୁନଶ୍ଚ ରାମଙ୍କର ନାମକରଣ ଓ ତାଙ୍କର ଅନୁପମ କୃପାର ଲଳିତ କଥା କୁହାଯାଇଛି । ଏହାପରେ ଯେପରି ଯଜ୍ଞ ରକ୍ଷା କରିବା ନିମିତ୍ତ ସେ ଲକ୍ଷ୍ମଣଙ୍କୁ ନେଇ ବିଶ୍ୱାମିତ୍ରଙ୍କ ସହିତ ବନକୁ ଗଲେ ଓ ଯିବା ସମୟରେ ତାଡ଼କାଙ୍କୁ ମାରିଲେ ଏ ସମସ୍ତ କଥା ଅତି ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି । ଏହି ପ୍ରସଙ୍ଗ ପର୍ଯ୍ୟନ୍ତ ''ଭାଗବତ କଥା''ର ସପ୍ତବିଂଶ ଖଣ୍ଡ ସମାପ୍ତ ହୋଇଛି । ଏବେ ଅଷ୍ଟବିଂଶ ଖଣ୍ଡର କଥାସୂଚୀ ଆରମ୍ଭ ହେବ ।

ଅଷ୍ଟବିଂଶ ଖଣ୍ଡରେ ଗଦ୍ୟରେ ଶ୍ରୀରାମଙ୍କର ବହୁତ ନିମ୍ନ ପ୍ରକାର ସାକାର ଝାଙ୍କି ପାଠ୍ୟ ରହିଛି । ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ, ମିଥିଳା ପଥର ପଥିକ ଶ୍ରୀରାମ, ଅହଲ୍ୟା ତାରକ ଶ୍ରୀରାମ, ଜାନକୀଙ୍କ ସ୍ୱାମୀ ଶ୍ରୀରାମ, ପର୍ଶୁରାମ ଦର୍ପଦଳନ ଶ୍ରୀରାମ, ପରମ ନିର୍ମମ ରାମ, ବିରହୀ ଭରତର ବନ୍ଧୁ ଶ୍ରୀରାମ, ବନବିହାରୀ ଶ୍ରୀରାମ, ମାୟାମୃଗ ରୂପୀ ମାରିଚ ପଛରେ ଧାଇଁଥିବା ଶ୍ରୀରାମ, ମାରିଚକୁ ମାରି କୁଟୀରକୁ ଫେରିଥିବା ଶ୍ରୀରାମ, ବୈଦେହୀ ହରଣ ବ୍ୟଥାରେ ବ୍ୟଥିତ ଶ୍ରୀରାମ, ପ୍ରିୟା ବିରହରେ ବିରହୀ ହୋଇଥିବା ଶ୍ରୀରାମ ଏହିପରି ଅତ୍ୟନ୍ତ ଅନୁପମ ଗଦ୍ୟ ଓ ଝାଙ୍କି (ପଦ୍ୟାବଳୀ) ରହିଛି । 'ସୀତା ହରଣ' ପରେ ତାଙ୍କ ଅନୁସନ୍ଧାନରେ ନିଜର ଭାଇ ଲକ୍ଷ୍ମଣଙ୍କ ସହିତ ଶ୍ରୀରାମ ବନ ବନାନ୍ତର ଭ୍ରମଣ କରିବା ପର୍ଯ୍ୟନ୍ତ କଥା ''ଭାଗବତ କଥା''ର ଅଷ୍ଟବିଂଶ ଖଣ୍ଡରେ ବର୍ଣ୍ଣିତ ହୋଇଛି । ଏବେ ଊନତ୍ରିଂଶ ଖଣ୍ଡରେ ଥିବା ବିଷୟ ସୂଚୀ କୁହାଯିବ ।

ଊନତ୍ରିଂଶ ଖଣ୍ଡରେ ଶ୍ରୀରାମ ଚରିତକୁ କ୍ରମ ରଖାଯାଇ ସର୍ବପ୍ରଥମେ ଜଟାୟୁ ଉଦ୍ଧାର କଥା କୁହାଯାଇଛି । ସର୍ବଭୂତ ସୁହୃଦ୍ ଶ୍ରୀରାମ ଆମିଷଭୋଜୀ ଜଟାୟୁକୁ କିପରି ସମ୍ମାନ

ଦେଇ ପିତାଙ୍କ ସମାନ କ୍ରିୟା କଲେ, ଶବରୀର ଅଇଁଠା କୋଳି ଖାଇ କିପରି ସୁଗ୍ରୀବଙ୍କୁ ଯାଇ ଭେଟିଲେ, ହନୁମାନ କିପରି ଅଗ୍ନିଙ୍କୁ ସାକ୍ଷୀ ରଖି ଶ୍ରୀରାମ ଓ ସୁଗ୍ରୀବଙ୍କ ମୈତ୍ରୀ ସ୍ଥାପନା କରାଇଲେ, ଶ୍ରୀରାମ କିପରି ବାଳିକୁ ମାରି ସୁଗ୍ରୀବଙ୍କୁ ରାଜ୍ୟ ଓ ସ୍ତ୍ରୀ ଦେଇ ମିତ୍ରଧର୍ମ ପାଳନ କଲେ, ସୁଗ୍ରୀବ କିପରି ଶ୍ରୀରାମଙ୍କୁ ଭୁଲିଯାଇ ବିଷୟରେ ଆସକ୍ତ ହୋଇଗଲେ ଓ ସୀତାଙ୍କ ବିୟୋଗରେ ଶ୍ରୀରାମ କିପରି ଚତୁର୍ମାସ୍ୟା ଦୁଃଖରେ କଟାଇଲେ, ଏ ସମସ୍ତ ବିଷୟ ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି । ଲକ୍ଷ୍ମଣ ଆସି ପହଞ୍ଚିବାରୁ ସୁଗ୍ରୀବ ଆସିଲେ, ହନୁମାନଙ୍କ ସମ୍ମତିରେ ଭାଲୁ ଓ ବାନର ସୈନ୍ୟଙ୍କୁ ଡକାଗଲା, ରାମଙ୍କ ଆଜ୍ଞାରେ ସୁଗ୍ରୀବ ସେମାନଙ୍କୁ ଦଶ ଦିଗକୁ ପଠାଇଲେ, ଅଙ୍ଗଦାଦିଙ୍କ ସହିତ ହନୁମାନ ଦକ୍ଷିଣକୁ ଯାତ୍ରା କଲେ, ସମୁଦ୍ର ପାରହୋଇ ହନୁମାନ ଲଙ୍କାରେ ପହଞ୍ଚି ସୀତାଙ୍କୁ ଶ୍ରୀରାମଙ୍କ ସନ୍ଦେଶ ଦେଲେ ଓ ଲଙ୍କା ଦହନ କରି ଫେରି ଆସିଲେ । ହନୁମାନଙ୍କଠାରୁ ସୀତାଙ୍କ ଖବର ପାଇ ଶ୍ରୀରାମ ସମୁଦ୍ର କୂଳରେ ଆସି ପହଞ୍ଚିଲେ, ସେଠାକୁ ତାଙ୍କ ଶରଣ ନେବା ପାଇଁ ବିଭୀଷଣ ଆସିଲେ, ସମୁଦ୍ର ମାର୍ଗ ନ ଦେବାରୁ ପ୍ରଭୁ କୋପ କଲେ ଓ ସମୁଦ୍ର ଶ୍ରୀରାମଙ୍କ ଶରଣ ପଶି ପୋଲ ବାନ୍ଧି ପାରି ହେବାର ଉପାୟ ବତାଇଲେ, ବାନରମାନଙ୍କ ସହାୟତାରେ ନଳ, ନୀଳଆଦି ସମୁଦ୍ରରେ ସେତୁ ବାନ୍ଧି ସମସ୍ତେ ଯାଇ ଲଙ୍କାପୁରୀ ଉପରେ ଆକ୍ରମଣ କଲେ, ବାନର ଓ ରାକ୍ଷସଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା, ରାବଣର ମୁଖ୍ୟ ମୁଖ୍ୟ ଯୋଦ୍ଧା ମୃତ୍ୟୁବରଣ କଲେ, କୁମ୍ଭକର୍ଣ୍ଣକୁ ଶ୍ରୀରାମ ମାରି ପରମପଦ ଦେଲେ, ଇନ୍ଦ୍ରଜିତକୁ ମାରି ପରଲୋକ ପଠାଇଲେ ଓ ଶେଷରେ ରାବଣ ଆସିବାରୁ ତା ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ । ଏହି ପର୍ଯ୍ୟନ୍ତ ''ଭାଗବତ କଥା''ର ଊନତ୍ରିଂଶ ଖଣ୍ଡରେ ବର୍ଣ୍ଣନା କରାଯାଇଛି । ଏବେ ତ୍ରିଂଶ ଖଣ୍ଡର କଥା କୁହାଯିବ ।

ତ୍ରିଂଶ ଖଣ୍ଡରେ ଶ୍ରୀରାମ ଚରିତକୁ କ୍ରମ ରଖାଯାଇ ସର୍ବପ୍ରଥମେ ରାମ-ରାବଣ ଯୁଦ୍ଧ ଓ ରାବଣର ମୃତ୍ୟୁ ବିଷୟ କୁହାଯାଇଛି । ଏହା ପରେ ରାକ୍ଷସୀମାନଙ୍କର ବିଳାପ, ମନ୍ଦୋଦରୀଙ୍କର କରୁଣ କ୍ରନ୍ଦନ, ବିଭୀଷଣଙ୍କଦ୍ୱାରା ରାବଣର ଅନ୍ତ୍ୟେଷ୍ଟିକ୍ରିୟା, ରାମଙ୍କର ସୀତାଙ୍କ ସହିତ ମିଳନ, ଲଙ୍କା ବିଜୟ କରି ପୁଷ୍ପକ ବିମାନରେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ, ସୀତାଙ୍କ ସମସ୍ତ ଲୀଳାସ୍ଥଳୀ ଦର୍ଶନ, ଏଣେ ବିରହୀ ଭରତ ରାମଙ୍କର ଆଗମନ ପାଇଁ ଅତ୍ୟନ୍ତ ବ୍ୟାକୁଳ ହେବା, ହନୁମାନଙ୍କଠାରୁ ଶ୍ରୀରାମଙ୍କ ଆଗମନର ଶୁଭ ସମ୍ବାଦ ଶ୍ରବଣ, ଭରତଙ୍କର ଅତିଶୟ ଆନନ୍ଦିତ ଅବସ୍ଥା, ଶ୍ରୀରାମଙ୍କ ଦର୍ଶନରେ ତାଙ୍କ ସହିତ ରୋମାଞ୍ଚକାରୀ ଭାବବିନିମୟ, ନନ୍ଦୀଗ୍ରାମଠାରୁ ପୁଷ୍ପକ ବିମାନ ଆରୂଢ଼ କରିଥିବା ଶ୍ରୀରାମଙ୍କର ଅଯୋଧ୍ୟାପୁରୀ ଯାତ୍ରା, ଅନ୍ତଃପୁରରେ ମାତାଗଣ ଓ ସମସ୍ତ ପରିଜନଙ୍କ ସହିତ ଶ୍ରୀରାମଙ୍କର ମିଳନ, ପୁନଶ୍ଚ ରାଜ୍ୟାଭିଷେକ ଓ ଶେଷରେ ଯଜ୍ଞ, ଦାନ ଓ ସତ୍‌କର୍ମରେ ନିରତ ରହି ପ୍ରଜାପାଳନ ବିଷୟ ଏ ଖଣ୍ଡରେ ବର୍ଣ୍ଣିତ ହୋଇଛି ।

ଏବେ ଅତ୍ୟନ୍ତ କରୁଣରସରେ ପରିପୂର୍ଣ୍ଣ ଜାନକୀ ନିର୍ବାସନର ଦୁଃଖଦାୟକ ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । ନିନ୍ଦୁକମାନଙ୍କଦ୍ୱାରା ସୀତାଙ୍କର ନିନ୍ଦାଶୁଣି ଲକ୍ଷ୍ମଣଙ୍କଦ୍ୱାରା ସୀତାଙ୍କୁ ବାଲ୍ମୀକି ଆଶ୍ରମରେ ନେଇ ଛାଡ଼ିବା—''ପତି ମୋତେ ତ୍ୟାଗ କରିଛନ୍ତି'' ଏହି କଥା ଶୁଣି ଲକ୍ଷ୍ମଣ ଅତ୍ୟନ୍ତ ଦୁଃଖିତ ହୋଇଛନ୍ତି, କିନ୍ତୁ କର୍ତ୍ତବ୍ୟ ନିକଟରେ କଠୋର ହେବାକୁ ପଡ଼ିଛି । ସଂସାରରେ ସେବକର ଧର୍ମ ଅତ୍ୟନ୍ତ କଠୋର । ସେହି କଠୋରତା ସେତିକିବେଳେ ପରାକାଷ୍ଠାରେ ପହଞ୍ଚିଯାଏ, ଯେତେବେଳେ ଉଭୟପକ୍ଷ ସେବକର ପୂଜ୍ୟ ହୋଇଥାଆନ୍ତି । ଲକ୍ଷ୍ମଣଙ୍କୁ ଏହି କଠୋର ଧର୍ମର ପାଳନ କରିବାକୁ ପଡ଼ିଥିଲା । ଯେତେବେଳେ ସେ ଅତ୍ୟନ୍ତ ଭୟଙ୍କର ନିର୍ଜନ ବନରେ ବୈଦେହୀଙ୍କୁ ଛାଡ଼ି ଚାଲିଗଲେ, ସେତେବେଳେ ବୈଦେହୀ ଅତ୍ୟନ୍ତ ବିଳାପ କରିଥିଲେ ।

ଲକ୍ଷ୍ମଣ ସୀତାଙ୍କୁ ବନରେ ଛାଡ଼ି ଆସିବା ପରେ ମହାମୁନି ବାଲ୍ମୀକି ଆସି ସୀତାଙ୍କୁ ଆଶ୍ରମକୁ ନେଇଗଲେ । ସେଠାରେ ଲବ କୁଶ ଜନ୍ମ ହେଲେ । ଲବଣାସୁର ବଧ ନିମିତ୍ତ ବନକୁ ଯାଇଥିବା ଶତ୍ରୁଘ୍ନ ପୁତ୍ରବତୀ ସତୀ ଶିରୋମଣି ସୀତାଙ୍କୁ ଦର୍ଶନ କରିଥିଲେ । ସେ ମଥୁରା ଯାଇ ଲବଣଙ୍କୁ ମାରି ସେଠାରେ ନିଜ ରାଜଧାନୀ ନିର୍ମାଣ କରାଇଲେ । ଭରତ ମଧ୍ୟ ଗନ୍ଧର୍ବମାନଙ୍କୁ ଜିଣି ସେଠାରେ ନିଜର ଦୁଇ ପୁତ୍ରଙ୍କୁ ରାଜା କରାଇଲେ । ଲକ୍ଷ୍ମଣଙ୍କ ପୁତ୍ର ମଧ୍ୟ ରାଜା ହେଲେ ।

ଏବେ ଅତ୍ୟନ୍ତ କରୁଣ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଏଥିରେ ଜଗଜ୍ଜନନୀ ଜାନକୀଙ୍କୁ ସମସ୍ତଙ୍କ ସମ୍ମୁଖରେ ଶୁଦ୍ଧତାର ଶପଥ ନେବା ପାଇଁ ବାଲ୍ମୀକି ଆଶ୍ରମରୁ ପୁନଃ ଯଜ୍ଞ ସଭାକୁ ଅଣାଯାଇଛି । ମାତା ସମସ୍ତଙ୍କ ସମ୍ମୁଖରେ ଶପଥ ନେଇଛନ୍ତି । ଧରିତ୍ରୀ ଫାଟି ଦୁଇଫାଳ ହୋଇଯାଇଛି ଓ ସୀତା ସେଥିରେ ପ୍ରବେଶ କରି ଚିରଦିନ ପାଇଁ ବିଦାୟ ନେଇଛନ୍ତି । ଭଗବାନ୍ ଶ୍ରୀରାମଚନ୍ଦ୍ର ସୀତାଙ୍କ ପାଇଁ ପୁନଶ୍ଚ ଶୋକ କରିଛନ୍ତି । ପୁନଶ୍ଚ କାଳ ସାଧୁ ବେଶରେ ଆସିଛନ୍ତି, ସେ ରାମଙ୍କଠାରୁ ବଚନ ନେଇଛନ୍ତି ଯେ, ଯିଏ ଆପଣ ଓ ମୋ ମଧ୍ୟରେ କଥାବାର୍ତ୍ତା ହେଉଥିବା ସମୟରେ ଏକାନ୍ତ ସ୍ଥଳକୁ ଆସିବ ତାହାକୁ ରାମ ବଧ କରିବେ । ରାମଚନ୍ଦ୍ର ତାଙ୍କୁ କଥା ଦେଇଛନ୍ତି । ଲକ୍ଷ୍ମଣ ପ୍ରହରୀ ହୋଇ ଦ୍ୱାର ଜଗିଛନ୍ତି । ଏହି ସମୟରେ ଦୁର୍ବାସା ଋଷି ଆସି ପହଞ୍ଚିଛନ୍ତି । ଲକ୍ଷ୍ମଣ ଏହି ଖବର ଦେବାକୁ ଘର ଭିତରେ ପ୍ରବେଶ କରିବାରୁ ଶ୍ରୀରାମ ତ ତାଙ୍କୁ ଜୀବନରେ ମାରି ନାହାନ୍ତି କିନ୍ତୁ ଚିରଦିନ ପାଇଁ ତାଙ୍କୁ ତ୍ୟାଗ କରିଛନ୍ତି । ତଦନନ୍ତର ସମସ୍ତ ଅଯୋଧ୍ୟାବାସୀ ଜୀବଙ୍କ ସହିତ ପ୍ରଭୁ ପରମ ପଦକୁ ପ୍ରାପ୍ତ ହେବା—ସୁଖାନ୍ତ ରାମଚରିତ ଓ ମାହାତ୍ମ୍ୟ କୁହାଯାଇ ରାମ କଥା ସମାପ୍ତ କରାହୋଇଛି । ଆଗକୁ ଅନ୍ୟାନ୍ୟ ଇକ୍ଷ୍ୱାକୁ କୁଳର ଭୂପତିମାନଙ୍କ କଥା ସଂକ୍ଷେପରେ କୁହାଯାଇଛି ।

ଏକତ୍ରିଂଶ ଖଣ୍ଡରେ ଇକ୍ଷ୍ୱାକୁ ବଂଶକୁ ସମାପ୍ତ କରାଯାଇ ନିମିବଂଶର ବଂଶାବଳୀ ବର୍ଣ୍ଣନା କରାଯାଇଛି । ଏଥିରେ ଆଦି ବିଦେହ ମହାରାଜ ଜନକ, ସୀତାପିତା ମହାରାଜ ସୀରଧ୍ୱଜ, ମହାରାଜ ଧର୍ମଧ୍ୱଜ, କେଶିଧ୍ୱଜ ଓ ଖାଣ୍ଡିକ୍ୟ ଏବଂ ଆହୁରି ଅନେକ ଜନକ ବଂଶୀୟ ରାଜାଙ୍କ ଚରିତ୍ର ବର୍ଣ୍ଣନା କରାଯାଇଛି । ଶେଷରେ ମହାରାଜ ଦଣ୍ଡକଙ୍କ କଥା କୁହାଯାଇ ଏହିଠାରେ ''ଭାଗବତ କଥା''ର ଏକତ୍ରିଂଶ ଖଣ୍ଡ ସମାପ୍ତ କରାଯାଇଛି ।

ସୂର୍ଯ୍ୟବଂଶ କଥା ଶେଷରେ ଦ୍ୱାତ୍ରିଂଶ ଖଣ୍ଡରେ ଚନ୍ଦ୍ରବଂଶ କଥା ଆରମ୍ଭ କରାଯାଇଛି । ପ୍ରଥମେ ଚନ୍ଦ୍ରବଂଶର ଉତ୍ପତ୍ତି ବିଷୟରେ କୁହାଯାଇ ଚନ୍ଦ୍ରଙ୍କର ତାରାହରଣ ରୂପୀ ଅନୁଚିତ କାର୍ଯ୍ୟ ସମ୍ବନ୍ଧରେ ଆଲୋଚନା କରାଯାଇଛି । ଚନ୍ଦ୍ରଙ୍କର ପୁତ୍ର ବୁଧଙ୍କର ଜନ୍ମ, ବୁଧଙ୍କ ପୁତ୍ର ପୁରୁରବା ଯିଏକି ସ୍ୱର୍ଗୀୟ ଅପ୍ସରା ଉର୍ବଶୀଙ୍କୁ ବିବାହ କରିଥିଲେ । ଉର୍ବଶୀ କିଛିଦିନ ରାଜାଙ୍କ ମହଲରେ ରହି ଶେଷରେ ସ୍ୱର୍ଗକୁ ଚାଲି ଯାଇଥିଲେ । ଏଥିରେ ମହାରାଜ ପରମ ହତୋତ୍ସାହ ହୋଇପଡ଼ିଲେ । ସେ ପାଗଳଙ୍କ ଭଳି ଇତଃସ୍ତତ ଭ୍ରମଣ କରିବାକୁ ଲାଗିଲେ । କୁରୁକ୍ଷେତ୍ରକୁ ଯାଇ ଉର୍ବଶୀଙ୍କ ସହିତ ତାଙ୍କର ପୁର୍ନମିଳନ ହେଲା । ସେତେବେଳେ ତ୍ରୟୀବିଦ୍ୟାର ପ୍ରାଦୁର୍ଭାବ ଥିଲା । ତ୍ରୟୀବିଦ୍ୟା ପ୍ରଭାବରେ ମହାରାଜ ଗନ୍ଧର୍ବ ଲୋକକୁ ଚାଲିଗଲେ । ବିଷୟର ଉପଭୋଗ କରି କରି ତାଙ୍କର ଶେଷକୁ ବୈରାଗ୍ୟ ଜାତ ହେଲା ଓ ସେ ମୁକ୍ତି ଲାଭକଲେ । ଏହି ପ୍ରକାର ଚନ୍ଦ୍ରବଂଶର ସଂସ୍ଥାପକ ପ୍ରତିଷ୍ଠାନପୁରୀ ପତି ମହାରାଜ ଏଳଙ୍କ ଚରିତ୍ର କୁହାଯାଇ ପୁନଶ୍ଚ ରାଜର୍ଷି ଜହ୍ନୁଙ୍କ ଚରିତ୍ର କୁହାଯାଇଛି । ଏହାପରେ କୁଶନାଭଙ୍କ ଚରିତ୍ର କୁହାଯାଇ ସତ୍ୟବତୀ ପତି ମହାରାଜ ଋଚିକଙ୍କ ଚରିତ୍ର କୁହାଯାଇଛି । କିପରି ସତ୍ୟବତୀ ଓ ତାଙ୍କର ମାତାଙ୍କର ଚରୁ ବିପର୍ଯ୍ୟୟରୁ ବ୍ରାହ୍ମଣ ବଂଶରେ ମଧ୍ୟ ଉତ୍ପନ୍ନ ହୋଇଥିବା ପରଶୁରାମ କ୍ଷତ୍ରିୟ ସ୍ୱଭାବର ହୋଇଥିଲେ

ଓ କ୍ଷତ୍ରିୟ ବଂଶରେ ଉତ୍ପନ୍ନ ହୋଇଥିବା ବିଶ୍ୱାମିତ୍ର ମଧ୍ୟ ବ୍ରାହ୍ମଣ ହୋଇଥିଲେ, ଏହି ପ୍ରସଙ୍ଗରେ ଶ୍ରୀପରଶୁରାମା-ବତାରଙ୍କର ପରମ ପୁଣ୍ୟଦାୟିନୀ ଗାଥା ବର୍ଣ୍ଣିତ ହୋଇଛି । ଶ୍ରୀପରଶୁରାମ ପିତାଙ୍କ ଆଜ୍ଞାରେ କିପରି ଭାଇମାନଙ୍କୁ ଓ ମାତାଙ୍କୁ ମାରିଥିଲେ, କିପରି ସହସ୍ରାର୍ଜୁନ ବଳପୂର୍ବକ ପିତା ଜମଦଗ୍ନିଙ୍କ କାମଧେନୁଙ୍କୁ ହରଣ କରିନେଲା, ପରଶୁରାମ ଯାଇ କିପରି ସହସ୍ରାର୍ଜୁନଙ୍କୁ ମାରି ନିଜର କାମଧେନୁଙ୍କୁ ଫେରାଇ ଆଣିଲେ—ପୁନଶ୍ଚ ପିତାଙ୍କ ଆଜ୍ଞାରେ ପରଶୁରାମ କିପରି ପ୍ରାୟଶ୍ଚିତ କଲେ, ସହସ୍ରାର୍ଜୁନର ପୁତ୍ର ଆସି କିପରି ଲୁଚି ରହି ପରଶୁରାମଙ୍କ ପିତାଙ୍କର ଶିର କାଟିନେଲା, ଏଥିରେ କ୍ରୁଧ ହୋଇ ପରଶୁରାମ କିପରି ଏକୋଇଶ ବାର ପୃଥିବୀକୁ ନିକ୍ଷେତ୍ରୀ କଲେ, ତାହାପରେ ସମସ୍ତ ପୃଥ୍ୱୀକୁ ଦାନ କରି ସେ ପ୍ରଶାନ୍ତ ବନକୁ ଚାଲିଗଲେ, ଏହି ପର୍ଯ୍ୟନ୍ତ କଥା ''ଭାଗବତ କଥା''ର ଦ୍ୱାତ୍ରିଂଶ ଖଣ୍ଡ ସମାପ୍ତ ହୋଇଅଛି । ଏହାପରେ ତ୍ରୟତ୍ରିଂଶ ଖଣ୍ଡ କଥା ପ୍ରସଙ୍ଗ ଆରମ୍ଭ ହୋଇଛି ।

ତ୍ରୟତ୍ରିଂଶ ଖଣ୍ଡରେ ସର୍ବପ୍ରଥମେ ବିଶ୍ୱାମିତ୍ର ଚରିତ୍ର ରହିଛି । ସେ କିପରି ନିଜର ଭଣଜା ଶୁନଃଶେପଙ୍କୁ ଉଦ୍ଧାର କଲେ ଓ ସେ କିପରି କ୍ଷତ୍ରିୟରୁ ବ୍ରାହ୍ମଣ ହୋଇଗଲେ । ପୁନଶ୍ଚ ପୁରୁରବାଙ୍କ ଜ୍ୟେଷ୍ଠପୁତ୍ର ଆୟୁଙ୍କର ବଂଶ ବର୍ଣ୍ଣନା ଏଥିରେ କରାଯାଇଛି । ଏହି ଖଣ୍ଡରେ କୁବଳାଶ୍ୱ, ଋତଧ୍ୱଜ, ଅଲର୍କ, ରଜିରମ୍ଭ, ଅନେନା ଓ ନହୁଷ ଆଦି ରାଜାଙ୍କର ଚରିତ୍ର ବର୍ଣ୍ଣନା ହୋଇଛି । ଇନ୍ଦ୍ର ବ୍ରହ୍ମହତ୍ୟା କରିବାରୁ କିପରି ଦେବଗଣ ରାଜା ନହୁଷଙ୍କ ନିକଟକୁ ଗଲେ, ସେ କିପରି ସ୍ୱର୍ଗର ରାଜା ହେଲେ, ଇନ୍ଦ୍ରାଣୀଙ୍କ ଉପରେ ତାଙ୍କର କୁଦୃଷ୍ଟି ପଡ଼ିବାରୁ କିପରି ତାଙ୍କର ପତନ ହେଲା, ପୁନଶ୍ଚ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କ କଥା ଏଥିରେ ବର୍ଣ୍ଣିତ ହୋଇଛି । ଦେବତାମାନଙ୍କ ଅନୁମତିରେ ଗୁରୁପୁତ୍ର କଚ ଶୁକ୍ରାଚାର୍ଯ୍ୟଙ୍କଠାରୁ ମୃତସଂଜୀବନୀ ବିଦ୍ୟା ଶିଖିବାକୁ ଯିବା, ସେଠାରେ ତାଙ୍କ ସହିତ ଗୁରୁକନ୍ୟା ଦେବଯାନୀ ପ୍ରେମରେ ମିଳିତ ହେବା, ଯିବା ସମୟରେ ସେ ତାଙ୍କ ସହିତ ବିବାହ କରିବାକୁ କହିବା, କଚ ଏହା ସ୍ୱୀକାର ନ କରିବାରୁ ଉଭୟ ଶାପଶାପୀ ହେବା, ବୃଷପର୍ବାଙ୍କର କନ୍ୟା ଶର୍ମିଷ୍ଠା ଓ ଦେବଯାନୀଙ୍କ ମଧ୍ୟରେ କଳି ହେବା, ଶର୍ମିଷ୍ଠା ସର୍ବଦା ଦେବଯାନୀଙ୍କର ଦାସୀ ହୋଇ ରହିବା, ବିଧିଙ୍କ ବିଧାନରେ ଦେବଯାନୀଙ୍କର ବିବାହ ରାଜା ଯଯାତିଙ୍କ ସହିତ ହେବା, ଶର୍ମିଷ୍ଠା ମଧ୍ୟ ସଙ୍ଗରେ ଯିବା, ରାଜାଙ୍କ ଔରସରୁ ଶର୍ମିଷ୍ଠାଙ୍କର ପୁତ୍ର ହେବା, ଏଥିରେ କୁପିତ ହୋଇ ଦେବଯାନୀ ପିତ୍ରାଳୟକୁ ଚାଲିଯିବା, ଶୁକ୍ରାଚାର୍ଯ୍ୟଙ୍କ ଶାପରେ ଯଯାତିଙ୍କୁ ଜରା ଗ୍ରାସ କରିବା, ନିଜର ପୁତ୍ରମାନଙ୍କ ମଧ୍ୟରେ ସବୁଠାରୁ ସାନପୁତ୍ର ପୁରୁଙ୍କୁ ଜରା ପ୍ରଦାନ କରି ରାଜା ପୁନଃ ତାହାଠାରୁ ଯୌବନ ପ୍ରାପ୍ତ ହେବା ଓ ଶେଷରେ ତାଙ୍କର ବୈରାଗ୍ୟ ଜାତ ହେବା, ଗୃହ ତ୍ୟାଗକରି ସେ ତପସ୍ୟା କରିବାକୁ ଯିବା ଓ ପରମପଦ ଲାଭ କରିବା—ଏହି ପର୍ଯ୍ୟନ୍ତ ଦେବଯାନୀ ଓ ମହାରାଜ ଯଯାତିଙ୍କ ଚରିତ୍ର ବର୍ଣ୍ଣନା କରାଯାଇଛି । ଏବେ ପୁରୁବଂଶୀ ମହାରାଜ ଦୁଷ୍ମନ୍ତଙ୍କର ଚରିତ୍ର ଆରମ୍ଭ ହେବା ସଙ୍ଗେ ସଙ୍ଗେ ''ଭାଗବତ କଥା''ର ତ୍ରୟତ୍ରିଂଶ ଖଣ୍ଡ ସମାପ୍ତ ହୋଇଅଛି । ଏହାପରେ ଚତୁସ୍ତ୍ରିଂଶ ଖଣ୍ଡର କଥାସୂଚୀ ।

ଚତୁସ୍ତ୍ରିଂଶ ଖଣ୍ଡରେ ମହାରାଜ ଦୁଷ୍ମନ୍ତଙ୍କ କଥାକୁ କ୍ରମ ରଖାଯାଇ ସର୍ବପ୍ରଥମେ ଏହା କୁହାଯାଇଛି ଯେ, ମହାରାଜ କିପରି ବନକୁ ମୃଗୟା କରିବାକୁ ଯାଇ କଣ୍ୱାଶ୍ରମରେ ତାଙ୍କର ଶକୁନ୍ତଳାଙ୍କ ସହିତ ଭେଟ ହେଲା । ଶକୁନ୍ତଳାଙ୍କର ସଖୀଗଣ ତାଙ୍କର ମେନକା ଓ ବିଶ୍ୱାମିତ୍ରଙ୍କଠାରୁ ଉତ୍ପତ୍ତି କଥା ମହାରାଜଙ୍କୁ କହିଲେ । ଶେଷରେ ଶକୁନ୍ତଳାଙ୍କ ସହିତ ଦୁଷ୍ମନ୍ତଙ୍କର ଗାନ୍ଧର୍ବ ବିବାହ ହେଲା । ଆଶ୍ରମରେ ଶକୁନ୍ତଳା ପୁତ୍ରବତୀ ହେଲେ । କଣ୍ୱ ତାଙ୍କୁ ପତି ଗୃହକୁ ପଠାଇଦେଲେ । ତାଙ୍କର ପତି ଦୁଷ୍ମନ୍ତ ତାଙ୍କୁ ସ୍ୱୀକାର କଲେ ନାହିଁ ବରଂ ଅପମାନ ଦେଇ ବିଦା କରିଦେଲେ । ପରେ ଶୂନ୍ୟବାଣୀ ହେବାରୁ ସ୍ୱୀକାର କଲେ । ଏହି ଶକୁନ୍ତଳାଙ୍କର

ପୁତ୍ର ମହାରାଜ ଭରତ । ଏହାପରେ ଭରତବଂଶୀୟ ମହାରାଜାଙ୍କର କଥା କୁହାଯାଇଛି । ଏମାନଙ୍କ ମଧ୍ୟରେ ମହାରାଜ ରନ୍ତିଦେବଙ୍କ କଥା ଅତ୍ୟନ୍ତ ପୁଣ୍ୟପ୍ରଦ । ତାଙ୍କ ପରେ ମହାରାଜ ବୃହତ୍‌କ୍ଷେତ୍ରଙ୍କ ବଂଶର ବର୍ଣ୍ଣନା ହୋଇଛି । ତଦନନ୍ତର କୃପ ଓ କୃପୀଙ୍କ କଥା, ପାଞ୍ଚାଳଦେଶୀୟ ରାଜବଂଶ କଥା, ରାଜା ସମ୍ବରଣଙ୍କ କଥା, ତପତୀ ଓ ସମ୍ବରଣଙ୍କ ବିବାହ କିପରି ହେଲା, ମହାରାଜ ବସୁଙ୍କୁ ଉପରିଚର କାହିଁକି କୁହାଯାଏ, ଚେଦି ରାଜାମାନଙ୍କର କଥା ତଥା ମହାରାଜ ଶାନ୍ତନୁଙ୍କ କଥା ଆଦି ଅତି ଅଲୌକିକ ପ୍ରସଙ୍ଗ ଏଥିରେ ଅଛି ।

ମହାରାଜ ଶାନ୍ତନୁଙ୍କ ପୁତ୍ର ଦେବବ୍ରତଙ୍କର ନାମ ଭୀଷ୍ମ କାହିଁକି ହେଲା, ସତ୍ୟବତୀଙ୍କର ସୁତ ବିଚିତ୍ରବୀର୍ଯ୍ୟଙ୍କର ବିବାହ କାଶୀରାଜଙ୍କର କନ୍ୟାମାନଙ୍କ ସହିତ କିପରି ହେଲା, ଅମ୍ବାଙ୍କ ନିମିତ୍ତ ଭୀଷ୍ମଙ୍କୁ ପରଶୁରାମଙ୍କ ସହିତ ଯୁଦ୍ଧ କାହିଁକି କରିବାକୁ ପଡ଼ିଲା, ବିଚିତ୍ରବୀର୍ଯ୍ୟଙ୍କର କ୍ଷେତ୍ରଜ ପୁତ୍ର ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର କିପରି ହେଲେ, ପାଣ୍ଡୁଙ୍କ ପୁତ୍ର ପାଣ୍ଡବଙ୍କର ପାଳନ ଧୃତରାଷ୍ଟ୍ର କିପରି କରିଥିଲେ, ପାଣ୍ଡବଙ୍କର ଦ୍ରୌପଦୀଙ୍କ ସହିତ କିପରି ବିବାହ ହେଲା ଓ ପାଣ୍ଡବଙ୍କର କେଉଁ ପାଞ୍ଚପୁତ୍ର ଦ୍ରୌପଦୀଙ୍କଠାରୁ ଜନ୍ମ ହୋଇଥିଲେ, ଏମାନଙ୍କର ଓ ଭବିଷ୍ୟତ ବଂଶର ବର୍ଣ୍ଣନା ଏଠାରେ କରାଯାଇଛି । ଏହିପରି ପୁରୁବଂଶର କଥା ସଂକ୍ଷେପରେ କୁହାଯାଇଛି । ଏପର୍ଯ୍ୟନ୍ତ ଏଠାରେ ''ଭାଗବତ କଥା''ର ଚତୁସ୍ତ୍ରିଂଶ ଖଣ୍ଡ ସମାପ୍ତ ହେଲା । ଏବେ ପଞ୍ଚତ୍ରିଂଶ ଖଣ୍ଡର କଥାସୂଚୀ କୁହାଯିବ ।

ପଞ୍ଚତ୍ରିଂଶ ଖଣ୍ଡରେ ସର୍ବପ୍ରଥମେ ଅନୁବଂଶୀୟ ମହାରାଜ ଉଶୀନରଙ୍କର କଥା କୁହାଯାଇଛି । ପୁନଶ୍ଚ ତାଙ୍କ ପୁତ୍ର ପରମ ଦାନୀ ପୁଣ୍ୟଶ୍ଳୋକ ଶିବିଙ୍କ ଚରିତ୍ର, ଏହାପରେ ଅନୁବଂଶଙ୍କ ମହାରାଜ ବଳିଙ୍କ ସନ୍ତତିମାନଙ୍କର ବର୍ଣ୍ଣନା, ତଦନନ୍ତର ମହାରାଜ ରୋମପାଦଙ୍କ କନ୍ୟା ଶାନ୍ତାଙ୍କ କଥା । ମହାରାଜ ଦଶରଥ ନିଜର କନ୍ୟା ରାଜା ରୋମପାଦଙ୍କୁ କିପରି ପ୍ରଦାନ କରିଥିଲେ, ତାଙ୍କ ଦେଶରେ କିପରି ଅନାବୃଷ୍ଟି ହୋଇଥିଲା, ବ୍ରାହ୍ମଣମାନେ ଋଷ୍ୟଶୃଙ୍ଗ ମୁନିଙ୍କୁ ଆଣିବା ପାଇଁ ଅନୁମତି ଦେବା । ଗୋଟିଏ ବେଶ୍ୟା ନିଜର କନ୍ୟା ସହିତ ଯାଇ ଋଷିକୁମାର ଋଷ୍ୟଶୃଙ୍ଗଙ୍କୁ କୌଶଳ କରି ଆଣିବା ଓ ତାହାପରେ ମହାରାଜ ରୋମପାଦଙ୍କ ବଂଶଜଙ୍କର ବର୍ଣ୍ଣନା ଏଠାରେ କରାଯାଇଛି । ଏହାପରେ ଦ୍ରୁହ୍ୟୁ ଓ ତୁର୍ବସୁ ଏହି ଦୁଇ ଯଯାତି ପୁତ୍ରଙ୍କ ବଂଶଜଙ୍କ ବର୍ଣ୍ଣନା ସଂକ୍ଷେପରେ କରାଯାଇ ତାହାପରେ ଯଯାତିଙ୍କ ଜ୍ୟେଷ୍ଠପୁତ୍ର ଯଦୁଙ୍କର ବଂଶ ବର୍ଣ୍ଣନା କରାଯାଇଛି । ଏହି ବଂଶରେ ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଜନ୍ମ ହୋଇଥିଲା ।

ଯଦୁବଂଶ ବର୍ଣ୍ଣନାରେ ମହାଯୋଗୀ ମହାରାଜ ଶଶବିନ୍ଦୁଙ୍କ କଥା ରହିଛି । ଏହାପରେ ଜ୍ୟାମଘ ତଥା ବୃଷ୍ଣି ଓ ତାଙ୍କ ବଂଶଜଙ୍କ କଥା କୁହାଯାଇଛି । ଉଗ୍ରସେନ ମହାରାଜଙ୍କ ପର୍ଯ୍ୟନ୍ତ ବଂଶ ବର୍ଣ୍ଣନା କରାଯାଇ ଏହାପରେ କୁହାଯାଇଛି ଯେ, ଉଗ୍ରସେନଙ୍କ ପୁତ୍ର କଂସ କିପରି ଜନ୍ମ ହେଲା, ସେ ପୂର୍ବଜନ୍ମରେ କିପରି କାଳନେମି ଅସୁର ଥିଲା । ଏହି ବଂଶରେ ଶୂର ଓ ବସୁଦେବ ଜନ୍ମ ହୋଇଥିଲେ । ବସୁଦେବ ଓ ତାଙ୍କ ଭାଇ ଭଉଣୀଙ୍କ ସନ୍ତାନ ସନ୍ତତି ବିଷୟ କୁହାଯାଇ ଏଠାରେ ଶେଷକୁ ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣଙ୍କର ଜନ୍ମ ବୃତ୍ତାନ୍ତର ସଙ୍କେତ ଏଠାରେ ଦିଆଯାଇଛି । ରାଜା ପରୀକ୍ଷିତଙ୍କୁ ଆକୃଷ୍ଟ କରିବା ପାଇଁ ''ଶ୍ରୀକୃଷ୍ଣ ରୂପସୁଧା'' ବର୍ଣ୍ଣନା କରାଯାଇଛି ।

ସୂର୍ଯ୍ୟବଂଶର ଏତେବଡ଼ ବଂଶାବଳୀରେ ସୀତାପତି ଶ୍ରୀରାଘବେନ୍ଦ୍ର ଅବତୀର୍ଣ୍ଣ ହେବା କଥା ଭଳି ଏଠାରେ ଚନ୍ଦ୍ରବଂଶର ବିଶଦ ଆଲୋଚନା କରାଯାଇ ଏଥିରେ ଯଦୁକୁଳ-ତିଳକ ବୃଷ୍ଣିବଂଶାବତଂସ ଭଗବାନ ବାସୁଦେବଙ୍କ କଥା କୁହାଯାଇଛି ।

ସୂତ କହିଲେ—''ମୁନିଗଣ ! ମୁଁ ଏହିପରି 'ଭାଗବତ କଥା'ର ପଞ୍ଚତ୍ରିଂଶ ଖଣ୍ଡରେ ଥିବା ବିଷୟ ସୂଚୀ ଆପଣମାନଙ୍କୁ କହିଲି । ପଞ୍ଚତ୍ରିଂଶ ଖଣ୍ଡରେ ଚତୁର୍ଥାହ ସମାପ୍ତ ହୋଇଛି ।

ଏବେ ଷଡ୍‌ତ୍ରିଂଶ ଖଣ୍ଡରେ ଯେପରି ପଞ୍ଚମାହର କଥା ଆରମ୍ଭ ହୋଇଛି ଓ ସେଥିରେ ଭଗବାନଙ୍କର ଯେପରି ମଧୁରାତିମଧୁର ବାଲଲୀଳା ବର୍ଣ୍ଣିତ ହୋଇଛି, ସେହି ବିଷୟ ସୂଚୀ ମୁଁ ଏବେ କହିବି । ଆପଣମାନେ ସଦୟ ହୋଇ ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ନିମିକୋ କହିକେଂ ବଂଶ କଥା ଦଣ୍ଡକକୀ ଭାଖୀ ।
ଚନ୍ଦ୍ରବଂଶ ପୁନି କହ୍ୟୋ ଉରବଶୀ ଇଲ ସୁତ ରାଖୀ ।
ପରଶୁରାମ ଅବତାର ଏକ କୋ ବଂଶ ସୁନାୟୋ ।
ନୃପ ଯଯାତି କୋ ଚରିତ ପୁରାନନି ମେଂ ଜୋ ଗୟୋ ॥
ପୁରୁ ଅନୁ ଆଦି ଯଯାତି ସୁତ, ବଂଶ କହ୍ୟୋ ଯଦୁବଂଶ ପୁନି ।
ଚତୁର୍ଥାହ ପୂରନ ଭୟୋ, ପଞ୍ଚମାହ ଅବ ସୁନହୁ ମୁନି ॥



# ପଞ୍ଚମାହର ବିଷୟ ସୂଚୀ (ପ୍ରଥମ)

**ଯତ୍ରାବତୀର୍ଣ୍ଣୋ ଭଗବାନ୍ କୃଷ୍ଣାଖ୍ୟୋ ଜଗଦୀଶ୍ୱରଃ ।**
**ବସୁଦେବଗୃହେ ଜନ୍ମ ତତୋ ବୃଦ୍ଧିଶ୍ଚ ଗୋକୁଲେ ॥** ☆

(ଶ୍ରୀ ଭା: ୧୨ସ୍କ: ୧୨ଅ: ୨୭ଶ୍ଳୋକ)

ଷଟ୍‌ପଦୀ

ପଞ୍ଚମାହ ମେ ପ୍ରଥମ ବ୍ୟାହ ବସୁଦେବ ବଖାନ୍ୟୋ ।
ନଭବନୀ ତେଂ କଂସ ଦେବକୀ ସୁତ ରିପୁ ଜାନ୍ୟୋ ॥
ଚିନ୍ତା ବ୍ୟାପୀ କଂସ କୃଷ୍ଣ ଅବତାର କହ୍ୟୋ ହୈଂ ।
ଗୋକୁଲ ମେଂ ପ୍ରଭୁ ଗୟେ ତହାଁ ଆନନ୍ଦ ଭୟୋ ହୈଂ ॥
ଆଇ ପୂତନା ବିଷ ଦୟୋ, ମରୀ ବକୀକୁଁ ଗତି ଦଈ ।
କହୀ କଥା ଶକଟାଦି ତୃନ, ମୁକ୍ତି ଖଲନିକୁଁ ଜ୍ୟୋଂ ଭଈ ॥

ଶ୍ରୀଭାଗବତରେ ଶ୍ରୀକୃଷ୍ଣ ଚରିତକୁ ହିଁ ଅନେକ ରୂପରେ କୁହାଯାଇଛି । ଭାଗବତର ସିଦ୍ଧାନ୍ତ ହେଉଛି, ଅନ୍ୟ ଯେତେ ଅବତାର ଅଛନ୍ତି ତନ୍ମଧ୍ୟରୁ କେହି ଅଂଶାବତାର, କେହି କଳାବତାର ଓ କେହି ଆବେଶାବତାର ଇତ୍ୟାଦି । କିନ୍ତୁ ଶ୍ରୀକୃଷ୍ଣ ସ୍ୱୟଂ ସାକ୍ଷାତ୍ ପରଂବ୍ରହ୍ମ ।

---

☆ ଅଷ୍ଟମ ଗର୍ଭେ ବିଷ୍ଣୁ ଜାତ । ଯେ କୃଷ୍ଣ ବଇକୁଣ୍ଠ ନାଥ ॥
ବସୁଦେବ ଯେ ସ୍ତୁତି କଲେ । ତାଙ୍କୁ ଶ୍ରୀକୃଷ୍ଣ ଆଜ୍ଞା ଦେଲେ ॥
କୃଷ୍ଣଙ୍କୁ ବସୁଦେବ ନେଇ । ଗୋପରେ ଛାଡ଼ିଣ ଆସଇ ॥
କୃଷ୍ଣ ପ୍ରବେଶ ନନ୍ଦଘରେ । ଉତ୍ସବ କଲେ ଗୋପପୁରେ ॥

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ସେ ଅବତାର ନୁହନ୍ତି, ଅବତାରୀ । ସମସ୍ତ ଅବତାରଙ୍କର ଉଦ୍‌ଗମ ସ୍ଥାନ ଅଛି । ଅଂଶ ଓ ଅଂଶୀଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ତେଣୁ ଯେତେ ଅବତାରଙ୍କ ଚରିତ ରହିଛି, ସେସବୁ ହିଁ ଶ୍ରୀକୃଷ୍ଣଙ୍କର ଚରିତ । ଭାଗବତରେ ମଧ୍ୟ ସେଗୁଡ଼ିକୁ ଶ୍ରୀକୃଷ୍ଣ-ଚରିତ ନାମରେ ନାମିତ କରାଯାଇଛି । ଏଥିପାଇଁ ସଂହିତାକାରଙ୍କୁ ଯେତେବେଳେ ଅବସର ମିଳିଛି, ସେତେବେଳେ ସେ ଶ୍ରୀକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରିଛନ୍ତି । ବିଷୟ ସୂଚୀ ବର୍ଣ୍ଣନାରେ ମଧ୍ୟ ଯେତେ ଅଧିକ ବିସ୍ତାର ଦଶମ ସ୍କନ୍ଧରେ କରାଯାଇଛି, ସେତେ ଅଧିକ ଅନ୍ୟ କୌଣସି ସ୍କନ୍ଧରେ କରାଯାଇ ନାହିଁ । କାରଣ ଦଶମ ସ୍କନ୍ଧର ବିଶୁଦ୍ଧି ଯୋଗୁ ହିଁ ଅନ୍ୟ ସ୍କନ୍ଧରେ ବର୍ଣ୍ଣିତ ହୋଇଛି ।

ସୂତ କହିଲେ—"ମୁନିଗଣ ! ମୁଁ ଏବେ ଆପଣମାନଙ୍କୁ ପଞ୍ଚମାହର ବିଷୟ ସୂଚୀ କହୁଛି । 'ଭାଗବତ କଥା'ର ପଞ୍ଚତ୍ରିଂଶ ଖଣ୍ଡ ପର୍ଯ୍ୟନ୍ତ ଚତୁର୍ଥାହର କଥା । ଷଡ୍‌ତ୍ରିଂଶ ଖଣ୍ଡର ଆରମ୍ଭରେ ହିଁ ଶ୍ରୀକୃଷ୍ଣ ଚରିତ ଆରମ୍ଭ ହୋଇଅଛି । ସର୍ବପ୍ରଥମେ ମହାରାଜ ପରୀକ୍ଷିତ ଶ୍ରୀଶୁକଦେବଙ୍କୁ ଶ୍ରୀକୃଷ୍ଣ ଚରିତ ସମ୍ବନ୍ଧୀୟ ପ୍ରଶ୍ନ ପଚାରିଛନ୍ତି ଓ ଶ୍ରୀକୃଷ୍ଣ କଥା ତାଙ୍କଠାରୁ ଶ୍ରବଣରେ ଅତ୍ୟନ୍ତ ଆନନ୍ଦିତ ହୋଇଛନ୍ତି । ମାନବ ଶରୀରର ସାର୍ଥକତା ବିଷୟ ଏଥିରେ ତାଙ୍କୁ କୁହାଯାଇଛି । ଶୁକଦେବ ତାଙ୍କୁ ଅବତାରର ତତ୍ତ୍ୱ ଓ ପ୍ରୟୋଜନ ବିଷୟରେ ମଧ୍ୟ ବୁଝାଇଛନ୍ତି । ଏଠାରେ ଅବତାର କଥା ଆରମ୍ଭ ହୋଇଛି । ଦେବତାମାନଙ୍କୁ ସଙ୍ଗରେ ନେଇ ପୃଥ୍ୱୀ ଭଗବାନଙ୍କ ନିକଟକୁ ଯାଇଛନ୍ତି । ଭଗବାନ ସେମାନଙ୍କୁ ଆଶ୍ୱାସନା ଦେଇ ବସୁଦେବଙ୍କ ଘରେ ଅବତୀର୍ଣ୍ଣ ହେବେ ବୋଲି କହିଛନ୍ତି । ଏହି ପ୍ରକାର ଭୂମିକା ପ୍ରସ୍ତୁତ କରାଯାଇ ବସୁଦେବଙ୍କ ଚର୍ଚ୍ଚା ଆରମ୍ଭ ହୋଇଛି ।

ବସୁଦେବ ଦେବକୀଙ୍କ ସହିତ ବିବାହ ପରେ ତାଙ୍କୁ ବିଦାୟ ଦେବା ପାଇଁ କଂସ ସଙ୍ଗରେ ଆସୁଥିବା ସମୟରେ ତାଙ୍କୁ ଶୂନ୍ୟବାଣୀ ହେଲା ଯେ, ଏହାର ଅଷ୍ଟମ ପୁତ୍ର ତୋତେ ମାରିବ । କଂସ ନିଜର ଭଉଣୀ ଦେବକୀଙ୍କୁ ମାରିଦେବା ପାଇଁ ଉଦ୍ୟତ ହେବାରୁ ବସୁଦେବ ତାକୁ ସବୁ ପୁତ୍ର ଦେଇଦେବାକୁ ପ୍ରତିଜ୍ଞା କଲେ ଓ ଦେବକୀଙ୍କୁ କଂସ ହାତରୁ ଉଦ୍ଧାର କରି ଘରକୁ ଆଣିଲେ । ସର୍ବଦା ପୁତ୍ର ହେବା ମାତ୍ରେ ତାଙ୍କୁ କଂସ ନେଇ ମାରିଦିଏ । କଂସର ପାପ ବଢ଼ାଇବା ପାଇଁ ନାରଦ ତାକୁ ମଧ୍ୟ ପ୍ରବର୍ତ୍ତାଇ ଥାଆନ୍ତି । ଶିଶୁଙ୍କୁ ନେଇ ସେ ଶିଳାରେ କଚାଡ଼ି ମାରୁଥିଲା । କଂସ ନିଜର ପିତାଙ୍କୁ ବନ୍ଦୀକରି ସ୍ୱୟଂ ରାଜା ହେଲା । ତେଣେ ଗୋକୁଳରେ ରୋହିଣୀଙ୍କ ଗର୍ଭରୁ ଶେଷାବତାର ବଳଦେବ ଅବତୀର୍ଣ୍ଣ ହୋଇଥାଆନ୍ତି । ଏଣେ ବସୁଦେବଙ୍କ ଅନ୍ତଃକରଣରେ ପରମେଶ ପ୍ରଭୁ ପ୍ରବେଶ କରିଥାଆନ୍ତି । ଅଷ୍ଟମ ଗର୍ଭରେ ପ୍ରଭୁ ଦେବକୀ ଗର୍ଭରେ ପ୍ରବେଶ କଲେ । ଦେବକୀଙ୍କୁ ଗର୍ଭବତୀ ଦେଖି କଂସ ଚିନ୍ତିତ ହେଲା । ଦେବଗଣ ଆସି ଗର୍ଭଗତ ବିଷ୍ଣୁଙ୍କୁ ସ୍ତୁତି କଲେ । ଭଗବାନ ଚତୁର୍ଭୁଜ ରୂପରେ ମଥୁରାରେ ଜନ୍ମ ହେଲେ । ମାତା ଦେବକୀ ଓ ପିତା ବସୁଦେବ ଭଗବାନଙ୍କୁ ସ୍ତୁତି କଲେ । କଂସଠାରୁ ଅଭୟ ପ୍ରାପ୍ତହେବା ପାଇଁ ସେ ପ୍ରାର୍ଥନା କଲେ । ଭଗବାନଙ୍କ ଆଜ୍ଞାରେ ବସୁଦେବ ତାଙ୍କୁ ଗୋକୁଳକୁ ନେଇଗଲେ ।

ଏଣେ ଯୋଗମାୟା ଯଶୋଦାଙ୍କଠାରୁ ଜନ୍ମ ହୋଇଥାଆନ୍ତି । ନିଦ୍ରିତାବସ୍ଥାରେ ବସୁଦେବ ତାଙ୍କ କୋଳରେ ପୁତ୍ରକୁ ରଖି କନ୍ୟାକୁ ନେଇ ଆସିଲେ । କନ୍ୟାକୁ ଆଣି ସେ ପୂର୍ବପରି କାରାବାସରେ ରହିଲେ ଓ ଦେବକୀଙ୍କ କୋଳରେ କନ୍ୟାକୁ ଦେଲେ । କଂସ ଆସି ସେହି କନ୍ୟାକୁ ନେଇ ଶିଳା ଉପରେ କଚାଡ଼ି ଦେଲା । କିନ୍ତୁ ସେହି ବିଜୁଳି କନ୍ୟା ଆକାଶକୁ ଚାଲିଯାଇ କହିଲା—"ରେ କଂସ ! ତୋତେ ମାରିବାବାଲା ଅନ୍ୟଠାରେ ଜନ୍ମ ନେଇ ସାରିଲେଣି ।" ଏପରି ଭବିଷ୍ୟତବାଣୀ କହି ଯୋଗମାୟା ଅନ୍ତର୍ଦ୍ଧାନ ହୋଇଗଲେ । କଂସ ବସୁଦେବ ଓ ଦେବକୀଙ୍କୁ କାରାଗାରରୁ ମୁକ୍ତ କରିଦେଲା । ଏହି ପର୍ଯ୍ୟନ୍ତ କଥା "ଭାଗବତ କଥା"ର ଷଡ୍‌ତ୍ରିଂଶ ଖଣ୍ଡରେ କୁହାଯାଇଛି । ଏହାପରେ ସପ୍ତତ୍ରିଂଶ ଖଣ୍ଡର କଥା ଆରମ୍ଭ ହୋଇଛି ।

ସପ୍ତତ୍ରିଂଶ ଖଣ୍ଡରେ ସର୍ବପ୍ରଥମେ କ୍ଳେଶିତ କଂସକୁ କୁଟିଳ ମନ୍ତ୍ରୀଗଣ କ୍ରୂରକର୍ମ କରିବାର କୁମନ୍ତ୍ରଣା ଦେବା, ସେ ପ୍ରଥମେ ଶତ୍ରୁ ଅନ୍ୱେଷଣରେ ପୂତନା, ଅଘାସୁର, ବକାସୁର ଆଦି ଅସୁରଙ୍କୁ ପଠାଇବା, ଏଣେ ନନ୍ଦରାଜାଙ୍କ ଘରେ ପୁତ୍ରଜନ୍ମ କାରଣରୁ ଆନନ୍ଦ ଉତ୍ସବ ହେବା, ନନ୍ଦଲାଲାଙ୍କ ଜାତକର୍ମ ଆଦି ସଂସ୍କାର କରାଯିବା, ବିପ୍ରମାନଙ୍କୁ ବିଭିନ୍ନ ପ୍ରକାର ଦାନ ଦିଆଯିବା, ଉଦାରମନା ନନ୍ଦ ସମସ୍ତ ଦାନ କରି ନିଜର ଧନକୁ ସାର୍ଥକ କରିବା, ସମସ୍ତଙ୍କୁ ସମ୍ମାନିତ କରିବା ଓ ସତ୍କାର କରିବା ଆଦି କାର୍ଯ୍ୟରେ ସମସ୍ତେ ବ୍ୟସ୍ତ ଥାଆନ୍ତି । ବ୍ରଜମଣ୍ଡଳରେ ମହା ମହୋତ୍ସବ ଚାଲିଥାଏ । ବ୍ରଜମଣ୍ଡଳ ମୁଖରିତ ହୋଇଉଠୁଥାଏ ।

ଯେତେବେଳେ ଶ୍ରୀକୃଷ୍ଣ ଛଅଦିନର ହୋଇଗଲେ, ସେଦିନ ତାଙ୍କର ଷଷ୍ଠୀ ଉତ୍ସବ ପାଳିତ ହେଲା । ଷଷ୍ଠୀ ଉତ୍ସବ ଦିନ ନନ୍ଦ ବାର୍ଷିକ କର ସ୍ୱରୂପ କଂସ ନିକଟକୁ କସାର, ସାକର, ଲବଣି ଆଦି ନେଇ ଦେବାପରେ ବସୁଦେବଙ୍କ ସହିତ ତାଙ୍କର ଭେଟ ହେଲା । ବସୁଦେବଙ୍କ ସହିତ କୁଶଳ ଆଳାପ ଆଦି କରି ନନ୍ଦ ବ୍ରଜକୁ ଫେରି ଆସିଲେ । ଏଣେ ଶ୍ରୀକୃଷ୍ଣଙ୍କୁ ନିଜ କ୍ଷୀରପାନ କରାଇ ବିଷଦେଇ ମାରି ଦେବାକୁ ମାଉସୀ ପୂତନା ସେଦିନ ବ୍ରଜକୁ ଆସିଥାଏ । ସେ ଛଦ୍ମବେଶରେ ନନ୍ଦରାଜାଙ୍କ ପୁରୀରେ ପ୍ରବେଶ କରି ଶ୍ରୀକୃଷ୍ଣଙ୍କ ମୁଖରେ କ୍ଷୀର ଦେବା ମାତ୍ରେ ସେହି ପ୍ରତାରିକା ପୂତନାର ପ୍ରାଣକୁ ସେ କ୍ଷୀର ସହିତ ଶୋଷିନେଲେ ।

ଏହି ସମୟରେ ଶ୍ରୀକୃଷ୍ଣ ତାଙ୍କର ପ୍ରକୃତ ରୂପ ତାଙ୍କୁ ଦର୍ଶନ କରାଇ ପରମପଦ ପ୍ରଦାନ କଲେ । ଜଗତର ରକ୍ଷାକର୍ତ୍ତା ଗୋପ-ଗୋପୀଙ୍କୁ ରକ୍ଷା କଲେ । ଏଣେ ନନ୍ଦରାଜା ଓ ଗୋପଗଣ ମଥୁରାରୁ ଫେରି ପୂତନାର ବିରାଟ ମୃତଶରୀରକୁ ଦେଖି ତାକୁ ନେଇ ପୋଡ଼ି ପକାଇଲେ । ଏହି ପର୍ଯ୍ୟନ୍ତ ପୂତନା ମୋକ୍ଷ କଥା କୁହାଯାଇଛି ।

ଏହାପରେ ଶ୍ରୀକୃଷ୍ଣଙ୍କର ଜନ୍ମନକ୍ଷତ୍ର ମହୋତ୍ସବ କଥା କୁହାଯାଇଛି । ଏଥିସହିତ ବକାସୁର ଆଦିଙ୍କ ବଧ, ତୃଣାବର୍ତ୍ତ ବଧ, ଯଶୋଦାଙ୍କର ବିଶ୍ୱରୂପ ଦର୍ଶନ ଆଦି କଥା ସପ୍ତତ୍ରିଂଶ ଖଣ୍ଡରେ କୁହାଯାଇଛି । ଅଷ୍ଟତ୍ରିଂଶ ଖଣ୍ଡରେ ଶ୍ରୀକୃଷ୍ଣ ଓ ବଳରାମଙ୍କର ନାମକରଣ ସଂସ୍କାର । ମାତାମାନଙ୍କର କାହ୍ନୁଆ, ବଳିଆ ନାମ ପ୍ରଦାନ, ଉଭୟଙ୍କର ବାଳଲୀଳା ପ୍ରସଙ୍ଗ, ଗୋପିକାଗଣଙ୍କର ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ପ୍ରସଙ୍ଗରେ ଅଭିଯୋଗ, ଶ୍ରୀକୃଷ୍ଣଙ୍କ ଲବଣି ଚୋରି ଆଦି ଉତ୍ପାତକୁ ଯଶୋଦାଙ୍କ ନିକଟରେ ଗୋପିମାନେ ପ୍ରମାଣିତ ନ କରିପାରି ଦୁଃଖିତ ହେବା । ମା'ଙ୍କ ମନରେ ମଧ୍ୟ ଲବଣି ଚୋରି ଆଦି ଲୀଳା ଦର୍ଶନ କରିବାର ଇଚ୍ଛା ଜାତ ହେବା । ତେଣୁ ଦାମୋଦର ଲୀଳାର ଶ୍ରୀଗଣେଶ ହେବା । ଯଶୋଦାଙ୍କର ଦଧିମନ୍ଥନ, ଶ୍ରୀକୃଷ୍ଣଙ୍କର ସେହି ସମୟରେ ଦଧିଭାଣ୍ଡରୁ ଲବଣି ନେଇ ପଳାୟନ ଓ ପରେ ମାତାଙ୍କ ନିକଟକୁ ଆଗମନ । ମାତାଙ୍କଦ୍ୱାରା ଉଦୂଖଳରେ ତାଙ୍କର ବନ୍ଧନ । ବୃକ୍ଷବନରେ ନଳକୁବେର ଓ ମଣିଗ୍ରୀବ ଏ ଦୁଇ କୁବେର ପୁତ୍ରଙ୍କର ଉଦ୍ଧାର ଆଦି ଲୀଳାର ବର୍ଣ୍ଣନା କରାଯାଇ ଏହି ଅଷ୍ଟତ୍ରିଂଶ ଖଣ୍ଡର ସମାପ୍ତ ହୋଇଛି । ଏବେ ଊନଚାଳିଶ ଖଣ୍ଡର କଥାସୂଚୀ କୁହାଯିବ ।

ଊନଚାଳିଶ ଖଣ୍ଡରେ ସର୍ବପ୍ରଥମେ ଫଳବିକାଳି ସ୍ତ୍ରୀଲୋକ ଉପରେ କୃପା ପ୍ରଦର୍ଶନ, କୃଷ୍ଣ ଓ ବଳରାମଙ୍କର କଳିତ କ୍ରୀଡ଼ା ପ୍ରସଙ୍ଗ, ଗୋପଗଣଙ୍କର ଗୋକୁଳ ପରିତ୍ୟାଗ ଓ ବୃନ୍ଦାବନବାସ ଲୀଳାରେ ବୃନ୍ଦାବନବିହାରୀଙ୍କର ବଂଶୀ ବାଂସୁରୀ ଲାଭ, ବନ ମଧ୍ୟରେ ଗୋପବାଳକମାନଙ୍କ ସହିତ ଖେଳୁଥିବା ସମୟରେ ବତ୍ସାସୁର ଓ ବକାସୁର ଆଦି ଅସୁରଙ୍କର ବଧ । ସେଠାରେ ବାଳକମାନଙ୍କ ସହିତ ବିଚିତ୍ର ଖେଳ ଓ ବିନୋଦର ବର୍ଣ୍ଣନା, ଏହିପରି ବ୍ରଜବାସୀ ବାଳକମାନଙ୍କର ସୌଭାଗ୍ୟର ବର୍ଣ୍ଣନା ପରେ ଅଘାସୁରର ଉତ୍ପାତ କଥା ଆରମ୍ଭ ହୋଇଛି । ଶ୍ରୀକୃଷ୍ଣ ଅଘାସୁରକୁ ମାରି ଗୋପବାଳକ ଓ ବତ୍ସାମାନଙ୍କୁ ରକ୍ଷା କରିବା ।

ଏହାପରେ ପରୀକ୍ଷିତଙ୍କର ଶଙ୍କା ଓ ଶ୍ରୀଶୁକଦେବଙ୍କଦ୍ୱାରା ତାହାର ସମାଧାନ । ଏହାପରେ ବ୍ରହ୍ମାଙ୍କର ମୋହ ପ୍ରସଙ୍ଗ ଆରମ୍ଭ ହୋଇଛି ।

ବ୍ରହ୍ମା ଗୋପବାଳକ ଓ ବତ୍ସାମାନଙ୍କୁ ହରଣ କରିନେଇ ଲୁଚାଇ ରଖିବା ପରେ ଶ୍ରୀକୃଷ୍ଣ ପୁନଶ୍ଚ ସେହିପରି ରୂପ, ରଙ୍ଗ ଓ ବୟସ ବିଶିଷ୍ଟ ସେତିକି ସଂଖ୍ୟକ ଗୋପବାଳକ ଓ ବତ୍ସା ସୃଷ୍ଟି କରିବାର ଦେଖି ବ୍ରହ୍ମା ଲଜ୍ଜିତ ହେବା—କାରଣ ଶ୍ରୀକୃଷ୍ଣ ନିଜେ ହିଁ ସେହି ଗୋପବାଳକ ଓ ବତ୍ସା ରୂପ ଧାରଣ କରିଥିଲେ ଓ ''ସର୍ବଂ ବିଷ୍ଣୁମୟଂ ଜଗତ୍'' ଏହି ବାକ୍ୟକୁ ପ୍ରତ୍ୟକ୍ଷ ପ୍ରମାଣିତ କରିଥିଲେ । ବଳଦେବଙ୍କଦ୍ୱାରା ଏହି ରହସ୍ୟ ଉଦ୍‌ଘାଟିତ ହେବାରୁ ବ୍ରହ୍ମା ଶ୍ରୀକୃଷ୍ଣଙ୍କର ଅପାର ମହିମାର ପ୍ରମାଣ ପାଇଲେ । ତାଙ୍କର ମୋହ ଦୂର ହେଲା । ଏହାପରେ ଦୁଇ ଅଧ୍ୟାୟରେ ଗୋଚାରଣ ଲୀଳା ପ୍ରସଙ୍ଗ କୁହାଯାଇ ଊନଚାଳିଶ ଖଣ୍ଡର କଥା ସମାପ୍ତ କରାଯାଇଛି । ଏବେ ''ଭାଗବତ କଥା''ର ଚାଳିଶ ଖଣ୍ଡରେ ଥିବା କଥାମାନ କୁହାଯାଇଛି ।

ଚାଳିଶ ଖଣ୍ଡରେ ପ୍ରଥମେ ଶ୍ରୀହରିଙ୍କର ପୌଗଣ୍ଡାବସ୍ଥାର କେତେକ କମନୀୟ କ୍ରୀଡ଼ା ବର୍ଣ୍ଣନା କରାଯାଇ ତା'ପରେ ଧେନୁକାସୁର ବଧ ଓ ତାହାର ପୂର୍ବଜନ୍ମ ବୃତ୍ତାନ୍ତ, କାଳୀୟ ଦଳନର କରୁଣ କାହାଣୀ, କାଳୀୟ ନାଗର ବୃନ୍ଦାବନକୁ ଆଗମନ ବୃତ୍ତାନ୍ତ, କାଳୀୟ ନାଗ ଦମନ ଲୀଳା ସମୟରେ ବ୍ରଜବାସୀମାନଙ୍କର କାଳନ୍ଦୀ ହ୍ରଦ ନିକଟକୁ ଆଗମନ ଓ କ୍ରନ୍ଦନ—ଶ୍ରୀକୃଷ୍ଣଙ୍କର କାଳୀୟ ନାଗ ଉପରେ ନୃତ୍ୟ ଓ କାଳୀୟ ନାଗର ବିପତ୍ତି ଦେଖି ନାଗପତ୍ନୀମାନଙ୍କର ବିଳାପ, ଶ୍ରୀକୃଷ୍ଣଙ୍କର ସେମାନଙ୍କୁ ଅଭୟ ଦାନ, ନିଜର ପାଦୁକା ଚିହ୍ନକୁ କାଳୀୟ ନାଗର ଶିରରେ ଚିରଦିନ ପାଇଁ ଧାରଣ ଓ ବ୍ରଜରୁ କାଳୀୟକୁ ଅନ୍ୟତ୍ର ପ୍ରେରଣ—ବ୍ରଜବାସୀଙ୍କର ଏଥିରେ ପ୍ରସନ୍ନତା ଓ ସେଠାରେ ରାତ୍ରିନିବାସ—ରାତ୍ରକାଳରେ ବନରେ ଦାବାଗ୍ନି ଉତ୍ପାତ ଓ ବନ ଭସ୍ମୀଭୂତ ହେବାକୁ ଯାଉଥିବାର ଦେଖି ଶ୍ରୀକୃଷ୍ଣଙ୍କର ଦାବାନଳ ଶୋଷଣ ଆଦି କଥା ଏଥିରେ ବର୍ଣ୍ଣିତ ହୋଇଛି ।

ସୂତ କହିଲେ—''ମୁନିଗଣ ! 'ଭାଗବତ କଥା'ର ଶ୍ରୀକୃଷ୍ଣ ଚରିତ୍ରକୁ ବିସ୍ତାରିତ ଭାବରେ ଲେଖା ଯାଇଛି । ତେଣୁ ମୁଁ ଏହାର ସୂଚୀକୁ ମଧ୍ୟ ବିସ୍ତାରିତ ଭାବରେ କହିବି । ଭଗବାନ ନିଜର ସଖା ଗୋପବାଳକମାନଙ୍କ ସହିତ ବିଭିନ୍ନ ପ୍ରକାର ଖେଳ ଖେଳୁଥିଲେ । ଏହି ଖେଳୁଥିବା ସମୟରେ ଖେଳରେ ଖେଳରେ ହିଁ ପ୍ରଲମ୍ବାସୁରକୁ ଉଦ୍ଧାର କରିଥିଲେ । ସେହି ପ୍ରଲମ୍ବାସୁର ଉଦ୍ଧାର କଥା ସୂଚୀ ମୁଁ ଆପଣମାନଙ୍କୁ କହିବି । ଏହି ପର୍ଯ୍ୟନ୍ତ ପଞ୍ଚମାହର ବିଷୟ ସୂଚୀକୁ ମୁଁ ତିନି ଅଧ୍ୟାୟରେ ବିଭକ୍ତ କରି ଆପଣମାନଙ୍କୁ କହୁଅଛି ।''

## ଷଟ୍‌ପଦୀ

ବିଶ୍ୱରୂପ ମାଁ ଦରଶ ବାଲଲୀଲା ମୃଦଭକ୍ଷନ ।
ମାଖନ ଚୋରୀ ଲଲିତ ବଁଧେ ଦ୍ୱୋ ନଟଖଟ ମୋହନ ।।
ଗୋକୁଲ ଗୋପନି ସଂଗ ତ୍ୟାଗି ବୃନ୍ଦାବନ ଆୟେ ।
ଜରେ ଖେଲ ବଜ, ବସ୍ତ, ଅସୁର ଅଘ ମାରି ଗିରାୟେ ।।
ବ୍ରହ୍ମାଜୀ ମୋହିତ ଭୟେ, ଧେନୁଜ କାଳିୟ କୀ କଥା ।
ନାଗ ନିକାର୍‌ୟୋ ନାଥି ଜେଂ, ଦାବାନଲ ପୀୟୋ ଯଥା ।।



# ପଞ୍ଚମାହର ବିଷୟ ସୂଚୀ (ଦ୍ୱିତୀୟ)

ବ୍ରତଚର୍ଯ୍ୟା ତୁ କନ୍ୟାନାଂ ଯତ୍ର ତୁଷ୍ଟୋଽଚ୍ୟୁତୋ ବ୍ରତୈଃ ।
ପ୍ରସାଦୋ ଯଜ୍ଞପତ୍ନୀଭ୍ୟୋ ବିପ୍ରାଣାଂ ଚାନୁତାପନମ୍ ॥ ☆
(ଶ୍ରୀ ଭା: ୧୨ସ୍କ: ୧୨ଅ: ୩୧ଶ୍ଳୋକ)

ଷଟ୍‌ପଦୀ

ପୁନି ପ୍ରଲମ୍ବ ଜୀ ମୋକ୍ଷ ବେନୁ କୋ ଗୀତ ମନୋହର ।
ବସ୍ତ୍ର ପୁରାୟେ ଦୟେ କୁମାରିନୀ କୁଁ ବର ସୁଖକର ॥
ଦ୍ୱିଜ ପତିନିନି ପୈ କୃପା ଶ୍ୟାମ ଗୋବରଧନ ଧାର୍‌ୟୋ ।
ଇନ୍ଦ୍ର, ସୁରଭି ଅରୁ ବରୁନ ସବନି ଦରଶନ ତେଂ ତାର୍‌ୟୋ ॥
ଫେରି ରାମ ଇଚ୍ଛା ଭଇ, ବେନୁ ବଜାଇ ଉସଭରୀ ।
ବ୍ରଜ ବନିତା ଧୁନି ସୁନି ଚଲୀ, କଛୁ ନ ଜାନି କୁଲ କୀ ଜରୀ ॥

ମନୁଷ୍ୟ ବୃଥାରେ ବହୁତ କଥା କହେ । ଯଦି ସେ କୃଷ୍ଣକଥାକୁ ହିଁ ବାଣୀରେ କହନ୍ତା, ଶ୍ରୀକୃଷ୍ଣଙ୍କର ମଙ୍ଗଳମୟ ମଧୁମୟ ମନୋହର ନାମକୁ ଉଚ୍ଚାରଣ କରନ୍ତା, କର୍ଣ୍ଣରେ କମନୀୟ କୃଷ୍ଣକଥା ଶ୍ରବଣ କରନ୍ତା, ତାହାହେଲେ ତାକୁ ଭବସାଗରରେ ନିରାଶ୍ରୟ ହେବାକୁ ପଡ଼ନ୍ତା ନାହିଁ । ପୁରାଣ ଆଦି ଶାସ୍ତ୍ରର ବିଶେଷତ୍ୱ ହେଉଛି ଏଥିରେ ସର୍ବତ୍ର ବିଭିନ୍ନ ପ୍ରକାରର ଶ୍ରୀକୃଷ୍ଣଙ୍କର କଥା ହିଁ ବର୍ଣ୍ଣିତ ହୋଇଛି । ଶ୍ରୀକୃଷ୍ଣଙ୍କ କଥାକୁ ବିସ୍ତାର କରିବା ଏହି ଶାସ୍ତ୍ରର ପ୍ରଧାନ ଉଦ୍ଦେଶ୍ୟ ।

ସୂତ କହିଲେ—''ମୁନିଗଣ ! ମୁଁ ପଞ୍ଚମାହ ଭୂମିକାର ଏକତୃତୀୟାଂଶ ତ ଆପଣମାନଙ୍କୁ କହି ସାରିଲିଣି । ଏବେ ଦ୍ୱିତୀୟାଂଶ ଆପଣମାନେ ଶୁଣନ୍ତୁ । 'ଭାଗବତ କଥା'ର ଚାଳିଶ ଖଣ୍ଡରେ କାଳୀୟ-ଦମନ ଲୀଳା ଯଥା ଦାବାନଳ ପାନ ପର୍ଯ୍ୟନ୍ତ ବିଷୟ ସୂଚୀ ମୁଁ ପୂର୍ବରୁ କହିଛି । ଏବେ ଭଗବାନଙ୍କ ଲୀଳାର ବିଷୟ ସୂଚୀ ଶୁଣନ୍ତୁ । ଚାଳିଶ ଖଣ୍ଡର କଥାକୁ କ୍ରମ ରଖି ଦାବାନଳ ଲୀଳା ପରେ ବର୍ଣ୍ଣିତ ହୋଇଥିବା ଲୀଳାଗୁଡ଼ିକର କଥା ରହିଛି । ଭଗବାନ ଗୋପବାଳକ ଓ ପିତାମାତାଙ୍କ ସହିତ କାଳୀୟ ହ୍ରଦ ନିକଟରୁ ଫେରି ଗୋକୁଳକୁ ଆସିଲେ । ସେ ଗୋକୁଳକୁ ଆସି ସଖାମାନଙ୍କ ସହିତ ଭଳି ଭଳି କ୍ରୀଡ଼ା କଲେ । 'ଘୁଡ଼ଚଢ଼ୀ' ଖେଳ ଖେଳୁଥିବା ସମୟରେ କେତେକ ସାଥୀଙ୍କୁ ଘୋଡ଼ା କରି ତାଙ୍କ ଉପରେ ଚଢୁଥିଲେ । କେବେ କେବେ ନିଜେ ଘୋଡ଼ା ହୋଇ ଗୋପବାଳକମାନଙ୍କୁ ପିଠିରେ ବସାଉଥିଲେ । ସେହି ସମୟରେ ପ୍ରଲମ୍ବାସୁର ଆସି ସେଠାରେ ପହଞ୍ଚିଲା ଓ ଶ୍ରୀକୃଷ୍ଣ ତାକୁ ଯମାଳୟକୁ ପଠାଇଦେଲେ । ଏହାପରେ ବନ ମଧ୍ୟରେ ଲାଗିଥିବା ଅଗ୍ନିରୁ ଗୋ-ଗୋପମାନଙ୍କୁ ରକ୍ଷା କଲେ । ଏହିପରି ଗୋପବାଳକମାନଙ୍କ ସଙ୍ଗେ କ୍ରୀଡ଼ାର ବର୍ଣ୍ଣନା କରାଯାଇ ଗୋପୀମାନଙ୍କର ଅନୁପମ ଅନୁରାଗ

---

☆ ଯଜ୍ଞ ପତ୍ନୀରେ ଅନୁଗ୍ରହ । ତାହାଙ୍କ ସ୍ନେହର ବିଷୟ ॥
ଯଜ୍ଞ ଅନ୍ନକୁ ସେ ଭୋଜନ । ବ୍ରାହ୍ମଣେ ଅନୁତାପମାନ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ବିଷୟ କୁହାଯାଇଛି । ଭଗବାନ କିପରି ବେଣୁ ବାଦନ କରି ବ୍ରଜାଙ୍ଗନାମାନଙ୍କୁ ମୋହିତ କରୁଥିଲେ, ତାଙ୍କର ରୂପମାଧୁରୀ ଓ ବେଣୁମାଧୁରୀ ପ୍ରଭାବରେ କିପରି ଚରାଚର ପ୍ରାଣୀ ଓ ତରୁଲତା ମୁଗ୍ଧ ହେଉଥିଲେ ତାହା ଏଥିରେ ବର୍ଣ୍ଣନା କରାଯାଇଛି । ତାହାପରେ ତପସ୍ୱିନୀ ବାଁସୁରୀଙ୍କ ମହିମା ଗାନ କରାଯାଇଛି । ଏହାପରେ ବସ୍ତ୍ରହରଣ ପ୍ରସଙ୍ଗରେ କୁହାଯାଇ ଚାରି ଅଧ୍ୟାୟରେ 'ଭାଗବତ କଥା'ର ଚାଳିଶ ଖଣ୍ଡ ସମାପ୍ତ ହୋଇଛି । ଏବେ ଏକଚାଳିଶ ଖଣ୍ଡର ସୂଚୀ କୁହାଯିବ ।

ଏକଚାଳିଶ ଖଣ୍ଡରେ ସର୍ବପ୍ରଥମେ ପାଞ୍ଚ ଅଧ୍ୟାୟରେ ଦ୍ୱିଜପତ୍ନୀମାନଙ୍କର ଅନୁପମ ଅନୁରାଗର ଅଦ୍ଭୁତ ଘଟଣା ବର୍ଣ୍ଣିତ ହୋଇଛି । ଭୋକିଲା ହୋଇଥିବାରୁ ଗୋପାଳ ବାଳକମାନେ କିପରି ଦ୍ୱିଜପତ୍ନୀମାନଙ୍କ ନିକଟକୁ ଯାଇଥିଲେ ଓ ଅନ୍ନ ଯାଚଞ୍ଚା କରିଥିଲେ ଏବଂ ଅନ୍ନାଦି ଧରି ଦ୍ୱିଜପତ୍ନୀଗଣ କିପରି ଦାମୋଦରଙ୍କର ଦର୍ଶନ କରିଥିଲେ—ବ୍ରାହ୍ମଣମାନେ କିପରି ନିଜ ନିଜର ଅନ୍ୟାୟ ଆଚରଣ ପାଇଁ ଅନୁତାପ କରିଥିଲେ ତାହା ଏଥିରେ ବର୍ଣ୍ଣିତ ହୋଇଛି । ଏହାପରେ ଗୋବର୍ଦ୍ଧନ ଧାରଣ ଲୀଳା କଥା ଆରମ୍ଭ ହୋଇଛି । ଏଥିରେ ଇନ୍ଦ୍ରଙ୍କର ଗର୍ବ କିପରି ଚୂର୍ଣ୍ଣ ହୋଇଛି ଓ ସେ ନିଜର ଅପରାଧ ପାଇଁ କିପରି ନନ୍ଦନନ୍ଦନଙ୍କୁ କ୍ଷମା ମାଗିଛନ୍ତି ତାହା ବର୍ଣ୍ଣନା କରାଯାଇଛି । ଏହିପରି ଏଗାର ଅଧ୍ୟାୟରେ ଗୋବର୍ଦ୍ଧନ ଲୀଳା କଥା ସମାପ୍ତ ହୋଇଛି ।

ଆଉ ଏକ ଅଧ୍ୟାୟରେ ବରୁଣଙ୍କ ଚର ରାତିରେ ସ୍ନାନ କରି ନନ୍ଦଙ୍କୁ ଧରି ବରୁଣ ଲୋକକୁ ନେଇଯିବା ଓ ଏହି ସମାଚାର ଭଗବାନ ଶ୍ରୀକୃଷ୍ଣ ଶୁଣି ବରୁଣ ଲୋକକୁ ଯାଇ ବରୁଣ ପୂଜାକୁ ସ୍ୱୀକାର କରି ତାଙ୍କ ଉପରେ ଅନୁଗ୍ରହ କରିବା ଏବଂ ସେଠାରୁ ନିଜ ପିତାଙ୍କୁ ଫେରାଇ ଆଣିବା—ଏହାପରେ ଗୋପାଳମାନଙ୍କ ପ୍ରାର୍ଥନାରେ ଭଗବାନ ତାଙ୍କୁ ବୈକୁଣ୍ଠ ଦର୍ଶନ କରାଇବା ପର୍ଯ୍ୟନ୍ତ କଥା କୁହାଯାଇ 'ଭାଗବତ କଥା'ର ଏକଚାଳିଶ ଖଣ୍ଡ ସମାପ୍ତ ହୋଇଛି ।

ବୟାଳିଶ ଖଣ୍ଡରେ 'ଭାଗବତ କଥା'ର ସାର ସରସ ରାସବିଳାସ କଥା ବର୍ଣ୍ଣନା କରାଯାଇଛି । ଏଥିରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଆଦିର ବର୍ଣ୍ଣନା, ଶରଦ ପୂର୍ଣ୍ଣିମାର ଶୋଭା ଆଦି ବିଷୟ ଅତି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି । ଏଥିରେ ଅପ୍ରାକୃତିକ ପ୍ରେମ ବିଷୟ ବର୍ଣ୍ଣନା କରାଯାଇ ରାଜା ପରୀକ୍ଷିତଙ୍କ ଶଙ୍କା ସମାଧାନ କରି ଶ୍ରୀଶୁକଦେବ ସିଦ୍ଧାନ୍ତ ସ୍ଥିର କରିଛନ୍ତି ଯେ, କୃଷ୍ଣପ୍ରେମ କାମନା କଲ୍ୟାଣପ୍ରଦ । ଏଥିରେ ଭଗବାନଙ୍କଠାରେ ପ୍ରେମାଧିକ୍ୟ ହୋଇଥାଏ । ଆତ୍ୟନ୍ତିକ ଆନ୍ତରିକତା ଓ ଆତ୍ମରତି ହେତୁ ହୃଦୟରେ ସାତ୍ତ୍ୱିକଭାବ ପରିପୂର୍ଣ୍ଣ ହୋଇଯାଏ । ହୃଦୟରେ ସାତ୍ତ୍ୱିକ ଈର୍ଷା, ଅଭିମାନ ମଧ୍ୟ ଭଗବାନଙ୍କଠାରେ ଜାତ ହୁଏ । ରାସଲୀଳାରେ ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ର କାମୀଗଣଙ୍କର ଦୈନ୍ୟ ତଥା ଦାରାମାନଙ୍କର ଦୁରାତ୍ମାଙ୍କୁ ଦିଗ୍‌ଦର୍ଶନ ଦେଇଥିଲେ । ଏହି ପର୍ଯ୍ୟନ୍ତ କଥା 'ଭାଗବତ କଥା'ର ବୟାଳିଶ ଖଣ୍ଡରେ ପ୍ରକାଶିତ ହୋଇଛି ।

ତେୟାଳିଶ ଖଣ୍ଡରେ ରାସଲୀଳାକୁ କ୍ରମ ରଖାଯାଇ ବ୍ରଜାଙ୍ଗନାମାନଙ୍କର ବିରହ ବେଦନା ଦର୍ଶାଯାଇଛି, ଏଠାରେ ଭଗବାନଙ୍କ ବିଚ୍ଛେଦ (ଅନୁପସ୍ଥିତ)ରେ ଗୋପାଙ୍ଗନାମାନେ ଅତ୍ୟନ୍ତ ବ୍ୟାକୁଳିତ ହୋଇ ବିଳାପ କରିଥିବା କଥା କୁହାଯାଇଛି । ସେମାନଙ୍କ ଦୟନୀୟ ଅବସ୍ଥା ଦେଖି ଦାମୋଦର ସେମାନଙ୍କ ମଧ୍ୟରେ ପ୍ରକଟିତ ହୋଇଛନ୍ତି । ଗୋପାଙ୍ଗନାଗଣ ଏଥିରେ କୃତାର୍ଥ ହୋଇଛନ୍ତି । ସେମାନେ ପ୍ରେମକୋପରେ କୁପିତ ହୋଇ କୃପାଳୁ ଶ୍ରୀକୃଷ୍ଣଙ୍କୁ କେତେକ ଜଟିଳ ପ୍ରଶ୍ନ ପଚାରିଛନ୍ତି । ପ୍ରଭୁ ଏହାର ଯଥୋଚିତ ଉତ୍ତର ଦେଇଛନ୍ତି । ଏଥିରେ କୁହାଯାଇଛି ରାସ ହିଁ ଜୀବନର ପରମ ଲକ୍ଷ୍ୟ ଓ ଏହା ଭଗବାନଙ୍କର ପ୍ରାଣ । ଏହି ରାସରେ ଏକ ଏକ ଗୋପୀଙ୍କ ପାଖରେ ଏକ ଏକ କୃଷ୍ଣ ଉପସ୍ଥିତ ଥିଲେ । ଏହା ଅତ୍ୟନ୍ତ ଅନୁପମ ଥିଲା । ଏହି ମହାରାସ ହେଉଛି ବିମ୍ବ-ପ୍ରତିବିମ୍ବ ରହସ୍ୟ, ଜଳସ୍ଥଳରେ ଅଲୌକିକ କ୍ରୀଡ଼ା ।

ଜଳକେଳି କରି କେଶବ କାମିନୀଗଣଙ୍କ ସହିତ କମନୀୟ କାନନରେ କୋକିଳଙ୍କ କଳରବ ଶୁଣି ଶୁଣି ଭ୍ରମଣ କରୁଥିଲେ । ଏହି ରାସ ଦିନକର ରାସ ନୁହେଁ । ଅନାଦି କାଳରୁ ନିରନ୍ତର ଏହା ହୋଇଆସୁଛି ଓ ଅନନ୍ତ କାଳ ପର୍ଯ୍ୟନ୍ତ ଏକରସରେ ହେଉଥିବ ।

ରାସର ରସମୟୀ ଲୀଳା ଶ୍ରବଣକରି ପରମ ଭଗବତ ମହାରାଜ ପରୀକ୍ଷିତ ଚାରିଟି ଶଙ୍କା କରିଥିଲେ । ଶ୍ରୀ ଶୁକଦେବ ଏହି ଚାରିଶଙ୍କା ସମାଧାନ କରିଥିଲେ । ସେ କହିଥିଲେ— "ରାଜନ୍ ! ଭଗବାନଙ୍କୁ ଧର୍ମାଧର୍ମ ସ୍ପର୍ଶ କରେ ନାହିଁ, ଭଗବାନଙ୍କର କେହି ପର ନୁହନ୍ତି, ଭଗବାନଙ୍କର ସମସ୍ତ ଲୀଳା ଶ୍ରେୟସ୍କର ଓ ରାସ ଦିବ୍ୟ ଦେହରେ ହିଁ ହୋଇଥାଏ । ଏହି ପର୍ଯ୍ୟନ୍ତ କଥା 'ଭାଗବତ କଥା'ର ତେୟାଳିଶ ଖଣ୍ଡରେ କୁହାଯାଇ ସମାପ୍ତ କରାଯାଇଛି ।

ଚଉରାଳିଶ ଖଣ୍ଡରେ ରାସଲୀଳା ପ୍ରସଙ୍ଗକୁ କ୍ରମ ରଖାଯାଇ ଏଠାରେ ତାହା ଉପସଂହାର କରାଯାଇଛି । ଶେଷରେ ଫଳଶ୍ରୁତି କୁହାଯାଇଛି । ଏହିପରି ରାସଲୀଳା ପ୍ରସଙ୍ଗକୁ ସମାପ୍ତି କରାଯାଇଛି ।

ଏହାପରେ ଅମ୍ବିକା ବନକୁ ଯାତ୍ରା, ସୁଦର୍ଶନ ଉଦ୍ଧାର କଥା, ଶଙ୍ଖଚୂଡ଼ ଉଦ୍ଧାର କଥା, ଗୋପିଗଣଙ୍କ କାଳକ୍ଷେପଣ ବର୍ଣ୍ଣନା ଓ ଅରିଷ୍ଟାସୁର ଉଦ୍ଧାର ଆଦି କଥା କୁହାଯାଇଛି । ଏ ସମସ୍ତ ବୃନ୍ଦାବନ ଲୀଳା କଥା ପରେ ଏବେ ମଥୁରା ଲୀଳା କଥା କୁହାଯିବ ।

କଂସ ଜାଣିପାରିଲା ଯେ ଶ୍ରୀକୃଷ୍ଣ ବଳରାମ ନନ୍ଦଙ୍କ ପୁତ୍ର ନୁହଁନ୍ତି, ଏ ଦୁହେଁ ବସୁଦେବଙ୍କ ପୁତ୍ର ଓ ମୋର ଶତ୍ରୁ ଅଟନ୍ତି । ସେ ମନ୍ତ୍ରୀଗଣଙ୍କ ସହିତ ଗୁପ୍ତ-ମନ୍ତ୍ରଣା କରି ମିଥ୍ୟା ଧନୁର୍ଯାଗ କରିବାର ଆଡ଼ମ୍ବର କଲା ଓ ଶ୍ରୀକୃଷ୍ଣଙ୍କର କକା ନିଜର ଦାନପତି ଅକ୍ରୂରଙ୍କୁ ଡକାଇଲା । ଅକ୍ରୂର ବହୁତ ବୁଝାଇଲେ ଯେ, ସେ ଦୁହିଁଙ୍କୁ ଡକାଅ ନାହିଁ । କିନ୍ତୁ ଖଳ କଂସ ଅକ୍ରୂରଙ୍କ କଥା ଶୁଣିଲା ନାହିଁ । କଂସ ଆଜ୍ଞାରେ ଅକ୍ରୂର ବ୍ରଜ ଯାତ୍ରା କଲେ । ତେଣେ ଭଗବାନ କେଶୀ ଓ ବ୍ୟୋମାସୁରକୁ ବଧ କରି ସାରିଥିଲେ । ନାରଦ ଆସି ଆଗକୁ ହେବାକୁ ଥିବା ସମସ୍ତ କାର୍ଯ୍ୟକ୍ରମ ବତାଇ ଦେଲେ । ଅକ୍ରୂର ରଥରେ ବସି ନନ୍ଦଗ୍ରାମ ଯାତ୍ରା କରୁଥିବା ସମୟରେ ଭାବୁଥିଲେ, 'ଆଜି ମୋର ସୌଭାଗ୍ୟ, ମୁଁ ଭଗବାନଙ୍କ ପାଦପଦ୍ମ ଦର୍ଶନ କରିବି ।' ଭଗବାନ କୃଷ୍ଣ ଓ ବଳରାମଙ୍କୁ ଦର୍ଶନ କରି ସେ ନିଜ ଜୀବନକୁ ଧନ୍ୟ ମନେକଲେ । କଂସର ସମସ୍ତ ସନ୍ଦେଶ ତାଙ୍କୁ ଶୁଣାଇଲେ । ସବୁକଥା ଶୁଣି ଭଗବାନ ଗୋପାଳ ବାଳକମାନଙ୍କ ସହିତ ମଥୁରା ଯିବା ପାଇଁ ଉଦ୍ୟତ ହେଲେ ।

ଭଗବାନଙ୍କର ଭାବି ବିୟୋଗକୁ ସ୍ମରଣ କରି କରି ଗୋପିକାଗଣ ଦୁଃଖିତ ହେବାକୁ ଲାଗିଲେ । ସେମାନେ ବିରହରେ ବିହ୍ୱଳ ହୋଇ ବ୍ରଜବିହାରୀଙ୍କର ବ୍ରଜତ୍ୟାଗକୁ ସ୍ମରଣ କରି ବ୍ୟାକୁଳ ହେବାକୁ ଲାଗିଲେ । ସମସ୍ତଙ୍କୁ ବୋଧଶୋଧ କରାଇ ରାମ-କୃଷ୍ଣ ମଥୁରା ଯାତ୍ରା କଲେ । ଗୋପିକାଗଣ ରଥ ପଛରେ କାନ୍ଦି କାନ୍ଦି ଚାଲିଲେ ଓ ଶେଷରେ ବିହ୍ୱଳ ହୋଇ କାନ୍ଦି କାନ୍ଦି ପଥ ମଧ୍ୟରେ ଗଡ଼ିବାରେ ଲାଗିଲେ । ଅକ୍ରୂର ଘାଟରେ ସନ୍ଧ୍ୟାବନ୍ଦନା ପାଇଁ ରଥକୁ ଠିଆ କରାଇଲେ । ସେ ଯମୁନା ଜଳରେ ପଶି ବୁଡ଼ ପକାଇ ଉଠିବା ସମୟରେ ଭଗବାନଙ୍କର ଚତୁର୍ଭୁଜ ରୂପ ଦର୍ଶନ କଲେ । ବ୍ରଜର କେତେକ ରସିକ ଭକ୍ତ ଏହା ଭାବନ୍ତି ଯେ, ବ୍ରଜମଣ୍ଡଳ ପରିଧି ଭିତରେ ଶ୍ରୀକୃଷ୍ଣ ସର୍ବଥା ଦ୍ୱିଭୁଜ ହୋଇ ରହନ୍ତି, ସେ କେବେହେଲେ ଚତୁର୍ଭୁଜ ହୁଅନ୍ତି ନାହିଁ । ଏଠାରେ ସେ ଚତୁର୍ଭୁଜ ହେଲେ ବ୍ରଜର ରସମୟୀ ଉପାସନା ନଷ୍ଟ ହୋଇଯାଏ ଓ ତାହା ଐଶ୍ୱର୍ଯ୍ୟମୟୀ ଉପାସନା ହୋଇଯାଏ । ବ୍ରଜର କୃଷ୍ଣ କୌଣସି ଦେବତା ନୁହନ୍ତି । ସେମାନଙ୍କର ଦୃଢ଼ ଧାରଣା କୃଷ୍ଣ ସେମାନଙ୍କର ପୁତ୍ର ସମ, ସଖା, ନନ୍ଦ କୁମାର, ପ୍ରିୟ ବନ୍ଧୁ ଇତ୍ୟାଦି ଅଟନ୍ତି । ସେମାନଙ୍କ ଭଳି ତାଙ୍କର ସୁଖ ଦୁଃଖ, କ୍ଷୁଧା ପିପାସା, ଆଚାର ବ୍ୟବହାର ସବୁକିଛି ଅଛି । ଚାରିହାତ ହୋଇଗଲେ

ତ ସେ ଭିନ୍ନ ପ୍ରକୃତିର ହୋଇଯିବେ । ତାଙ୍କ ପିଠି ଉପରେ ବସି ଘୋଡ଼ାସବାର ହେଲେ ସେ ସେମାନଙ୍କୁ ବସାଇ ନେବେ କିପରି ? ଏଥିପାଇଁ ବ୍ରଜର ସୀମା ପରିଧି ଅକ୍ରୁରଘାଟ ପର୍ଯ୍ୟନ୍ତ ରଖାଯାଇଛି । କାରଣ ଏହି ସୀମା ବାହାରେ ଅକ୍ରୁର ସେମାନଙ୍କ ଦ୍ୱିଭୁଜ କୃଷ୍ଣଙ୍କୁ ଚତୁର୍ଭୁଜ ରୂପରେ ଦେଖିଥିଲେ । ସେହିଦିନୁ ବ୍ରଜର ସୀମା ଅକ୍ରୁରଘାଟ ପର୍ଯ୍ୟନ୍ତ ସାବ୍ୟସ୍ତ ହୋଇଛି । 'ଭାଗବତ କଥା'ର ଚୌରାଳିଶ ଖଣ୍ଡ ଏହିଠାରେ ସମାପ୍ତ ହୋଇଛି ଓ ଏହି ଅଧ୍ୟାୟ ମଧ୍ୟ ସମାପ୍ତ ହୋଇଛି. । ଏବେ ଅନ୍ୟ ଅଧ୍ୟାୟରେ ପଞ୍ଚମାହର ଅବଶିଷ୍ଟ କଥା ସୂଚୀ ବର୍ଣ୍ଣନା କରାଯିବ ।

ସୂତ କହିଲେ––''ମୁନିଗଣ ! ମୁଁ ଦୁଇ ଅଧ୍ୟାୟରେ ପଞ୍ଚମାହର ସୂଚୀ କହିଲି. । ଏବେ ତୃତୀୟ ଅଧ୍ୟାୟରେ ଅବଶିଷ୍ଟ ବିଷୟ ସୂଚୀ ବର୍ଣ୍ଣନା କରୁଅଛି । ଆପଣମାନେ ଧ୍ୟାନପୂର୍ବକ ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ଜୀୟୋ ରାସ ବିଲାସ ଭୟେ ଅନ୍ତରହିତ ଗିରିଧର ।
ବିଲପୀଂ ବନିତା ବହୁତ ଭୟେ ପୁନି ପରଗଟ ନଟବର ।।
ମହାରାସ ପୁନି ଭୟୋ ପରସତା ଅଁଗ ଅଁଗ ଛାୟୀ ।
ୟୋଂ ପୁନି ପୂରନ ଭଇ ରାସ କୀ ପଞ୍ଚାଧ୍ୟାୟୀ ।।
ଶଙ୍ଖଚୂଡ଼ ଅଜଗର ଅସୁର, କେଶୀ ବ୍ୟୋମାସୁର ମରନ ।
ଫେରି କହ୍ୟୋ ଅତି ଭାବଭୟ, ଶ୍ୱଫଲକ-ସୁତ ବ୍ରଜ ଆଗମନ ।।



# ପଞ୍ଚମାହର ବିଷୟ ସୂଚୀ (ତୃତୀୟ)

**ବ୍ରଜସ୍ତ୍ରୀଣାଂ ବିଲାପଶ୍ଚ ମଥୁରାଲୋକନଂ ତତଃ ।**
**ଗଜମୁଷ୍ଟିକଚାଣୂରକଂସାଦୀନାଂ ଚ ଯୋ ବଧଃ ।।** ☆
(ଶ୍ରୀ ଭା: ୧୨ସ୍କ: ୧୨ଅ: ୩୪ଶ୍ଳୋକ)

☆
ମଥୁରା ରାମକୃଷ୍ଣ ଗଲେ । ଦେଖି ବିଳାପ ଗୋପୀ କଲେ ।।
ଶ୍ରୀକୃଷ୍ଣ ଗୋପୀଙ୍କି ବୋଧିଣ । ଅକ୍ରୁର ସଙ୍ଗତେ ରଥେଣ ।।
ମଥୁରା ପୁରେ ପରବେଶ । ଦେଖି ବୁଲନ୍ତି ନଗ୍ରଦେଶ ।।
ରଜକ ଶିର ଛେଦି ତହୁଁ । ବସନ ନ ଦେଲା ସେ ଯହୁଁ ।।
ଧନୁ ଭଗ୍ନ ତଦ ଅନ୍ତେ । ମାଳାକାରକୁ ଯେ ମୁକତେ ।।
କୁବୁଜା ଗନ୍ଧ ଯେ ଲେପନ । ସୁନ୍ଦରୀ ହେଲା ଅନୁପମ ।।
କୁବଳୟା ଗଜ ନିବାରି । ପ୍ରବେଶ ରଙ୍ଗସଭା ହରି ।।
ମଲ୍ଲ ଯୁଦ୍ଧର ଯେ ବ୍ୟବସ୍ଥା । ଚାଣୂର ମୁଷ୍ଟିକ ନିହନ୍ତା ।।
କଂସକୁ କଲେ ସେ ନିଧନ । କଂସର ଯେତେ ଭାଇମାନ ।।
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଷଟ୍‌ପଦୀ

ବ୍ରଜ ତଜି ପୁନି ବଳ ସଂଗ ଶ୍ୟାମ ମଥୁରାକୁଁ ଧାୟେ ।
ଗୋପୀ ଗୋକୁଲ ଭୟି ଅଶ୍ରୁ ଅତି ସବନି ବହାୟେ ।।
ଶ୍ୱଫଲକ ସୁତପୈ କରୀ କୃପା ମରି ରଜକ ତରେ୍ୟା ହୈ ।
କୁବ୍‌ଜା କୁଁ କରି ସୁଧର ଧନୁଷ କୋ ଭଙ୍ଗ କରେ୍ୟା ହୈ ।।
ଆୟେ ଗଜ ଅରୁ ମଲ୍ଲ ଜେ, ମରେ କଂସ ମାମା ମରେ୍ୟୌ ।
ନନ୍ଦ ଗୟେ ବ୍ରଜକୁଁ ବିଲଖି, ଜନନୀ ଜନକ କୋ ଦୁଃଖ ହରେ୍ୟୌ ।।

ପଞ୍ଚମାହର ବିଷୟ ସୂଚୀ ଅତ୍ୟନ୍ତ ବଡ଼ ହୋଇଛି, କାରଣ ପଞ୍ଚମାହ ହେଉଛି ପେଟ ସଦୃଶ ଓ ଅନ୍ୟାନ୍ୟ ଅଙ୍ଗ-ପ୍ରତ୍ୟଙ୍ଗ ସଦୃଶ । ପେଟର ଆଶ୍ରୟରେ ହିଁ ଅନ୍ୟ ଅଙ୍ଗ-ପ୍ରତ୍ୟଙ୍ଗ ଜୀବିତ ରହେ । ପେଟରେ ଯଦି କିଛି ନ ପଡ଼େ, ତାହାହେଲେ ଅନ୍ୟ ସବୁ ଅଙ୍ଗ ନିର୍ଜୀବ ହୋଇଯିବେ । ପେଟରେ ପଡ଼ିବାରୁ ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ସତେଜ ରହେ । ଭାଗବତର ମୁଖ୍ୟ ପ୍ରତିପାଦ୍ୟ ବିଷୟ ଶ୍ରୀକୃଷ୍ଣ ଚରିତ୍ର । ତାହା ଯେତେ ବିସ୍ତାର କରାଯାଇ ପାରିବ ସେତେ ଭଲ ।

ସୂତ କହିଲେ—"ମୁନିଗଣ ! ଭାଗବତ କଥାର ଚଉରାଳିଶ ଖଣ୍ଡର ବିଷୟ ସୂଚୀ ସମାପ୍ତ ହେବାରୁ ମୁଁ ଏବେ ପଇଁଚାଳିଶ ଖଣ୍ଡର ବିଷୟ ସୂଚୀ ବର୍ଣ୍ଣନା କରୁଛି । ପଇଁଚାଳିଶ ଖଣ୍ଡରେ ସର୍ବପ୍ରଥମେ ରାମ-ଶ୍ୟାମଙ୍କର ମଥୁରାରେ ଭ୍ରମଣ ବୃତ୍ତାନ୍ତ କୁହାଯାଇଛି । ଏହାପରେ ରଙ୍ଗଭୂମିରେ ପହଞ୍ଚି ସମସ୍ତଙ୍କ ଭାବନାନୁସାରେ ଦର୍ଶନ ଦେବା, ଚାଣୂର ଭାତୃଦ୍ୱୟଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ କରିବା—ବଳରାମଙ୍କର ମୁଷ୍ଟିକ ସହିତ ଓ ଶ୍ରୀକୃଷ୍ଣଙ୍କର ଚାଣୂର ସହିତ ଯୁଦ୍ଧ ହେବା—ମଥୁରା କାମିନୀଗଣ ଛୋଟପିଲା ଦୁଇଟି ଅସୁରଙ୍କ ସହିତ ଯୁଦ୍ଧ କରୁଥିବା ଦେଖି ମନରେ କରୁଣାର ସ୍ରୋତ ବୁହାଇବା—ଚାଣୂର ଓ ମୁଷ୍ଟିକଙ୍କ ମୃତ୍ୟୁ ହେବା ଓ ଅନ୍ୟ ମଲ୍ଲମାନେ ପଳାଇଯିବା—ମାମୁଁ କଂସର ମୃତ୍ୟୁ ହେବା ଓ ସେ ଭଣଜା ହାତରେ ଉଦ୍ଧାର ହେବା—ଏହାପରେ କାରାଗାରକୁ ଯାଇ ଶ୍ରୀକୃଷ୍ଣ ପିତାମାତାଙ୍କୁ ମୁକ୍ତ କରିବା—ଉଗ୍ରସେନଙ୍କୁ ରାଜା କରାଇବା—କାନ୍ଦି କାନ୍ଦି ନନ୍ଦଙ୍କୁ ବିଦାୟ ଦେବା ।

ଏବେ ମଥୁରାରେ ଦୁଇ ଭାଇଙ୍କର ଯଜ୍ଞୋପବିତ ସଂସ୍କାର ହେଲା । ବ୍ରତ ପରେ ପାଠ ପଢ଼ିବାକୁ ଅବନ୍ତୀକା ଯାତ୍ରା କରିବା, ଗୁରୁକୁଳରେ ରହି ଗୁରୁଙ୍କର ସେବା କରିବା, ବିଦ୍ୟାଧ୍ୟୟନ ସମାପ୍ତ କରି ଗୁରୁଦକ୍ଷିଣା ଦେବା ସମୟ ହେବାରୁ ଗୁରୁପତ୍ନୀଙ୍କ ପ୍ରସ୍ତାବରେ ତାଙ୍କର ମୃତପୁତ୍ରକୁ ଯମପୁରରୁ ଫେରାଇ ଆଣିବା । ଏହି ଗୁରୁଦକ୍ଷିଣା ଦେଇ ସେ ପୁନଶ୍ଚ ମଥୁରା ଫେରିଆସିବା । ଏହି ପର୍ଯ୍ୟନ୍ତ କଥା 'ଭାଗବତ କଥା'ର ୪୫ଖଣ୍ଡରେ କୁହାଯାଇଛି । ଏବେ ଛୟାଳିଶ ଖଣ୍ଡର କଥା କୁହାଯିବ ।

ଛୟାଳିଶ ଖଣ୍ଡରେ ଶ୍ୟାମସୁନ୍ଦର ଅବନ୍ତୀରେ ପଢ଼ି ପଣ୍ଡିତ ହୋଇ ମଥୁରାକୁ ଆସିବା ଓ ରାଜକାର୍ଯ୍ୟରେ ସହଯୋଗ କରିବା କଥା କୁହାଯାଇଛି । ମୂଳ ଶ୍ରୀମଦ୍‌ଭାଗବତରେ ତ ବୃନ୍ଦାବନର ଦଶାର ଆଭାସ ଦିଆ ନଯାଇ ମଥୁରାକୁ ଶ୍ୟାମସୁନ୍ଦର ଉଦ୍ଧବଙ୍କୁ ଡକାଇ ବ୍ରଜକୁ ଯିବା ପାଇଁ ଆଜ୍ଞା ଦେଇଥିଲେ ବୋଲି କୁହାଯାଇଛି । କିନ୍ତୁ 'ଭାଗବତ କଥା'ରେ ପ୍ରଥମେ ବ୍ରଜର ବିରହଦଶା ବର୍ଣ୍ଣନା କରାଯାଇଛି । ପ୍ରଥମେ ମାତାଙ୍କର ବିରହ ଦଶାର ବର୍ଣ୍ଣନା ଅଛି । ଏହିଠାରୁ ହିଁ ୪୬ଖଣ୍ଡର ଆରମ୍ଭ ହୋଇଛି । ମାତାଙ୍କ ବିରହ କଥା କୁହାଯାଇ ଗୋପାଳ ବାଳକମାନଙ୍କର ବିରହ ସ୍ମୃତିର ବର୍ଣ୍ଣନା ଓ ଏହାପରେ ଗୋପିକାଗଣଙ୍କର ହୃଦୟ ବିଦାରକ ବିରହର କରୁଣ କାହାଣୀ ରହିଛି । ବ୍ରଜ ବୃନ୍ଦାବନର ବିରହ କାହାଣୀ ଏହି ପ୍ରକାର କୁହାଯାଇ ମଥୁରାରେ କିପରି ଶ୍ୟାମସୁନ୍ଦର ଗୋପ-ଗୋପୀମାନଙ୍କ ବିଚ୍ଛେଦରେ ନେତ୍ରରୁ ଲୁହ ଗଡ଼ାଇଥିଲେ,

ଉଦ୍ଧବ ଏହାର କାରଣ ପଚାରିବାରୁ ଶ୍ୟାମସୁନ୍ଦର କିପରି ବ୍ରଜବାସୀଙ୍କର ନିଚ୍ଛଳ ନିଷ୍କପଟ ପ୍ରେମ ତାହା ବର୍ଣ୍ଣନା କରିଥିଲେ ଓ ଉଦ୍ଧବଙ୍କୁ ବ୍ରଜକୁ ପଠାଇଥିଲେ, ଏହି କଥା କୁହାଯାଇଛି ।

ଉଦ୍ଧବ ଶ୍ୟାମସୁନ୍ଦରଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ବ୍ରଜ ଯାତ୍ରା କରିଥିଲେ । ସେଠାରେ ସେ ନନ୍ଦ ଯଶୋଦାଙ୍କର ବିରହ ଦଶା ଦେଖି ବିହ୍ୱଳ ହୋଇଯାଇଥିଲେ । ତାଙ୍କୁ ଓ ଗୋପ-ଗୋପୀମାନଙ୍କୁ ସେ ଶ୍ରୀକୃଷ୍ଣ ତତ୍ତ୍ୱ ଓ ବ୍ରହ୍ମଜ୍ଞାନ ବୁଝାଇ ସାନ୍ତ୍ୱନା ଦେଇଥିଲେ, କିନ୍ତୁ ସେମାନେ ତ ବାତ୍ସଲ୍ୟରସର ଉପାସକ, ତେଣୁ ଉଦ୍ଧବଙ୍କର ଜ୍ଞାନ ଉପଦେଶ ସେମାନଙ୍କର ଗ୍ରହଣୀୟ ହେଲା ନାହିଁ । ସେମାନେ ଉଦ୍ଧବଙ୍କର ବିଧିବଦ୍ଧ ଆତିଥ୍ୟ କରି ତାଙ୍କ ସହିତ ପ୍ରେମଧର୍ମ ସମ୍ବନ୍ଧରେ ଆଲୋଚନା କରୁ କରୁ ସାରାରାତି ବିତିଗଲା ।

ପ୍ରାତଃକାଳରେ ନନ୍ଦରାଜା ''ପୌରି''ଠାରେ ସ୍ୱର୍ଣ୍ଣମୟ ରଥ ଠିଆ ହୋଇଥିବାର ଦେଖି ବ୍ରଜାଙ୍ଗନାଗଣ ଅଧିକ ସଂଖ୍ୟାରେ ଆସି ଉଦ୍ଧବ ଯମୁନାସ୍ନାନ କରି ଫେରୁଥିବା ସମୟରେ ତାଙ୍କୁ ଭେଟିଲେ । ଉଦ୍ଧବ ସେମାନଙ୍କୁ ଶ୍ୟାମସୁନ୍ଦରଙ୍କ ସନ୍ଦେଶ ଶୁଣାଇଲେ । ସେହି ସମୟରେ ସଂଯୋଗବଶତଃ ସେଠାକୁ କେଉଁଆଡୁ ଭ୍ରମରମାନେ ଉଡ଼ିଆସି ପହଞ୍ଚିଲେ । ଭ୍ରମର ଗୀତ ଅତ୍ୟନ୍ତ ସରସ ଓ ରସମୟ । ଅନେକ କବି ଭ୍ରମର ଗୀତକୁ ନାନା ପ୍ରକାର ରୂପ ଦେଇ ରଚନା କରିଛନ୍ତି । ''ଭାଗବତ ଚରିତ''ରେ ଭ୍ରମର ଗୀତ ମଧ୍ୟ ବର୍ଣ୍ଣିତ ହୋଇଛି । ପ୍ରେମକୋପରେ କୁପିତ ବ୍ରଜାଙ୍ଗନାଗଣ ଶ୍ୟାମସୁନ୍ଦରଙ୍କୁ ନାନା ପ୍ରକାର ଗାଳିଗୁଲଜ କରିଛନ୍ତି । ସେମାନଙ୍କର ଅଲୌକିକ ଅନନ୍ୟ ପ୍ରେମକୁ ଦେଖି ଉଦ୍ଧବ ବିସ୍ମିତ ହୋଇଛନ୍ତି । ତାଙ୍କ ଶରୀରରେ ଶିହରଣ ଜାତ ହୋଇଛି ।

ଯେତେବେଳେ ସେମାନେ ଭ୍ରମରମାନଙ୍କୁ ଅତ୍ୟଧିକ ତିରସ୍କାର କଲେ, ସେତେବେଳେ ସେମାନଙ୍କର ଚେତାପଶିଲା ଯେ, 'ଆରେ ! ଏମାନେ ତ ପ୍ରେମର ଦୂତ ଅଟନ୍ତି । ପ୍ରେମର ସନ୍ଦେଶ ନେଇ ଏମାନେ ଏଠାକୁ ଆସିଛନ୍ତି । ଏମାନଙ୍କର ସତ୍କାର କରିବା ତ ଆମ୍ଭମାନଙ୍କର କର୍ତ୍ତବ୍ୟ । ଏହି ଭାବ ଜାତ ହେବାରୁ ସେମାନେ ଚୁ ଚୁ କାରକରି ସେମାନଙ୍କୁ ପ୍ରେମର ସହିତ ଶ୍ୟାମସୁନ୍ଦରଙ୍କର କୁଶଳ ପଚାରିବାରେ ଲାଗିଛନ୍ତି ଓ କେବେ ଆସି ଆମ୍ଭମାନଙ୍କୁ ଦର୍ଶନ ଦେବେ ବୋଲି ପଚାରିଛନ୍ତି ।

ଉଦ୍ଧବ ଯେତେବେଳେ ଶ୍ୟାମସୁନ୍ଦରଙ୍କଠାରେ ଗୋପାଙ୍ଗନାମାନଙ୍କର ଏପରି ଅନୁପମ ଅଲୌକିକ ଅନୁରାଗ ଥିବାର ଦେଖିଲେ, ସେତେବେଳେ ସେ ଅତ୍ୟନ୍ତ ପ୍ରସନ୍ନ ହୋଇ ସେହି ମହାଭାଗ୍ୟବତୀମାନଙ୍କୁ ଭୂରି ଭୂରି ପ୍ରଶଂସା କଲେ । ସେ ବ୍ରଜରେ କିଛିଦିନ ରହି ଶ୍ୟାମ ବିରହର ଆନନ୍ଦ ଅନୁଭବ କଲେ ଓ ଶେଷରେ ସମସ୍ତଙ୍କଠାରୁ ବିଦାୟ ନେଇ ଚାଲିଗଲେ । ଆଉ ଥରେ ସେହି ଦୃଶ୍ୟ ଦେଖାଯାଇଥିଲା, ଯେତେବେଳେ ଏଠାରୁ ରାମ-ଶ୍ୟାମଙ୍କୁ ନେଇ ଅକ୍ରୁର ମଥୁରା ଯାଇଥିଲେ । ଆଜି ଉଦ୍ଧବ ଶ୍ୟାମସୁନ୍ଦରଙ୍କ ପାଇଁ ସମସ୍ତଙ୍କ ସନ୍ଦେଶ ଉପହାର ନେଇ ରାମ-ଶ୍ୟାମଙ୍କ ନିକଟକୁ ଫେରିଲେ ଓ ତାଙ୍କ ଆଗରେ ବ୍ରଜବାସୀମାନଙ୍କର ବିରହ ଦଶା ବର୍ଣ୍ଣନା କଲେ । ଶ୍ୟାମସୁନ୍ଦର ଏସବୁ ଶୁଣିବା ମାତ୍ରେ ତାଙ୍କ ହୃଦୟ ବିରହ ଦୁଃଖରେ ବ୍ୟଥିତ ହେଲା । ଏହିପରି ଭାବରେ 'ଭାଗବତ କଥା'ର ଛୟାଳିଶ ଖଣ୍ଡର ୨୦ ଅଧ୍ୟାୟରେ ଭ୍ରମର ଗୀତର ପ୍ରସଙ୍ଗ କୁହାଯାଇଛି ।

ଏହାପରେ ଶ୍ୟାମସୁନ୍ଦର କୁବ୍ଜାକୁ ଇଚ୍ଛିତ ବର ପ୍ରଦାନ କରି ବଳରାମଙ୍କ ସହିତ ଅକ୍ରୁର କକାଙ୍କ ଘରେ ପଦାର୍ପଣ କଲେ । ଅକ୍ରୁର ନିଜର ଭଉଣୀ (ଶ୍ରୀକୃଷ୍ଣଙ୍କର ପିଉସୀ) କୁନ୍ତୀଙ୍କ ନିକଟକୁ ଶ୍ରୀକୃଷ୍ଣଙ୍କ ଅନୁରୋଧରେ କୁଶଳ ବୁଝି ଆସିବାକୁ ଗଲେ । ଅକ୍ରୁର କୁନ୍ତୀଙ୍କୁ ଯାଇ ଭେଟିଲେ, ଧୃତରାଷ୍ଟ୍ରଙ୍କୁ ସେ କଡ଼ା ଉପଦେଶ ଦେଲେ । ଏହିଠାରେ ଛୟାଳିଶ ଖଣ୍ଡ ସମାପ୍ତ ହୋଇଛି । ଏହା ସହିତ ପଞ୍ଚମାହର କଥା ମଧ୍ୟ ସମାପ୍ତ ହୋଇଛି ।

ସୂତ କହିଲେ—‘‘ମୁନିଗଣ ! ମୁଁ ଆପଣମାନଙ୍କୁ ତିନି ଅଧ୍ୟାୟରେ ଏହି ପଞ୍ଚମାହର ବିଷୟ ସୂଚୀ କହିଲି । ଏବେ ଆପଣମାନେ ଷଷ୍ଠାହର ବିଷୟ ସୂଚୀ ଶ୍ରବଣ କରନ୍ତୁ ।’’

ଷଟ୍‌ପଦୀ

ଫିରି ଗୁରୁକୁଲକୋ ବାସ ମୃତକ ଗୁରୁସୁତ ଜ୍ୟୋଂ ଲାୟେ ।
ବ୍ରଜ ଉଦ୍ଧବ କେ ହାଥ ଆଇ ସନ୍ଦେଶ ପଠାୟେ ।।
ଉଦ୍ଧବ ଦେଖେ ଦୁଖୀ ଗୋପ ଗୋପୀ ଗୌ ବଛରା ।
ଅସ୍ତବ୍ୟସ୍ତ ସବ ବସ୍ତୁ ପରେ ଛୁଟେ ଘର ଛକରା ।।
ଭ୍ରମର ଗୀତ, କୁବ୍‌ଜା କୃପା, କୁନ୍ତୀ ଢିଗ ଶ୍ୱଫଲକ ତନୟ ।
ପଞ୍ଚମାହ ପୂରନ ଭୟୋ, ଅବ ଷଷ୍ଠାହ ସୁନହୁ ସଦୟ ।।



# ଷଷ୍ଠାହର ବିଷୟ ସୂଚୀ

**ଜରାସନ୍ଧ ସମାନୀତସୈନ୍ୟସ୍ୟ ବହୁଶୋ ବଧଃ ।**
**ଘାତନଂ ଯବନେନ୍ଦ୍ରସ୍ୟ କୁଶସ୍ଥଲ୍ୟା ନିବେଶନମ୍ ।।** ☆

(ଶ୍ରୀ ଭା: ୧୨ସ୍କ: ୧୨ଅ: ୩୬ଶ୍ଳୋକ)

ଷଟ୍‌ପଦୀ

ଜରାସନ୍ଧ ଆକ୍ରମନ ସେନ ଲୈ ମଥୁରା ଘେରୀ ।
ପୁରି ତଜି ଭଗି ରନଛୋର ଯବନ ଜରବାଇ ଢେରୀ ।।
ରୁକ୍ମିନି ସଂଗ ବିବାହ ପୁତ୍ର ପ୍ରଦ୍ୟୁମ୍ନ ଭୟେ ହୈଂ ।
ପୁନି ସ୍ୟମନ୍ତ ଆଖ୍ୟାନ ବ୍ୟାହ ହରି ସହସ କିୟେ ହୈଂ ।।
ଜ୍ୟୋଂ ଅନିରୁଦ୍ଧ ବିବାହ ମେଂ, ବଲ ରୁକ୍ମୀ କୋ ବଧ କିୟୋ ।
ଫିରି ବିବାହ ଅନିରୁଦ୍ଧ କୋ, ବାଣ-ସୁତାକେ ସଂଗ ଭୟୋ ।।

---

☆ ମଥୁରାପୁରେ ନରହରି । ଯାଦବମାନ ପ୍ରତିପାଳି ।।
ଜରାସନ୍ଧ ଯେ ଧାଡ଼ିଦେଲା । ମଥୁରାନଗର ବେଢ଼ିଲା ।।
ଏମନ୍ତେ ସପ୍ତଦଶବାର । ଯୁଦ୍ଧେ ହାରିଲା ଜରାବୀର ।।
ଅଷ୍ଟାଦଶବେଳେ ତା ଜାଣି । ସୈନ୍ୟ ତା ମଲେ ଅକ୍ଷୌହିଣୀ ।।
କାଳଯବନ କୂଟେ ନେଇ । ମୁଚୁକୁନ୍ଦ ଚକ୍ଷୁରେ ଦହି ।।

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଜଣେ ସର୍ବସାଧାରଣ ଲୌକିକ ପୁରୁଷ ଓ ଅନ୍ୟଜଣେ ଅସାଧାରଣ ଅଲୌକିକ ପୁରୁଷ । ଏ ଦୁହିଁଙ୍କ ମଧ୍ୟରେ ଲୌକିକ ପୁରୁଷ ତ ଆମ ସମସ୍ତଙ୍କ ଭଳି ବ୍ୟବହାର କରନ୍ତି । ତାଙ୍କର ବାସନା ସାଂସାରିକ, ଅଲୌକିକ ପୁରୁଷଙ୍କର କାମ ଲୋକାତୀତ । ସେ ସାଂସାରିକ ଆହାର, ନିଦ୍ରା ତଥା ଭୟ ଆଦିର ଊର୍ଦ୍ଧ୍ୱରେ । ଭଗବାନଙ୍କଠାରେ ଏହି ବିଶେଷତ୍ୱ ଯେ, ସେ ଲୋକାତୀତ ଅଲୌକିକ ହୋଇ ମଧ୍ୟ ସାଧାରଣ ଲୋକଙ୍କ ଭଳି ଲୀଳା କରନ୍ତି । ସାଂସାରିକ ଲୋକଙ୍କ ଭଳି ଶତ୍ରୁଙ୍କୁ ଡରି ପଳାଇ ଯାଆନ୍ତି । ବିବାହ ପାଇଁ ଅତି ଆଗ୍ରହୀ ଭଳି ଜଣା ପଡ଼ନ୍ତି ଓ ତାଙ୍କୁ ଯେଉଁଠାରେ ଭଲ ବୋହୂଟିଏ ମିଳିବ ବୋଲି କେହି କହେ, ସେ ସେଠାକୁ ଦଉଡ଼ି ଯାଆନ୍ତି ଓ ଛଳବଳ କୌଶଳରେ ବୋହୂକୁ ନେଇ ଆସନ୍ତି । ଷଷ୍ଠାହରେ ଏହିଭଳି କଥା କୁହାଯାଇଛି ।

ସୂତ କହିଲେ—"ମୁନିଗଣ ! ମୁଁ ପଞ୍ଚମାହର ବିଷୟ ସୂଚୀ ଆପଣମାନଙ୍କୁ କହିଥିଲି । ଏବେ ଆପଣମାନେ ଷଷ୍ଠାହର ବିଷୟ ସୂଚୀ ଶ୍ରବଣ କରନ୍ତୁ । 'ଭାଗବତ କଥା'ର ସତ୍‌ଚାଳିଶ ଖଣ୍ଡରେ ସର୍ବପ୍ରଥମେ ଜରାସନ୍ଧର ମଥୁରା ଆକ୍ରମଣ ବିଷୟ ବର୍ଣ୍ଣିତ ହୋଇଛି । ଜରାସନ୍ଧ ଯୁଦ୍ଧ କରିବାକୁ ସେମାନଙ୍କ ସହିତ ମଥୁରା ଆସିଥିଲା । ଭଗବାନ ତାକୁ ପରାସ୍ତ କରି ଜୀବିତ ଛାଡ଼ି ଦେଇଥିଲେ । ଏହିପରି ସେ ୧୭ଥର ମଥୁରା ଆକ୍ରମଣ କରିଥିଲା ଓ ସର୍ବଦା ପରାସ୍ତ ହୋଇ ପଳାଇ ଯାଉଥିଲା । ଅଷ୍ଟାଦଶ ଥର ସେ ଯେତେବେଳେ ମଥୁରା ଆକ୍ରମଣ କଲା, ସେତେବେଳେ ଯବନରାଜ କାଲଯବନ ମଧ୍ୟ ଯାଦବମାନଙ୍କ ଉପରେ ଆକ୍ରମଣ କଲା । ଭଗବାନ ଏ ଦୁହିଁଙ୍କର ବଳ ପରୀକ୍ଷା କରି ଦେଖୁଥିଲେ । ସେ ବଳଦେବଙ୍କଠାରୁ ଅନୁମତି ଆଣିଥିଲେ । ଶେଷରେ ନିଜର ଯୋଗମାୟା ବଳରେ ସେ ଯାଦବମାନଙ୍କୁ ଦ୍ୱାରକା ପଠାଇଦେଲେ ଓ ନିଜେ ସ୍ୱୟଂ ଭୟଭୀତଙ୍କ ଭଳି ଅଭିନୟ କରି ରଣ ଛାଡ଼ି ଦୂରେଇ ଠିଆ ହେଲେ । କାଲଯବନ ମଧ୍ୟ ନିରାୟୁଧ ହୋଇ ତାଙ୍କ ପଛେ ପଛେ ଗୋଡ଼ାଇଲା । ମୁଚୁକୁନ୍ଦଙ୍କ ଗୁମ୍ଫା ନିକଟକୁ ନେଇ ଭଗବାନ ତାକୁ ମୁଚୁକୁନ୍ଦଙ୍କଦ୍ୱାରା ମରାଇଲେ ଓ ମହାରାଜ ମୁଚୁକୁନ୍ଦଙ୍କୁ ବରଦାନ ଦେଲେ । ମାୟା ବଳରେ ସେ କାଲଯବନର ଘର ଲୁଟ୍‌ପାଟ୍ କରାଇ ଯେତେବେଳେ ଗଣ୍ଠିରୀ ଧରୀ ଯିବାକୁ ବାହାରନ୍ତି, ସେତେବେଳେ ଜରାସନ୍ଧ ଆସି ସେଠାରେ ପହଞ୍ଚିଲା । ତାର ସୈନ୍ୟମାନେ ଶ୍ରୀକୃଷ୍ଣଙ୍କୁ ଘେରିଗଲେ । ଲୁଟ୍‌ପାଟ ଧନର ମୋହ ଛାଡ଼ି ଦୁଇହାତର ମୁଠା ଟାଣକରି ସେ ବାହାରେ ଆସି ଠିଆ ହେଲେ । ସଙ୍ଗେ ସଙ୍ଗେ ସେ ପ୍ରବର୍ଷଣ ପର୍ବତ ଉପରକୁ ଚଢ଼ିଗଲେ ଓ ଅନ୍ୟ ପଟରେ ଲୁଚିଯାଇ ତା ସମ୍ମୁଖକୁ ଡେଇଁପଡ଼ି ତା ଆଖିକୁ ଧୂଳି ଛାଟି ଦେଲେ ଓ ସେ ଆଖି ବନ୍ଦ କରିଦେବା ମାତ୍ରେ ଶ୍ରୀକୃଷ୍ଣ ଦ୍ୱାରକାପୁରୀ ଚାଲିଗଲେ ।

ଦ୍ୱାରକା ଆସି ରୁକ୍ମିଣୀଙ୍କ ସହିତ ଭଗବାନଙ୍କର ବିବାହ ଓ ରୁକ୍ମୀଙ୍କୁ ଯୁଦ୍ଧରେ ପରାଜିତ କରିବା ଆଦି କଥା ଏଥିରେ ବର୍ଣ୍ଣିତ ହୋଇଛି । ରୁକ୍ମିଣୀଙ୍କର ପ୍ରଥମ ପୁତ୍ରରୂପେ ପ୍ରଦ୍ୟୁମ୍ନଙ୍କର ଜନ୍ମ ମଧ୍ୟ ଏହି ଖଣ୍ଡରେ ବର୍ଣ୍ଣିତ ହୋଇଛି । ଏହି କଥାରେ ପ୍ରଦ୍ୟୁମ୍ନଙ୍କୁ ସୂତିକାଘରୁ କିପରି ଅସୁର ଉଠାଇ ନେଲା ତାହା ମଧ୍ୟ କୁହାଯାଇଛି ।

ଭଗବାନ ଦ୍ୱାରକା ଆସି ଷୋଳ ହଜାର ଏକଶହ ଆଠ ପତ୍ନୀ ଗ୍ରହଣ କରିଥିଲେ । ଏମାନଙ୍କ ମଧ୍ୟରୁ ପ୍ରଧାନ ଆଠ ଜଣଙ୍କୁ ଭଗବାନ ବିବାହ କରିଥିଲେ । ଏମାନଙ୍କୁ ଅଷ୍ଟପାଟ ବଂଶୀ କୁହାଯାଏ । ଏହି ଖଣ୍ଡରେ ସତ୍ରାଜିତ ଉପାଖ୍ୟାନ ରହିଛି । ଭଗବାନ କିପରି ସତ୍ରାଜିତଠାରୁ ସ୍ୟମନ୍ତକ ମଣି ପାଇଲେ, ଶତଧନ୍ୱା କିପରି ସତ୍ରାଜିତକୁ ମାରିଦେଲେ, ଶତଧନ୍ୱାଙ୍କ ସହ ଅକ୍ରୂର କୃତବର୍ମା କିପରି ଦ୍ୱାରକା ଛାଡ଼ି ଚାଲିଗଲା ଆଦି ଅଦ୍ଭୁତ କଥା ଏହି ଖଣ୍ଡରେ କୁହାଯାଇ ପ୍ରସଙ୍ଗ ସମାପ୍ତ ହୋଇଛି । ଏହାପରେ ଭଗବାନଙ୍କର ଚତୁର୍ଥ, ପଞ୍ଚମ ଓ ଷଷ୍ଠ ବିବାହ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ଓ 'ଭାଗବତ କଥା'ର ୪୭ ଖଣ୍ଡ ସମାପ୍ତ ହୋଇଛି ।

ଅଡ଼ଚାଳିଶ ଖଣ୍ଡରେ ଭଗବାନଙ୍କର ବିବାହ କଥାର କ୍ରମ ରଖାଯାଇ ତାଙ୍କର ସପ୍ତମ ଓ ଅଷ୍ଟମ ବିବାହ କଥା ବର୍ଣ୍ଣିତ ହୋଇଛି । ଏହାପରେ ଷୋଳ ହଜାର ଏକଶହ କନ୍ୟାଙ୍କୁ କିପରି ବରଣ କରିଥିଲେ ତାହା ବର୍ଣ୍ଣନା କରାଯାଇଛି । ଭୌମାସୁର କିପରି ଏହି ଷୋଳ ହଜାର ଏକଶହ ରାଜକନ୍ୟାଙ୍କୁ ଅନ୍ୟାୟରେ ବନ୍ଦୀ କରି ରଖିଥିଲା, ଇନ୍ଦ୍ରଙ୍କ ପ୍ରାର୍ଥନାରେ ଭଗବାନ କିପରି ଭୌମାସୁରକୁ ମାରି ସେହି କନ୍ୟାମାନଙ୍କୁ ଉଦ୍ଧାର କଲେ, ଏହି ଅଦ୍ଭୁତ କାହାଣୀ ଏଥିରେ ବର୍ଣ୍ଣିତ ହୋଇଛି । ଏହାପରେ ଭଗବାନ୍ ପାଟରାଣୀ ସତ୍ୟଭାମାଙ୍କୁ ସଙ୍ଗରେ ନେଇ ସ୍ୱର୍ଗପୁରକୁ ଭ୍ରମଣ କରିବାକୁ ଯିବା, ସେଠାରୁ ପାରିଜାତ ପୁଷ୍ପ କାରଣରୁ ଇନ୍ଦ୍ରଙ୍କ ସହିତ ଯୁଦ୍ଧ ହେବା, ସ୍ୱର୍ଗରୁ ପାରିଜାତ ବୃକ୍ଷ ଆଣି ଦ୍ୱାରକା ଫେରିବା, ଷୋଳ ସହସ୍ର ଏକଶହ ଆଠ ପତ୍ନୀଙ୍କର ସନ୍ତାନମାନଙ୍କ କଥା, ସୂତିକା ଗୃହରୁ ରୁକ୍ମିଣୀନନ୍ଦନ ପ୍ରଦ୍ୟୁମ୍ନଙ୍କୁ ଶମ୍ବରାସୁର ହରଣ କରି ନେବା କଥା, କାମାବତାର କାମଦେବଙ୍କ ପତ୍ନୀ ରତିଙ୍କ କଥା, ଶମ୍ବରାସୁର ବଧ କଥା, ଅଷ୍ଟପାଟରାଣୀଙ୍କର ଦଶ ପୁତ୍ର ଓ ଏକ କନ୍ୟାଙ୍କ କଥା, ରୁକ୍ମୀଙ୍କ କନ୍ୟା ସହିତ ପ୍ରଦ୍ୟୁମ୍ନଙ୍କର ବିବାହ କଥା, ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧଙ୍କ ବିବାହ କଥା ଓ ଏହି ବିବାହରେ ବଳଦେବଙ୍କଦ୍ୱାରା ରୁକ୍ମୀ ମାମାଙ୍କ ବଧ କଥା ଆଦି କୁହାଯାଇ ଭଗବାନଙ୍କର ବିବାହ ଓ ପୁତ୍ରକନ୍ୟାଙ୍କ କଥା ସମାପ୍ତ କରାଯାଇଛି ।

ଏହାପରେ ରୁକ୍ମିଣୀଙ୍କ ସହିତ ଭଗବାନଙ୍କର ବିନୋଦ, ପ୍ରିୟତମଙ୍କ ଭାବକୁ ବୁଝିପାରି ପ୍ରିୟାଙ୍କର ହସ, ପରସ୍ପର ମଧ୍ୟରେ ଯୁକ୍ତିତର୍କ ହୋଇ ବିନୋଦ ସମାପ୍ତ । ଏହିଭଳି ଭଗବାନଙ୍କର ସତ୍ୟଭାମାଙ୍କ ସହିତ ମଧ୍ୟ ବିନୋଦ ହୋଇଥିଲା । ଏହାପରେ ଉଷା ଅନିରୁଦ୍ଧଙ୍କ କଥା ବର୍ଣ୍ଣିତ ହୋଇଛି । ଏଥିରେ ବାଣାସୁର ତରଫରୁ ଶିବଙ୍କର ଯାଦବଙ୍କ ସହିତ ଯୁଦ୍ଧ, ଭଗବାନଙ୍କର ଶିବଙ୍କ ସହିତ ଯୁଦ୍ଧ ଓ ପରେ ମିଳନ, ଉଷା ଅନିରୁଦ୍ଧଙ୍କ ବିବାହ ପ୍ରସଙ୍ଗ କଥା କୁହାଯାଇଛି । ତଦନନ୍ତର ନୃଗୋଦ୍ଧାର କଥା । ଏହି ପ୍ରସଙ୍ଗରେ ବ୍ରାହ୍ମଣଧନ ହରଣ ନ କରିବାକୁ ଭଗବାନଙ୍କର ଯାଦବମାନଙ୍କୁ ଉପଦେଶ ଓ ଏହାପରେ ବଳଦେବଙ୍କ ଚରିତ ବର୍ଣ୍ଣନା କରାଯାଇଛି ।

ବ୍ରଜବାସୀମାନଙ୍କୁ ଭେଟିବା ପାଇଁ ବଳଦେବ ଦ୍ୱାରକାରୁ ବ୍ରଜକୁ ଆସିବା । ସେଠାକୁ ଆସି ସେ ପୁନଶ୍ଚ ରସମୟ କ୍ରୀଡ଼ା କରିବା, ମଝିରେ ମିଥ୍ୟା ବସୁଦେବ ତଥା କାଶୀରାଜଙ୍କର କୃତ୍ୟାର କୁପରିଣାମ କଥା କୁହାଯାଇ ବଳଦେବ ଯେପରି ଦ୍ୱିବିଦ ବାନରକୁ ବଧ କରିଥିଲେ ତାହା କୁହାଯାଇଛି । ଏହିଠାରେ 'ଭାଗବତ କଥା'ର ୪୮ ଖଣ୍ଡ ସମାପ୍ତ ହୋଇଛି । ଏବେ ୪୯ ଖଣ୍ଡର କଥା କୁହାଯିବ ।

ଅଣଚାଶ ଖଣ୍ଡରେ ସର୍ବପ୍ରଥମେ ଜାମ୍ବବତୀ ପୁତ୍ର ସାମ୍ବ ଦୁର୍ଯ୍ୟୋଧନଙ୍କ କନ୍ୟା ଲକ୍ଷ୍ମଣାଙ୍କୁ ଅପହରଣ କରିନେବା ଓ କୌରବମାନେ ତାଙ୍କୁ ଧରି ବାନ୍ଧି ପକାଇବା କଥା କୁହାଯାଇଛି । ଏଥିପାଇଁ ବଳରାମ ଯାଇ କୌରବମାନଙ୍କୁ କଡ଼ା କଥାରେ ତିରସ୍କାର କରିବା, ସେମାନେ ଏଥିରେ କୁପିତ ହେବା, ବଳରାମ ମଧ୍ୟ ହସ୍ତିନାପୁରକୁ ଓଲଟାଇ ଦେବା କଥା ଆଦି କୁହାଯାଇ ପ୍ରସଙ୍ଗ ସମାପ୍ତ କରାଯାଇଛି ଏବଂ ସାମ୍ବ ଓ ଲକ୍ଷ୍ମଣାଙ୍କର ବିବାହ ସମ୍ପନ୍ନ ହୋଇଛି ।

ଦିନେ ନାରଦଙ୍କର ସଂଶୟ ଉପୁଜିଛି ଯେ, ଭଗବାନ ଏକା ଷୋଳ ସହସ୍ର ଏକଶହ ଆଠ ରାଣୀଙ୍କୁ କିପରି ସନ୍ତୁଷ୍ଟ କରି ପାରୁଛନ୍ତି । ସେ ସମସ୍ତ ରାଣୀଙ୍କ ମହଲକୁ ଯାଇଛନ୍ତି ଓ ଭଗବାନଙ୍କୁ ସମସ୍ତଙ୍କ ଘରେ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ଥିବାର ଦେଖିଛନ୍ତି । ଏଥିରେ ତାଙ୍କର ସଂଶୟ ଦୂର ହୋଇଯାଇଛି । ଏହାପରେ ଭଗବାନଙ୍କ ପୁରୀର ଦିନଚର୍ଯ୍ୟାର ବର୍ଣ୍ଣନା । ଏହାପରେ ରାଜସୂୟ ଯଜ୍ଞ ପ୍ରସଙ୍ଗ ଆରମ୍ଭ ହୋଇଛି ।

ଜରାସନ୍ଧ ସହସ୍ର ରାଜାଙ୍କୁ ବନ୍ଦୀ କରି ରଖିଥିଲା । ସେମାନେ ଗୁପ୍ତ ଦୂତଦ୍ୱାରା ନିଜ ନିଜର ମୁକ୍ତି ପାଇଁ ଶ୍ୟାମସୁନ୍ଦରଙ୍କ ନିକଟକୁ ସନ୍ଦେଶ ପଠାଉଥିଲେ । ସେହି ସମୟରେ ନାରଦ ଧର୍ମରାଜଙ୍କର ରାଜସୂୟ ଯଜ୍ଞ ସମ୍ବନ୍ଧୀୟ ନିମନ୍ତ୍ରଣ ନେଇ ଆସିଲେ । ପ୍ରଶ୍ନ ଉଠିଲା,

ପ୍ରଥମେ ଭଗବାନ କେଉଁଠାକୁ ଯିବେ । ଉଦ୍ଧବଙ୍କୁ ପଚ୍ଚ କରାଯିବାରୁ ସେ ନିର୍ଣ୍ଣୟ ଦେଲେ ଯେ, ପ୍ରଥମେ ଇନ୍ଦ୍ରପ୍ରସ୍ଥ ଯିବା ଉଚିତ । ଉଦ୍ଧବଙ୍କର କଥା ମାନି ଭଗବାନ ସମସ୍ତ ସେବକ, ସୈନ୍ୟ ଓ ପରିବାର ସହିତ ଇନ୍ଦ୍ରପ୍ରସ୍ଥ ଯାତ୍ରା କଲେ । ପାଣ୍ଡବମାନେ ଭଗବାନଙ୍କୁ ହାର୍ଦ୍ଦିକ ସ୍ୱାଗତ ଜଣାଇଲେ । ରାଜସୂୟ ଯଜ୍ଞର ପ୍ରସ୍ତାବ ହେଲା । ରାଜସୂୟରେ ଜରାସନ୍ଧକୁ କଣ୍ଟକ ବୋଲି ଜାଣି ତାକୁ ମାରିବା ପାଇଁ ଭୀମ ଓ ଅର୍ଜୁନଙ୍କ ସହିତ ଶ୍ୟାମସୁନ୍ଦର ବେଶ ବଦଳାଇ ମଗଧ ଯାତ୍ରା କଲେ । ବ୍ରାହ୍ମଣ ବେଶରେ ଯାଇ ଏମାନେ ଯୁଦ୍ଧ ଭିକ୍ଷା କଲେ । ଜରାସନ୍ଧ ଓ ଭୀମଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଜରାସନ୍ଧର ମୃତ୍ୟୁ ହେବାରୁ ବନ୍ଦୀ ରାଜାମାନେ ଭଗବାନଙ୍କୁ ଦର୍ଶନ କଲେ ଓ ବନ୍ଦନା କଲେ । ଭଗବାନ ସେମାନଙ୍କ ସ୍ତୁତି ଶୁଣି ଜରାସନ୍ଧ ସୁତ ସହଦେବଦ୍ୱାରା ସେମାନଙ୍କୁ ଯଥୋଚିତ ସମ୍ମାନର ସହିତ ପୂଜା କରାଇ ବିଦାୟ ଦେଲେ ଓ ସହଦେବଙ୍କୁ ଗାଦିରେ ବସାଇ ଇନ୍ଦ୍ରପ୍ରସ୍ଥ ଫେରି ଆସିଲେ । ଧର୍ମରାଜଙ୍କର ଆନନ୍ଦର ସୀମା ରହିଲା ନାହିଁ । ଖୁବ୍ ଜାକ୍‌ଜମକରେ ରାଜସୂୟ ଯଜ୍ଞ ହେଲା । ଯଜ୍ଞ ଶେଷରେ ଅଗ୍ରପୂଜାର ପ୍ରଶ୍ନ ଉଠିଲା । ସହଦେବ ଅଚ୍ୟୁତଙ୍କୁ ହିଁ ଅଗ୍ରପୂଜାର ପାତ୍ର ବୋଲି କହିଲେ । ଶିଶୁପାଳ ଏହାର ଘୋର ବିରୋଧ କଲା । ସେ ଗୋବିନ୍ଦଙ୍କୁ ଗଣି ଗଣି ଗାଳିଦେଇ ନାନାପ୍ରକାର କଟୁ କଥା କହିଲା । ଭଗବାନ ତା ଶିରକୁ କାଟି ଗଣ୍ଡିରୁ ଅଲଗା କରିଦେଲେ । ଧର୍ମରାଜଙ୍କର ପୂଜା ସ୍ୱୀକାର କରାଯାଇ ଅବଭୃତ ସ୍ନାନ କରାଗଲା । ଯଜ୍ଞ ସମାପ୍ତ ହେଲା । ଏହା ସଙ୍ଗେ ସଙ୍ଗେ 'ଭାଗବତ କଥା'ର ୪୯ ଖଣ୍ଡ ସମାପ୍ତ ହେଲା । ଏବେ ୫୦ ଖଣ୍ଡର କଥା କୁହାଯିବ ।

ପଚାଶ ଖଣ୍ଡରେ ସର୍ବପ୍ରଥମେ ଶାଲ୍ୱ ପ୍ରକରଣ ବର୍ଣ୍ଣିତ ହୋଇଛି । ଭଗବାନଙ୍କ ପରୋକ୍ଷରେ ଶାଲ୍ୱ ଦ୍ୱାରକା ଉପରେ ଆକ୍ରମଣ କରିଦେଲା । ପ୍ରଦ୍ୟୁମ୍ନ ଓ ଶାଲ୍ୱଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା, ଅନ୍ୟ ଯାଦବମାନେ ବି ଯୁଦ୍ଧ କଲେ । ଶ୍ୟାମସୁନ୍ଦର ଏହା ଶୁଣିବା ମାତ୍ରେ ଆସି ପହଞ୍ଚିଗଲେ ଓ ଶାଲ୍ୱକୁ ମାରିଦେଲେ । ଶାଲ୍ୱର ପକ୍ଷନେଇ ଦନ୍ତବକ୍ର ଓ ବିଦୁରଥ ଯୁଦ୍ଧ କରିବାକୁ ଆସି ମୃତ୍ୟୁବରଣ କଲେ । ଏହାପରେ ବଳଦେବଙ୍କ ଚରିତ୍ର ଏଥିରେ ବର୍ଣ୍ଣିତ ହୋଇଛି । ମହାଭାରତ ଯୁଦ୍ଧରେ ତଟସ୍ଥ ହୋଇ ବଳଦେବ ତୀର୍ଥଯାତ୍ରା ନିମିତ୍ତ ବାହାରିଲେ । ସେ ନୈମିଷାରଣ୍ୟରେ ସୂତ ଓ ବଲ୍ୱଳଙ୍କୁ ବଧ କଲେ । ସେଠାରେ ସେ ପ୍ରାୟଶ୍ଚିତ ସ୍ୱରୂପ ଯଜ୍ଞ କଲେ । ଏହାପରେ ସରସ ସୁଖଦ ସୁଦାମା ଚରିତ ଆରମ୍ଭ ହୋଇଛି ।

ପତ୍ନୀଙ୍କ କଥା ରକ୍ଷାକରି ସୁଦାମା ନିଜର ବାଲ୍ୟସଖା ଶ୍ୟାମସୁନ୍ଦରଙ୍କୁ ଦେଖା କରିବା ପାଇଁ ଦ୍ୱାରକା ଗଲେ । ସେଠାରେ ମିତ୍ର-ମିତ୍ରଙ୍କର ମନୋହର ମିଳନ ହେଲା । ଉଭୟେ ମିଶି କୁଶଳ ସମାଚାର ଆଦି ଦୁଃଖ ସୁଖ ହେଲେ । ଶ୍ୟାମସୁନ୍ଦର ସୁଦାମା ନେଇଥିବା ଖୁଦଭଜା ତାଙ୍କଠାରୁ ଛଡ଼ାଇ ଖାଇଲେ । ଶେଷରେ ଅତି ଦୁଃଖିତ ହୋଇ ମିତ୍ରଙ୍କୁ ବିଦାୟ ଦେଲେ । ସୁଦାମା ଘରକୁ ଆସି ଦେଖିଲେ ଯେ, ସୁଦାମାର ଜୀର୍ଣ୍ଣ କୁଟୀର ସୁବର୍ଣ୍ଣପୁରୀରେ ପରିଣତ ହୋଇଛି । ଏହି ପର୍ଯ୍ୟନ୍ତ ସୁଦାମା ଚରିତ୍ର କୁହାଯାଇ କୁରୁକ୍ଷେତ୍ରରେ ଚନ୍ଦ୍ରଗ୍ରହଣ ବୁଡ଼ (ମେଳା)ରେ ଭଗବାନଙ୍କର ବ୍ରଜବାସୀମାନଙ୍କର ମିଳନ ପ୍ରସଙ୍ଗ କୁହାଯାଇଛି । ଭଗବାନଙ୍କ ମା' ଯଶୋଦାଙ୍କ ସହିତ ମିଳନ, ଦେବକୀ ଓ ରୋହିଣୀଙ୍କ ସହିତ ମିଳନ ଓ କ୍ରନ୍ଦନ—ଏକାନ୍ତରେ ଗୋପୀଗଣଙ୍କ ସହିତ ମିଳନ ଓ କରୁଣାରେ ଦ୍ରବିତ ହେବା—ଦ୍ରୌପଦୀ ଓ ଭଗବାନଙ୍କର ପତ୍ନୀମାନଙ୍କର ମିଳନ ଓ ନିଜ ନିଜର ବିବାହ ପ୍ରସଙ୍ଗରେ କଥୋପକଥନ—ମୁନିଗଣଙ୍କର ଭଗବାନଙ୍କୁ ଦର୍ଶନ ଓ ବିଭିନ୍ନ ଆଲୋଚନା । ମୁନିଗଣଙ୍କ କହିବା ଅନୁସାରେ କୁରୁକ୍ଷେତ୍ରରେ ବସୁଦେବଙ୍କ ଦ୍ୱାରା ଏକ ବିରାଟ ଯଜ୍ଞର ଆୟୋଜନ—ଶେଷରେ ବଡ଼ କଷ୍ଟରେ ଗୋପ, ଗୋପୀ, ଶ୍ୟାମସୁନ୍ଦରଙ୍କ ନିକଟରୁ ବିଦାୟ ନେବା—ଶ୍ୟାମସୁନ୍ଦର ପରିବାର ସହିତ ଦ୍ୱାରକା ଯିବା—ଏହିଠାରେ 'ଭାଗବତ କଥା'ର ୫୦ ଖଣ୍ଡ ସମାପ୍ତ ହୋଇଛି । ଏହାପରେ ୫୧ ଖଣ୍ଡର କଥା ସୂଚୀ କୁହାଯିବ ।

ଏକାବନ ଖଣ୍ଡରେ ବସୁଦେବଙ୍କର ଆତ୍ମଜ୍ଞାନ ଲାଭ ହେବା—ସେ ଭଗବାନଙ୍କଠାରେ ପୁତ୍ରଜ୍ଞାନ ନକରି ଭଗବତ୍ ଭାବରେ ତାଙ୍କୁ ସ୍ତୁତି କରିବାକୁ ଲାଗିବା । ଦେବକୀ ମଧ୍ୟ ପୁତ୍ରକୁ ଭଗବାନ ଜାଣି ନିଜର ମୃତପୁତ୍ରମାନଙ୍କୁ ଦର୍ଶନ କରିବାକୁ ଇଚ୍ଛା ପ୍ରକାଶ କରିବା—ଭଗବାନ ସେହି ପୁତ୍ରମାନଙ୍କୁ ଡକାଇ ମାତାଙ୍କୁ ଦର୍ଶନ କରାଇବା—ତାହାପରେ ଅର୍ଜୁନ ଓ ସୁଭଦ୍ରାଙ୍କ ପ୍ରଣୟ ତଥା ହରଣ ଦୁଇ ଅଧ୍ୟାୟରେ କୁହାଯାଇଛି । ତାହାପରେ ରାଜା ଜନକ ଓ ଶ୍ରୁତଦେବ ବିପ୍ର ଏହି ଦୁଇ ଭକ୍ତଙ୍କ ଉପରେ ଏକସଙ୍ଗେ ଭଗବାନଙ୍କର କୃପାବାରି ବର୍ଷଣ—ତଦନନ୍ତର ହରିହର ଭକ୍ତଙ୍କ ଭେଦର ରହସ୍ୟ, ବୃକାସୁର କବଳରେ ପଡ଼ିଥିବା ଶମ୍ଭୁଙ୍କର ଉଦ୍ଧାର କଥା କୁହାଯାଇଛି ।

ଦିନେ ଋଷିଗଣ ବସି ତିନିଦେବଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ଏହି ବିଷୟରେ ଆଲୋଚନା କରୁଥିଲେ । ଭୃଗୁ ତିନିଦେବଙ୍କୁ ପରୀକ୍ଷା କରିବାକୁ ଗଲେ । ଶେଷରେ ବିଷ୍ଣୁ ହିଁ ସର୍ବଶ୍ରେଷ୍ଠ ଏହାର ପ୍ରମାଣ ପାଇଲେ । ଏହି ପର୍ଯ୍ୟନ୍ତ ଏହିସବୁ ସୁଖଦ କଥା କୁହାଯାଇଛି । ଏବେ ଦୁଃଖଦ କଥା କୁହାଯିବ । ଭଗବାନଙ୍କର ଯେତେବେଳେ ସଂକଳ୍ପ ହେଲା ଯେ, ମୁଁ ସ୍ୱଧାମ ଯିବି, ସେତେବେଳେ ତାଙ୍କର ପ୍ରେୟସୀ ମହୀଷିଗଣଙ୍କୁ ସ୍ୱତଃ ଏହି ଆଭାସ ମିଳିଗଲା । ସେମାନଙ୍କ ମୁଖରୁ ସ୍ୱତଃ ବିରହମୟ ବିଳାପ ପ୍ରକାଶ ପାଇଲା । ସେମାନେ ଅତ୍ୟନ୍ତ କରୁଣ ସ୍ୱରରେ ବିରହର ଗୀତ ଗାନ କରିବାକୁ ଲାଗିଲେ । କୁରରୀ, ଚକୋରୀ, ସମୁଦ୍ର, ଚନ୍ଦ୍ର, ମଳୟାନିଳ, ସରିତ, କୋକିଳ, ପର୍ବତ ଓ କଳାମେଘ ଆଦିକୁ ଉପଲକ୍ଷ୍ୟ କରି ସେମାନେ ନିଜ ନିଜର ଭାବକୁ ବ୍ୟକ୍ତ କରିବାକୁ ଲାଗିଲେ । ଏହି ଦଶଗୀତ ଅତ୍ୟନ୍ତ ମର୍ମସ୍ପର୍ଶୀ ।

ଏହାପରେ ଜଣେ ଦ୍ୱିଜର ମୃତପୁତ୍ରକୁ ଅର୍ଜୁନଙ୍କ ପ୍ରତିଜ୍ଞାରେ ପରମ ବୈଷ୍ଣବ-ଧାମରୁ ଫେରାଇ ଆଣିବା କଥା କୁହାଯାଇଛି । ଶ୍ରୀକୃଷ୍ଣଙ୍କ ପତ୍ନୀଗଣଙ୍କର ଲୀଳା ବିହାର ତଥା ପ୍ରଳାପ କଥା ଓ ଭଗବତ୍ ଚରିତର ଉପସଂହାର ଏଠାରେ କରାଯାଇ 'ଭାଗବତ କଥା'ର ଏକାବନ ଖଣ୍ଡ ସମାପ୍ତ କରାଯାଇଛି । ଏହା ସହିତ ଏହିଠାରେ ଷଷ୍ଠାହ ପାରାୟଣର ବିଷୟ ସୂଚୀ ମଧ୍ୟ ସମାପ୍ତ ହୋଇଛି ।

ସୁତ କହିଲେ—''ମୁନିଗଣ ! ମୁଁ ଆପଣମାନଙ୍କୁ ଏ ପର୍ଯ୍ୟନ୍ତ ଷଷ୍ଠାହ ପାରାୟଣର ବିଷୟ ସୂଚୀ ଶୁଣାଇଲି । ଏବେ ଆପଣମାନେ ଧ୍ୟାନପୂର୍ବକ ସପ୍ତମାହ ପାରାୟଣର ବିଷୟ ସୂଚୀ କଥା ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

କୃଷ୍ଣ-ବାଣ ସଂଗ୍ରାମ୍ ଶମ୍ଭୁ-ହରି ସଁଗ ଲଡ଼ାଇ ।
ରାଜା ନୃଗ କୀ କଥା କହୀ ଅତି ପରମ ସୁହାଇ ।।
ବଳଦାଉ ବ୍ରଜଗମନ ପୌଣ୍ଡ୍ରବଧ ସାମ୍ବ-ସଗାଇ ।
ଗୃହଚର୍ଯ୍ୟା ଅତି ଦିବ୍ୟ ଶ୍ୟାମ ନାରଦ କହିଁ ଦିଖାଇ ।।
ଜରାସନ୍ଧ ବଧ ଭୀମ ତେଂ, ରାଜସୂୟ କୋ ବୃତ ସବ ।
ଶାଲ୍ୱ ଔର ଶିଶୁପାଲ ବଧ, କହ୍ୟୋ ସୁଦାମା ଚରିତ ତବ ।।

କୁରୁକ୍ଷେତ୍ର ମେଂ ଭୟୋ ମିଲନ ବ୍ରଜବାସିନି ତେଂ ଜ୍ୟୋଂ ।
ଲଇକି ମିଲେ ଘନଶ୍ୟାମ ପିତା-ମାତା ବଲ ସଁଗ ତ୍ୟୋଂ ।।
କୃଷ୍ଣା ମହିଷୀ ବାତ ସରସତା ଛାଇ ସବ ପୈ ।
ଜନକ, ଜନନି, ଦ୍ୱିଜ ତଥା କୃପା କୈଥିଇ କୃପତି ପୈ ।।
ହର, ଭୃଗୁ, ଅରଜୁନ ପୈ କୃପା, କରୀ ସବନି କୋ ଦୁଃଖ ହରେ୍ୟା ।
ଗାୟୌ ମହିଷୀ ଗୀତ ପୁନି, ଷଷ୍ଠ ଆହ ପୂରନ କରେ୍ୟା ।।



# ସପ୍ତମାହର ବିଷୟ ସୂଚୀ (ପ୍ରଥମ)

**ବିପ୍ରଶାପାପଦେଶେନ ସଂହାରଃ ସ୍ୱକୁଳସ୍ୟ ଚ ।**
**ଉଦ୍ଧବସ୍ୟ ଚ ସମ୍ବାଦୋ ବାସୁଦେବସ୍ୟ ଚାଦ୍‌ଭୁତଃ ॥** ★
(ଶ୍ରୀ ଭା: ୧୨ସ୍କ: ୧୨ଅ: ୪୧ଶ୍ଳୋକ)

ଷଟ୍‌ପଦୀ

ସପ୍ତମାହ ମେଂ ଶାପ ଦିବାୟୋ ନିଜକୁଲ ଗର୍ବିତ ।
ନାରଦ ଅରୁ ବସୁଦେବ କହ୍ୟୋ ସମ୍ବାଦ ସୁଶୋଭିତ ॥
ନବ ଯୋଗେଶ୍ୱର ଜ୍ଞାନ କହ୍ୟୋ ଅବଧୂତ ସୁ-ଗୀତା ।
ଉଦ୍ଧବ ଗୀତା କହ୍ୟୋ ସୁନତ ଛୁଟୈ ଭବ-ଭୀତା ॥
ହଂସ ଜ୍ଞାନ ପୁନି ଭକ୍ତି ଅରୁ, ଧ୍ୟାନ ସିଦ୍ଧି ସବହିଂ କହୀଂ ।
ପୁନି ହରି କହୁ ବରନନ କରୀଂ, ଜୋ ବିଭୂତି ଉନିକୀ ରହୀଂ ॥

ହରି ସ୍ୱୟଂ ଜଗତ ରୂପକ ଜାଲ ସୃଷ୍ଟି କରିଛନ୍ତି । ସେ ତାହା ପୁନଶ୍ଚ ଉଦରସ୍ଥ କରୁଛନ୍ତି । ନିଜେ ସୃଷ୍ଟି କରି ନିଜେ ସଂହାର କରୁଛନ୍ତି । ନିଜେ ବିଭିନ୍ନ ରୂପରେ ପ୍ରକାଶିତ ହୋଇଛନ୍ତି ଓ ପୁନଶ୍ଚ ସ୍ୱୟଂ ସେହି ବିଷୟର ବିଷୟଗୁଡ଼ିକର ବିଷୟ ସୂଚୀ ପ୍ରସ୍ତୁତ କରି ସେଗୁଡ଼ିକର ନାମ ନିର୍ଦ୍ଦେଶ କରିଛନ୍ତି । ସବୁଥିରେ ସର୍ବତ୍ର ସବୁରୂପରେ ସେହି ଶ୍ରୀହରିଙ୍କୁ ହିଁ ଦର୍ଶନ କରିବା ଜୀବନର ଚରମ ଲକ୍ଷ୍ୟ । ଏହା ହିଁ ଶାସ୍ତ୍ରର ସାର ବଚନ । ଏହା ହିଁ ସବୁକିଛି ଲେଖାପଢ଼ାର ଫଳ ।

ସୂତ କହିଲେ—"ମୁନିଗଣ ! ମୁଁ ଷଷ୍ଠାହ ବିଷୟ ସୂଚୀ 'ଭାଗବତ କଥା'ର ଏକାବନ ଖଣ୍ଡରେ ଆପଣମାନଙ୍କୁ କହିଥିଲି । ଏବେ ସପ୍ତମାହର ବିଷୟ ସୂଚୀ ୫୨ ଖଣ୍ଡରେ କହୁଅଛି ।

ବାବନ ଖଣ୍ଡରେ ସର୍ବପ୍ରଥମେ ବ୍ରାହ୍ମଣମାନେ ଯଦୁକୁଳର ସାମ୍ବାଦି କୁମାରମାନଙ୍କର ଅଶିଷ୍ଟ ଆଚରଣ କାରଣରୁ ସେମାନଙ୍କୁ ବିନାଶ ହେବାର ଶାପ ଦେଲେ । ଉଗ୍ରସେନଙ୍କ ଦ୍ୱାରା ଶାପର ପ୍ରତିକାର କରାଯାଇ ସମସ୍ତ ବ୍ୟର୍ଥ ହେଲା । ସାମ୍ବଙ୍କ ପେଟରୁ ବାହାରିଥିବା ମୂଷଳଖଣ୍ଡକୁ ସମୁଦ୍ରରେ ଫିଙ୍ଗିଦିଆ ଯାଇଥିଲା । ଏହି କଥାକୁ ଏଠାରେ ଅସମ୍ପୂର୍ଣ୍ଣ ରଖାଯାଇ ନାରଦ ଓ ବସୁଦେବଙ୍କର ଅଧ୍ୟାତ୍ମ ସମ୍ବାଦ ଆରମ୍ଭ କରାଯାଇଛି । ବସୁଦେବ ନାରଦଙ୍କୁ କେତେକ ପ୍ରଶ୍ନ ପଚାରିଛନ୍ତି ।ଏହି ପ୍ରସଙ୍ଗରେ ନବଯୋଗେଶ୍ୱରଗଣ ଓ ମହାବିଦେହଙ୍କର ସମ୍ବାଦ ନାରଦ ଶୁଣାଇଛନ୍ତି । ମହାରାଜ ବିଦେହ ପ୍ରଶ୍ନ କରିବାରୁ ସବୁଠାରୁ ବଡ଼ ଯୋଗେଶ୍ୱର 'କବି' ଭକ୍ତି ତଥା ନାମସଂକୀର୍ତ୍ତନର ମହିମା ବର୍ଣ୍ଣନା କରିଛନ୍ତି । ପୁନଶ୍ଚ ଯୋଗେଶ୍ୱର 'ହରି' ଭଗବଦ୍

---

★ ବାଳକେ ଉପହାସ କଲେ । ଋଷିଏ କୋପେ ଶାପ ଦେଲେ ॥
ବସୁଦେବ ପୁରେ ନାରଦ । ତା ଆଗେ ଜ୍ଞାନର ସମ୍ବାଦ ॥
ବସୁଦେବଙ୍କୁ ଜ୍ଞାନ କହି । ନାରଦ ଗଲେ ତୋଷ ହୋଇ ॥
ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦ । କହି ଛେଦିଲେ ମାୟା ବନ୍ଧ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଭକ୍ତଙ୍କ ଲକ୍ଷଣ ବର୍ଣ୍ଣନା କରିଛନ୍ତି । ଏହିପରି 'ଅନ୍ତରୀକ୍ଷ'ଙ୍କ ଦ୍ୱାରା ଭଗବାନଙ୍କର ମହିମାର ବର୍ଣ୍ଣନା, 'ପ୍ରବୁଦ୍ଧ'ଙ୍କଦ୍ୱାରା ମାୟାରୁ ପାରି ହେବାର ଉପାୟ ତଥା ଭଗବତ୍ ଧର୍ମ, 'ପିପଳାୟନ'ଙ୍କଦ୍ୱାରା ନାରାୟଣଙ୍କ ସ୍ୱରୂପର ବର୍ଣ୍ଣନା, 'ଆବିହୋତ୍ର'ଙ୍କ ଦ୍ୱାରା କର୍ମଯୋଗର ବିବେଚନ ଓ ପୂଜା-ପଦ୍ଧତି, 'ଦ୍ରୁମିଳ'ଙ୍କ ଦ୍ୱାରା ଭଗବନ୍ ଲୀଳା ସମୂହ ଓ ଅବତାରମାନଙ୍କ ଚରିତ, 'ଚମସ'ଙ୍କ ଦ୍ୱାରା ହରିବିମୁଖଜନଙ୍କର ଗତିର ବର୍ଣ୍ଣନା ଓ ବେଦର ବାସ୍ତବିକ ସିଦ୍ଧାନ୍ତ, 'କରଭାଜନ'ଙ୍କ ଦ୍ୱାରା ଯୁଗଧର୍ମର ବିବେଚନ ଓ କଳିଯୁଗରେ ନାମସଂକୀର୍ତ୍ତନ କେବଳ ହିଁ ଏକମାତ୍ର ସରଳ ସୁଗମ ଉପାୟ ଅଟେ—ଏହିସବୁ କଥାର ପ୍ରତିପାଦନ ଏଠାରେ କରାଯାଇଛି । ଯୋଗେଶ୍ୱର କରଭାଜନ କଳିଯୁଗର ଧର୍ମ ବିଷୟ କହିଛନ୍ତି । କବି, ହରି, ଅନ୍ତରୀକ୍ଷ, ପ୍ରବୁଦ୍ଧ, ପିପ୍ଳାୟନ, ଆବିହୋତ୍ର, ଦ୍ରୁମିଳ, ଚମସ ଓ କରଭାଜନ ଏହି ନଅଜଣ ଯୋଗେଶ୍ୱର ଓ ଜନକଙ୍କ ସମ୍ବାଦକୁ ଏଠାରେ ବର୍ଣ୍ଣନା କରି ନାରଦ ବସୁଦେବଙ୍କୁ ଉପଦେଶ ଦେଇଛନ୍ତି । ଏଠାରେ ବସୁଦେବ-ନାରଦ ସମ୍ବାଦ ମଧ୍ୟ ସମାପ୍ତ ହୋଇଛି । ଏବେ ତେପନ ଖଣ୍ଡର କଥା କୁହାଯିବ ।

ତେପନ ଖଣ୍ଡରେ ସର୍ବପ୍ରଥମେ ଶ୍ରୀକୃଷ୍ଣ-ଉଦ୍ଧବ ସମ୍ବାଦର ପ୍ରସ୍ତାବନା ରହିଛି । ପ୍ରଥମେ ଭଗବାନଙ୍କୁ ଉଦ୍ଧବ ବିନୟ ଭାବରେ କହିବାରୁ ଭଗବାନ୍ ଉଦ୍ଧବଙ୍କୁ ସନ୍ୟାସ-ଧର୍ମର ଉପଦେଶ ଦେଇଛନ୍ତି । ଉଦ୍ଧବ ସଂକ୍ଷିପ୍ତ ଉପଦେଶ ଶ୍ରବଣ କରି ବିଶେଷ ବ୍ୟାଖ୍ୟା ଶ୍ରବଣ କରିବାକୁ ଜିଜ୍ଞାସା କରିଛନ୍ତି । ସେତେବେଳେ ଭଗବାନ୍ ଦୃଷ୍ଟାନ୍ତ ଦେଇ 'ଅବଧୂତ ଗୀତା' କହିବାକୁ ଆରମ୍ଭ କରିଛନ୍ତି । ଭଗବାନ୍ ଦତ୍ତାତ୍ରେୟ, ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, କପୋତ, ଅଜଗର, ସମୁଦ୍ର, ପତଙ୍ଗ, ମଧୁମକ୍ଷିକା, ହାତୀ, ମଧୁହାରୀ, ହରିଣ, ମୀନ, ବେଶ୍ୟା, କୁରର ପକ୍ଷୀ, ବାଳକ, କୁମାରୀ କନ୍ୟା, ବାଣ ପ୍ରସ୍ତୁତକାରୀ, ସର୍ପ, ମାଙ୍କଡ଼ସା ଓ ଭୃଙ୍ଗୀ ଏହି ଚବିଶ ଗୁରୁ କରି ଏମାନଙ୍କଠାରୁ କି କି ଶିକ୍ଷା ଲାଭ କରିଥିଲେ, ତାହା ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ଏକ ଗୁରୁଙ୍କଠାରୁ ଯେଉଁ ଶିକ୍ଷା ପାଇଥିଲେ ତାହା ଏକ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ଶେଷରେ ନିଜେ ସ୍ୱଶରୀରରୁ ଶିକ୍ଷା ଲାଭ କରିଥିଲେ ବୋଲି ତାହା ମଧ୍ୟ ଏକ ଗୁରୁ ବୋଲି ସ୍ୱୀକାର କରିଛନ୍ତି । ଏହି ହିସାବରେ ସେ ୨୫ ଗୁରୁ କରିଥିଲେ । ଏଥିପାଇଁ ମନୁଷ୍ୟ ଶରୀରର ଉପଯୋଗିତାକୁ ଆଖି ଆଗରେ ରଖି କୁହାଯାଇଛି ଯେ, ହରି ନାନା ଜୀବ ସୃଷ୍ଟି କରି ପରିତୋଷ ନ ହେବାରୁ ମନୁଷ୍ୟ ଶରୀର ସୃଷ୍ଟି କରି ସୁଖୀ ହେଲେ । ସେଥିପାଇଁ ଭାଗବତରେ କୁହାଯାଇଛି—'ମନୁଷ୍ୟ ଦେହେ ଦିବ୍ୟଜ୍ଞାନ । ଦେଖି ସନ୍ତୋଷ ଭଗବାନ ।।' ଏହିପରି ୨୪ ଗୁରୁ ଓ ୨୫ରେ ନିଜ ଦେହଠାରୁ ଶିକ୍ଷାଲାଭ କଥା କୁହାଯାଇ ଅବଧୂତ ଗୀତା ସମାପ୍ତ କରାଯାଇଛି । ଏହା ସହିତ 'ଭାଗବତ କଥା'ର ତେପନ ଖଣ୍ଡ ମଧ୍ୟ ସମାପ୍ତ କରାଯାଇଛି । ଏବେ ଚଉବନ ଖଣ୍ଡର କଥା ସୂଚୀ ବର୍ଣ୍ଣନା କରାଯିବ ।

'ଭାଗବତ କଥା'ର ୫୪ ଖଣ୍ଡରେ ପ୍ରଥମେ ସମସ୍ତ ଶାସ୍ତ୍ରର ସାର ଉପଦେଶ କୁହାଯାଇଛି । ତାହାପରେ ପରମ ଭକ୍ତମାନଙ୍କ ଲକ୍ଷଣ ବର୍ଣ୍ଣନା କରାଯାଇଛି । ତଦନନ୍ତର ସଂସାର ସାଗରରୁ ପାର ହେବାର ସରଳ ସାଧନ, ଭଗବାନଙ୍କ ପୂଜାର ଏଗାର ଆଶ୍ରୟ, ସତ୍‌ସଙ୍ଗର ମହିମା, ଗୋପିକାମାନଙ୍କର ପ୍ରଭୁଙ୍କଠାରେ ଆସକ୍ତି, ଏହି ତିନିଗୁଣ ଉପରକୁ ଉଠିବାର ଉପାୟ ଓ ଅନ୍ତଃକରଣରେ ବିଷୟବାସନାର ପ୍ରବୃତ୍ତି କିପରି ହୁଏ, ସେହି ଗୂଢ଼ ବିଷୟଗୁଡ଼ିକୁ ସରଳ ତଥା ସରସତାର ସହିତ ବର୍ଣ୍ଣନା କରାଯାଇଛି । ଏହି ପ୍ରସଙ୍ଗରେ ଭଗବାନ୍ ହଂସରୂପ ଧାରଣ କରି ବ୍ରହ୍ମାଙ୍କୁ ଓ ସନକାଦି କୁମାରଗଣଙ୍କୁ ଯେଉଁ ଉପଦେଶ ଦେଇଥିଲେ, ତାହା ହଂସଗୀତା ନାମରେ ବର୍ଣ୍ଣିତ ହୋଇଛି । ଏଥିରେ ଅସତ୍‌ରେ ସତ୍‌ର ଭ୍ରମ କିପରି ନିବାରଣ କରାଯାଇ ପାରିବ, ତାହାର ବ୍ୟାବହାରିକ ଉପାୟ ବତାଇ ଦିଆଯାଇଛି । ଏହି ସମସ୍ତ ଗୂଢ଼ ବିଷୟଗୁଡ଼ିକୁ ବର୍ଣ୍ଣନା କରାଯାଇ ହଂସଗୀତା ସମାପ୍ତି କରାଯାଇଛି ।

ଏହାପରେ ଶ୍ରେୟସିଦ୍ଧିର ଅନେକ ମାର୍ଗ ଆଲୋଚନା କରାଯାଇ ସ୍ୱପ୍ନରେ ସୁଖ ନଥିବା କଥା ଏଥିରେ କୁହାଯାଇଛି । ତାହାପରେ ଭକ୍ତମାନଙ୍କର ଉତ୍କର୍ଷ, ଭକ୍ତମାନଙ୍କର ମହିମା, ସତ୍‌ସଙ୍ଗ ଓ ଅସତ୍‌ସଙ୍ଗର ପ୍ରଭାବ, ଧ୍ୟାନର ପାତ୍ର ଓ ଧ୍ୟାନର ବିଧି ଆଦି ବିଷୟରେ କୁହାଯାଇ ସିଦ୍ଧିଗୁଡ଼ିକ ସମ୍ବନ୍ଧରେ କୁହାଯାଇଛି । ଭଗବାନ ନିଜର ଅନେକ ପ୍ରକାରର ସିଦ୍ଧି ବିଷୟରେ କହି ଶେଷରେ କହିଛନ୍ତି—ମୁଁ ହେଉଛି ସମସ୍ତ ସିଦ୍ଧିର ସ୍ୱାମୀ, ସର୍ବେଶ୍ୱର · । ଏହି ପ୍ରକାର 'ଭାଗବତ କଥା'ର ୫୪ ଖଣ୍ଡ ସମାପ୍ତ ହୋଇଛି । ଏବେ ପଞ୍ଚାବନ ଖଣ୍ଡର କଥା ସୂଚୀ କୁହାଯିବ ।

ପଞ୍ଚାବନ ଖଣ୍ଡରେ ସର୍ବପ୍ରଥମେ ଭଗବାନ ତାଙ୍କର ମୁଖ୍ୟ ବିଭୂତି ବିଷୟ ବର୍ଣ୍ଣନା କରି ଭଗବଦ୍ ବିଭୂତିଗୁଡ଼ିକର ପରିଚୟ ଦେଇଛନ୍ତି । ତଦନନ୍ତର ବର୍ଣ୍ଣାଶ୍ରମ ଧର୍ମର ରହସ୍ୟ, ବ୍ରାହ୍ମଣଙ୍କର ସ୍ୱଭାବ, ବୃତ୍ତି ଓ ଧର୍ମ, କ୍ଷତ୍ରିୟଙ୍କ ସ୍ୱଭାବ ଓ ବୃତ୍ତି, ବୈଶ୍ୟଙ୍କର ସ୍ୱଭାବ ଓ ବୃତ୍ତି, ଶୂଦ୍ରଙ୍କର ସ୍ୱଭାବ ଓ ବୃତ୍ତି ଏବଂ ଅନ୍ତ୍ୟଜଙ୍କର ସ୍ୱଭାବ ଓ ବୃତ୍ତି ସମ୍ପର୍କରେ କହି ଶେଷରେ ସଂକ୍ଷେପରେ ସାର୍ବବାର୍ଣ୍ଣିକ ଧର୍ମ ବିଷୟରେ କହିଛନ୍ତି । ଏହା ତ ଗଲା ବର୍ଣ୍ଣ ଧର୍ମ କଥା, ଏହାପରେ ଆଶ୍ରମଧର୍ମ ବିଷୟରେ କୁହାଯାଇଛି । ବ୍ରହ୍ମଚର୍ଯ୍ୟାଶ୍ରମ, ଗୃହସ୍ଥାଶ୍ରମ, ବାନପ୍ରସ୍ଥାଶ୍ରମ ଓ ସନ୍ନ୍ୟାସାଶ୍ରମ ଧର୍ମ ବିଷୟରେ କହି ସନ୍ନ୍ୟାସୀମାନଙ୍କର ଭେଦ ବିଷୟରେ କହିଛନ୍ତି ଏବଂ ପାରମହଂସଚର୍ଯ୍ୟାର ନିରୂପଣ ବିଷୟରେ କହିଛନ୍ତି । ପୁନଶ୍ଚ ଉଦ୍ଧବ ଜ୍ଞାନ ଓ ଭକ୍ତି ସମ୍ବନ୍ଧୀୟ ପ୍ରଶ୍ନ କରିଛନ୍ତି । ଏହି ପର୍ଯ୍ୟନ୍ତ କୁହାଯାଇ ଏଠାରେ 'ଭାଗବତ କଥା'ର ପଞ୍ଚାବନ ଖଣ୍ଡ ସମାପ୍ତ ହୋଇଛି । ଏବେ ୫୬ ଖଣ୍ଡର କଥା ସୂଚୀ କୁହାଯିବ ।

ଛପନ ଖଣ୍ଡର କଥାରେ ସର୍ବପ୍ରଥମେ ଭକ୍ତିଯୋଗ ବିଷୟରେ ବିସ୍ତାରିତ ଭାବରେ କୁହାଯାଇଛି । ତାହାପରେ ଉଦ୍ଧବ କେତେକ ପାବନ ପ୍ରଶ୍ନ ପଚାରିଛନ୍ତି ଓ ଭଗବାନ ତାହାର ଉତ୍ତର ସଂକ୍ଷେପରେ ଦେଇଛନ୍ତି । ଦାନ, ତପ, ପଣ୍ଡିତ, ମୂର୍ଖ ଆଦିଙ୍କ ସମ୍ବନ୍ଧରେ ପ୍ରଶ୍ନର ଉତ୍ତର ମଧ୍ୟ ଭଗବାନ ଦେଇଛନ୍ତି । ଶେଷରେ ଗୁଣ-ଦୋଷ ଦେଖିବା ଦୋଷ ବୋଲି କହିଛନ୍ତି । ଯିଏ ଗୁଣ-ଦୋଷ ନ ଦେଖନ୍ତି, ସେ ପ୍ରକୃତରେ ଗୁଣୀ । ଉଦ୍ଧବ ଗୁଣ-ଦୋଷ ସମ୍ବନ୍ଧରେ ଶଙ୍କା କରିଥିବାରୁ ଭଗବାନ୍ ଏହା ଉପରେ ଯୋଗତ୍ରୟ ବିଷୟରେ ଆଲୋଚନା କରି ବୁଝାଇଛନ୍ତି ଓ ମନ ନିରୋଧର ଉପାୟ ବତାଇଛନ୍ତି । ତାହାପରେ ସାଧନବିହୀନଙ୍କର ଗତି ବିଷୟରେ କହି ଶୁଦ୍ଧି ଅଶୁଦ୍ଧିର ବିଶେଷ ନିୟମ ବତାଇଛନ୍ତି । ଶେଷରେ ସେ କହିଛନ୍ତି ଯେ, ଶ୍ରେୟ ପ୍ରବୃତ୍ତିକୁ ପ୍ରଶଂସା କରାଯାଏ ।

ଏହାପରେ ଶବ୍ଦବ୍ରହ୍ମର ନିରୂପଣ କରାଯାଇଛି । ଭିନ୍ନ ଭିନ୍ନ ଆଚାର୍ଯ୍ୟଗଣ ଭିନ୍ନ ଭିନ୍ନ ଭାବରେ ତତ୍ତ୍ୱର ସଂଖ୍ୟା ବତାଇଛନ୍ତି । ଏ ବିଷୟରେ ଏତେ ମତଭେଦ କାହିଁକି ରହିଛି, ତାହାର କାରଣ କୁହାଯାଇଛି । ପୁନଶ୍ଚ ପ୍ରକୃତି ଓ ପୁରୁଷଙ୍କ ସମ୍ବନ୍ଧରେ ବିଚାର କରାଯାଇଛି । ଉଦ୍ଧବଙ୍କ ପ୍ରଶ୍ନର ଉତ୍ତର ଦିଆଯାଇ ଏଠାରେ ହରିବିମୁଖମାନଙ୍କର ଗତି ଓ ସତ୍-ଅସତ୍ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି । ମାନ ଅପମାନକୁ କିପରି ସହନ କରିବାକୁ ହେବ ସେ ସମ୍ବନ୍ଧରେ ଅବନ୍ତୀର ଏକ କୃପଣ ବ୍ରାହ୍ମଣଙ୍କ କାହାଣୀ କୁହାଯାଇଛି । ଧନ ନଷ୍ଟ ହୋଇଯିବାରୁ ତାଙ୍କର କିପରି ବୈରାଗ୍ୟ ଜାତ ହେଲା ଓ ସେ କିପରି ଭିକ୍ଷୁକ ହୋଇଗଲେ, ତାହା କୁହାଯାଇଛି । ଭିକ୍ଷୁକ ହେବାରୁ ସେ କିପରି ମାନ ଅପମାନକୁ ସମାନ ଜ୍ଞାନ କରି ତିତିକ୍ଷାର ଆଦର୍ଶ ଦେଖାଇଲେ ଏହାର ମାର୍ମିକ ଆଲୋଚନା କରାଯାଇଛି । ଏହିଠାରେ ''ଭାଗବତ କଥା''ର ଛପନ ଖଣ୍ଡ ସମାପ୍ତ ହୋଇଛି । ଏବେ ସତାବନ ଖଣ୍ଡର କଥା ସୂଚୀ କୁହାଯିବ ।

ସତାବନ ଖଣ୍ଡ ଭିକ୍ଷୁଗୀତାରୁ ଆରମ୍ଭ କରାଯାଇଛି । ଅବନ୍ତୀର ଯେଉଁ କୃପଣ ବ୍ରାହ୍ମଣ ଭିକ୍ଷୁ ହୋଇ ଯାଇଥିଲେ, ଖଳଲୋକମାନେ ତାଙ୍କୁ ଅତ୍ୟନ୍ତ ଶାରୀରିକ ଯନ୍ତ୍ରଣା ଦେଉଥିବାରୁ ସେ

ଏହି ଗୀତ ଗାନ କରିଥିଲେ । ସେ କହିଥିଲେ ଯେ, ଏକ ଶରୀର ଅନ୍ୟ ଶରୀରକୁ ଦୁଃଖ ଦେଇ ନପାରେ । ଦେବତାମାନେ ମଧ୍ୟ ଦୁଃଖ ଦେଇପାରନ୍ତି ନାହିଁ । ନିଜର ମନ ହିଁ ସମସ୍ତ ଦୁଃଖର କାରଣ । ମନ ଯାହାକୁ ଦୁଃଖ ବୋଲି ଧରିନିଏ, ତାହା ଦୁଃଖ ଓ ମନ ଯାହାକୁ ସୁଖ ବୋଲି ମାନେ ତାହା ସୁଖ ଅଟେ । ମନର ହାରି ଯିବାକୁ ହାରିବା ଓ ମନର ଜୟକୁ ଜିତିବା ବୋଲି କୁହାଯାଇଛି । ଭିକ୍ଷୁଗୀତା ଏହି ପ୍ରକାର କୁହାଯିବା ପରେ ସାଂଖ୍ୟ ବିଧିର ସୃଷ୍ଟି, ସାଂଖ୍ୟ ବିଧିର ପ୍ରଳୟ, ତିନିଗୁଣର ବୃତ୍ତି, ଗୁଣଗୁଡ଼ିକର ସନ୍ନିପାତ ଓ ସ୍ୱରୂପ, ତ୍ରିଗୁଣାତ୍ମକ ଜଗତ ଓ ଏଥିରୁ ଉଦ୍ଧାର ପାଇବାର ଉପାୟ ଆଦି ବିଷୟ ଏଠାରେ ଆଲୋଚନା କରାଯାଇଛି । ପୁନଶ୍ଚ ବୈରାଗ୍ୟ ଜାତ ହେବାରୁ ମହାରାଜ ଏଳ ଯେଉଁ ଗୀତ ବୈରାଗ୍ୟ ବୃଦ୍ଧି କରାଇପାରେ ଓ ବିଷୟୀଲୋକମାନଙ୍କୁ ବିଷୟ-ବାସନାରୁ ନିବୃତ୍ତ କରିପାରେ ଏହି ପ୍ରକାରର ପାଞ୍ଚଟି ଗୀତ ଗାନ କରିଥିଲେ । ଏହାକୁ ବୈରାଗ୍ୟର ପଞ୍ଚପ୍ରାଣ କୁହାଯାଏ ।

ଉର୍ବଶୀଙ୍କ ବିବାହରେ ବ୍ୟାକୁଳ ହୋଇ ରାଜା ପାଗଳଙ୍କ ଭଳି ଭ୍ରମଣ କରିଥିଲେ । ଶେଷରେ ସେ ବୈରାଗ୍ୟ ଜାତ ହେବାରୁ ଏହିସବୁ ଗୀତ ଗାଇଥିଲେ । ''ଏଳ ଗୀତ'' ଶେଷକୁ ସନ୍ଥ ସମାଗମ ମାହାତ୍ମ୍ୟ, କ୍ରିୟାଯୋଗରେ ପ୍ରତିମା ପୂଜନ, ଅଗ୍ନି ଆଦିରେ ପୂଜନ, ସାରାତିସାର ଉପଦେଶ, ସଂସାରର ଅସାରତା, ସାଧନାବସ୍ଥାରୁ ସିଦ୍ଧାବସ୍ଥା ଓ ଯୋଗସାଧନାର ବିଘ୍ନ ଏବଂ ଏହାର ପ୍ରତିକାର ଉପାୟ ଏହି କଥା ବର୍ଣ୍ଣନା କରାଯାଇଛି । ଉଦ୍ଧବ ଭଗବାନଙ୍କୁ ପୁନଶ୍ଚ ଭକ୍ତି ସମ୍ବନ୍ଧୀୟ ପ୍ରଶ୍ନ କରିବାରୁ ଭଗବାନ ଭାଗବତ-ଧର୍ମର ନିରୂପଣ କରିଛନ୍ତି । ଶେଷରେ ଏହି ପ୍ରକାର ଉଦ୍ଧବ ଗୀତାର ଉପସଂହାର କରାଯାଇଛି । ଏହିଠାରେ ''ଭାଗବତ କଥା''ର ୫୭ ଖଣ୍ଡ ସମାପ୍ତ ହୋଇଛି । ଏହାପରେ ୫୮ ଖଣ୍ଡର କଥା ସୂଚୀ କୁହାଯାଇଛି ।

ଅଠାବନ ଖଣ୍ଡରେ ଉଦ୍ଧବଙ୍କୁ ଭଗବାନ୍ ବଦରୀବନକୁ ଯିବାପାଇଁ ଆଜ୍ଞା କରିଛନ୍ତି । ତାଙ୍କ ଆଜ୍ଞାରେ ଉଦ୍ଧବ ତ ସେଠାକୁ ଯାଇଛନ୍ତି, କିନ୍ତୁ ତାଙ୍କ ମନ ମାନି ନାହିଁ । ସେ ଭଗବାନଙ୍କ ମହାପ୍ରୟାଣ ଦର୍ଶନ କରିବାକୁ ଇଚ୍ଛା କରିଥିଲେ । ତେଣୁ ବଦରୀବନକୁ ଯାଇ ପ୍ରଭାସ ଅଭିମୁଖେ ପୁନଶ୍ଚ ଯାତ୍ରା କରିଥିଲେ । ଏଣେ ଯଦୁବଂଶ ବିନାଶର ଲକ୍ଷଣ ଦେଖାଗଲା । ସେମାନେ ସମସ୍ତେ ସେହି ପ୍ରଭାସ ତୀର୍ଥକୁ ଯାଇଥିଲେ ଓ ସେଠାରେ ନିଜ ନିଜ ମଧ୍ୟରେ ଯୁଦ୍ଧ କରି ମୃତ୍ୟୁବରଣ କରିଥିଲେ । ଯଦୁବଂଶ ବିନାଶର ଅନ୍ତିମ ଲୀଳା ସରିଲା । ଭଗବାନ ମଧ୍ୟ ସ୍ୱଧାମକୁ ଯାତ୍ରା କରିବା ପାଇଁ ଏକ ତରୁ ତଳେ ବସି ଅପେକ୍ଷା କଲେ । ବ୍ୟାଧ ତାଙ୍କ ପାଦକୁ ହରିଣ କାନ ଜ୍ଞାନ କରି ପାଦକୁ ଶର ମାରିଲା । ଭଗବାନ ସେହି ବ୍ୟାଧକୁ ମଧ୍ୟ ସଦ୍‌ଗତି ଦେଲେ । ଏହାପରେ ଭଗବାନଙ୍କ ସାରଥୀ ଦାରୁକ ଆସି ପହଞ୍ଚିଲେ । ତାଙ୍କୁ ଭଗବାନ୍ ଦ୍ୱାରକା ପଠାଇ ଦେଲେ । ଏହାପରେ ଶ୍ୟାମସୁନ୍ଦର ନିଜ ଧାମକୁ ପ୍ରତ୍ୟାବର୍ତ୍ତନ କଲେ । ଏଠାରେ ଯଦୁବଂଶର ଅନ୍ତିମ ଲୀଳା ସମାପ୍ତ ହୋଇଛି ।

ଏବେ କଳିଯୁଗର ରାଜାମାନଙ୍କର ବର୍ଣ୍ଣନା କରାଯାଇ ଶିଶୁନାଗ ଆଦି ରାଜାମାନଙ୍କର ବଂଶ ପରମ୍ପରା, ନନ୍ଦବଂଶ ବିନାଶ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଓ ଅଶୋକ ଆଦି ଅନ୍ୟାନ୍ୟ ମୌର୍ଯ୍ୟବଂଶୀୟ ରାଜାମାନଙ୍କର ବର୍ଣ୍ଣନା, ଶଙ୍ଗ, କଣ୍ୱ ତଥା ଅନ୍ୟ ଜାତୀୟ ରାଜାମାନଙ୍କର ଇତିହାସ, ଆଭୀର ଓ ଗର୍ଦ୍ଦଭୀ ବଂଶ, କଙ୍କ ବଂଶ, ଯବନ ତୁରୁକ ଏବଂ ଗୁରୁଣ୍ଡ ରାଜାମାନଙ୍କର ବଂଶ କଥା ବର୍ଣ୍ଣନା କରାଯାଇ ଶେଷରେ କଳିଯୁଗର ଅନ୍ୟ କେତେକ ରାଜାଙ୍କର କଥା ବର୍ଣ୍ଣନା କରାଯାଇଛି । ପୁନଶ୍ଚ କଳିକାଳର କେତେକ କାଳୀ ''କରତୂତ''ମାନଙ୍କ ସମ୍ବନ୍ଧରେ କୁହାଯାଇଛି । କଳିଯୁଗର ପ୍ରବଳତାର ଚିହ୍ନ ଏଥିରେ କୁହାଯାଇ ଶେଷରେ ''ବସୁଧା ଗୀତ'' ଗାନ କରାଯାଇଛି ।

ମହାରାଜ ପରୀକ୍ଷିତ ପଚାରିଲେ—''ମହାରାଜ ! ଆପଣ ମୋତେ ଏତେ ରାଜାଙ୍କ ବିଷୟରେ କହିବାରେ ଲାଭ କ'ଣ ହେଲା ?'' ଭଗବାନ ଶୁକ ହସି ହସି କହିଲେ—''ରାଜନ୍ ! ମୁଁ କେବଳ ବୈରାଗ୍ୟର ବୃଦ୍ଧି ପାଇଁ ଏହିସବୁ କଥା କହିଲି । ଏଗୁଡ଼ିକରେ କୌଣସି ଯଥାର୍ଥ ତତ୍ତ୍ୱ ନାହିଁ । କେବଳ ବାଣୀର ବିଳାସ ମାତ୍ର ଏଥିରେ ରହିଛି । ଅନେକ ବଡ଼ ବଡ଼ ରାଜା ଥିଲେ, ସେମାନେ ଏବେ ନାହାନ୍ତି, କିନ୍ତୁ ସେମାନଙ୍କର ନାମ କେବଳ ରହିଯାଇଛି । ଏହି ପ୍ରକାର କଳିଯୁଗ ପର୍ଯ୍ୟନ୍ତ ବଂଶ ପରମ୍ପରା ବର୍ଣ୍ଣନା ଆଦି କରାଯାଇ ''ଭାଗବତ କଥା''ର ଅଠାବନ ଖଣ୍ଡ ସମାପ୍ତ କରାଯାଇଛି ।

ସୂତ କହିଲେ—''ମୁନିଗଣ ! ମୁଁ ଆପଣମାନଙ୍କୁ ସପ୍ତମାହର ପ୍ରାୟଃ ସମସ୍ତ ସୂଚୀ କହିଦେଲି । ଏବେ ଅବଶିଷ୍ଟ କେତେକ କଥା ସୂଚୀ ପରବର୍ତ୍ତୀ ଅଧ୍ୟାୟରେ କହି ଏହି ବିଷୟ ସୂଚୀ ପ୍ରକରଣକୁ ସମାପ୍ତ କରିବି ।

ଷଟ୍‌ପଦୀ

ବର୍ଣ୍ଣାଶ୍ରମ କୋ ଧରମ ବିବିଧ ପ୍ରଶ୍ନନି କୋ ଉତ୍ତର ।
ଭିକ୍ଷୁଗୀତ କହି କହୀ ସାଂଖ୍ୟକୀ ମହିମା ସୁଖକର ॥
ନୃପତି ଏଲ କୋ ଗୀତ ଉଦ୍ଧବ ହିଁ ଶିକ୍ଷା ଦୀହ୍ନୀଂ ।
ପୁନି ଯଦୁବଂଶ ବିନାଶ ସଂବରରନ ଲୀଲା କୀହ୍ନୀଂ ॥
କହି କଲିଯୁଗ କେ ନୃପତି କୁଁ, ଭୂମି ଗୀତ ହୂ ପୁନି କହ୍ୟୋ ।
ଫେରି ବ୍ରହ୍ମ ଉପଦେଶ ଶୁକ—ନେ ନରପତି କୁଁ ଜ୍ୟୋଂ ଦୟୌ ॥



# ସପ୍ତମାହର ଅନ୍ତିମ ସୂଚୀ ଓ ମାହାତ୍ମ୍ୟ

**ଦେହତ୍ୟାଗଶ୍ଚ ରାଜର୍ଷେର୍ବିଷ୍ଣୁରାତସ୍ୟ ଧୀମତଃ ।**
**ଶାଖା-ପ୍ରଣୟନମୃଷେର୍ମାର୍କଣ୍ଡେୟସ୍ୟ ସତ୍‌କଥା ।**
**ମହାପୁରୁଷବିନ୍ୟାସଃ ସୂର୍ଯ୍ୟସ୍ୟ ଜଗଦାତ୍ମନଃ ॥** ☆

(ଶ୍ରୀ ଭା: ୧୨ସ୍କ: ୧୨ଅ: ୪୪ଶ୍ଳୋକ)

---

☆ ବିଷ୍ଣୁର ଭକ୍ତ ପରୀକ୍ଷିତ । ଯୋଗରେ ହେଲେ ଆତ୍ମଭୂତ ॥
ତାଙ୍କ ବୈକୁଣ୍ଠ ଆରୋହଣ । ବେଦର ଶାଖା ପ୍ରଣୟନ ॥
ମାରକଣ୍ଡ ଋଷି ଚରିତ । ମାୟା ପ୍ରଳୟେ ଗର୍ଭଗତ ॥
ମାର୍କଣ୍ଡେୟଙ୍କୁ ଅନୁଗ୍ରହ । ସପତ କଳ୍ପ ରକ୍ଷା ଦେହ ॥
ସୂର୍ଯ୍ୟ ଜଗତ ଆତ୍ମାମୟ । ଦ୍ୱାଦଶ ଆଦିତ୍ୟ ନିର୍ଣ୍ଣୟ ॥
ରଥ ମଣ୍ଡଳର ବିଚାର । ..............

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଷଟ୍‌ପଦୀ

ତ୍ୟାଗି ପରୀକ୍ଷିତ ଦେହ ପରମପଦ ପାୟୌ ଜୈସେଂ ।
ଶାଖା ବେଦାନି କହୀଂ ପଢ଼ୀ ବିପ୍ରନିନେ ଜୈସେଂ ॥
ମାର୍କଣ୍ଡେୟ ଚରିତ୍ର କହୀ ପୂଜା ବିଧି ଉତ୍ତମ ।
କହି ରବି ସପ୍ତକ କହୀ ବିଷୟ ସୂଚୀ ମୁନିସତ୍ତମ ॥
ଫେରି ଭାଗବତ ସାର ସବ, କହ୍ୟୋ ମହାତମ ନାମ ପୁନି ।
ପୁଣ୍ୟ ଭାଗବତ ଚରିତ କୋ, ପୂର୍ଣ୍ଣ ଭୟୋ ସପ୍ତାହ ମୁନି ॥

ଭଗବାନଙ୍କ ଚରିତ୍ର ଅନନ୍ତ । ତାହାର ଆଦି ନାହିଁ କି ଅନ୍ତ ବି ନାହିଁ । ଅନାଦି ଅନନ୍ତର ଆରମ୍ଭ ଓ ଶେଷ କହିବା ସମ୍ଭବ ନୁହେଁ । କିନ୍ତୁ ଉପଚାର ରୂପରେ ଆରମ୍ଭ ଓ ଅନ୍ତ କୁହାଯାଇ ପାରେ । ଯେତେବେଳେ ଭଗବାନଙ୍କର ଚରିତ୍ର ଆରମ୍ଭ ହୁଏ ନାହିଁ, ସେତେବେଳେ ବି ଅନ୍ତ ନାହିଁ । ସେହି ଚରିତ୍ରର ବିଷୟ ସୂଚୀ ଅନ୍ତ ଅବା କିପରି ହେବ ? ତଥାପି ଏହି ବିଷୟ ସୂଚୀ ଆରମ୍ଭ କରାଯାଇ ଥିବାରୁ ତାହାର ସମାପ୍ତି ହେବ ।

ସୂତ କହିଲେ—"ମୁନିଗଣ ! ମୁଁ ପୂର୍ବ ଅଧ୍ୟାୟରେ ସପ୍ତମାହର ବିଷୟ ସୂଚୀ କହିଥିଲି । ତନ୍ମଧ୍ୟରୁ କେତେକ ବାକି ରହି ଯାଇଥିଲା । ତାହା ଏବେ ମୁଁ କହୁଅଛି । "ଭାଗବତ କଥା"ର ୫୮ ଖଣ୍ଡରେ ବସୁଧା ଗୀତ ଓ ରାଜାମାନଙ୍କର କଥାରୁ କି ଉପଦେଶ ଗ୍ରହଣ କରିବା ଉଚିତ୍ ଏହି ପର୍ଯ୍ୟନ୍ତ କଥା ଶେଷ ହୋଇଛି । ଏବେ ୫୯ ଖଣ୍ଡର କଥା ସୂଚୀ ଶ୍ରବଣ କରନ୍ତୁ ।

"ଭାଗବତ କଥା"ର ୫୯ ଖଣ୍ଡରେ ସର୍ବପ୍ରଥମେ କଳିଯୁଗର ଦୋଷ ଓ ତହିଁରୁ ରକ୍ଷା ପାଇବାର ଉପାୟ କୁହାଯାଇଛି । ପୁନଶ୍ଚ ଏହି ପ୍ରଶ୍ନ ଉଠିଛି ଯେ, କଳିକାଳ ତ ଅଧର୍ମର ମିତ୍ର । ତାହା ଦୋଷରେ ପରିପୂର୍ଣ୍ଣ । ତହିଁରେ ଥିବା ଦୋଷକୁ କାଟିବା ପାଇଁ କାହାର ଅବା କ୍ଷମତା ଅଛି ? ଏଥିପାଇଁ କୁହାଯାଇଛି, କଳିକଳ୍ମଷଗୁଡ଼ିକୁ କୃଷ୍ଣକୀର୍ତ୍ତନ ଦ୍ୱାରା ହିଁ କଟାଯାଇ ପାରିବ । ଏହିପରି କୃଷ୍ଣକୀର୍ତ୍ତନର ମାହାତ୍ମ୍ୟ ବତାଇ ଦିଆଯାଇ ଚାରି ପ୍ରକାର ପ୍ରଳୟ ସମ୍ବନ୍ଧରେ କୁହାଯାଇଛି । ଏହାପରେ ଭଗବାନ ଶୁକ ସମ୍ପୂର୍ଣ୍ଣ ଶାସ୍ତ୍ରର ସାରକଥା କହି ଶେଷରେ ପରମାର୍ଥ ତତ୍ତ୍ୱ ଆଲୋଚନା କରିଛନ୍ତି । ସେ ରାଜର୍ଷି ପରୀକ୍ଷିତଙ୍କୁ ଏହିପରି ଅନ୍ତିମ ଉପଦେଶ ଦେଇଛନ୍ତି ଓ ଏହା ଶୁଣି ରାଜା ଅତ୍ୟନ୍ତ ଦୀନତାର ସହିତ ମୁନିଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିଛନ୍ତି ଓ କହିଛନ୍ତି—"ଆପଣଙ୍କ କୃପାରୁ ମୁଁ ସିଦ୍ଧ ହୋଇଗଲି ।" ଏହା କହି ରାଜା ସବିଧି ମୁନିଙ୍କୁ ପୂଜା କରିଛନ୍ତି । ରାଜାଙ୍କ ପୂଜା ଗ୍ରହଣ କରି ଭଗବାନ ଶୁକ ଅନ୍ୟାନ୍ୟ ମୁନିଙ୍କ ସହିତ ସେଠାରୁ ବିଦାୟ ନେଇ ଆସିଛନ୍ତି ।

ଭଗବାନ ଶୁକଦେବ ଚାଲିଯିବାରୁ ସପ୍ତମ ଦିନର କିଛି ସମୟ ବାକି ଥିଲା । ସେହି ସମୟ ମଧ୍ୟରେ ତକ୍ଷକ ବ୍ରାହ୍ମଣ ବେଶ ଧରି ସେଠାରେ ଆସି ପହଞ୍ଚିବା ଆଗରୁ ପଥ ମଧ୍ୟରେ କଶ୍ୟପ ଗୋତ୍ରୀୟ ବିଷହରଣକାରୀ ବ୍ରାହ୍ମଣ ପରୀକ୍ଷିତଙ୍କ ନିକଟକୁ ଯାଉଥିବାର ଦେଖିଲା । ତାଙ୍କୁ ବିପୁଳ ଧନ ପ୍ରଦାନକରି ତକ୍ଷକ ନାଗ ସେଠାରୁ ଫେରାଇ ଦେଲା । ତାହାପରେ କୀଟରୂପ ଧାରଣ କରି ବ୍ରାହ୍ମଣଙ୍କ ଫଳ ମଧ୍ୟରେ ରହି ସେ କୌଣସି ଉପାୟରେ ରାଜାଙ୍କ ପାଖରେ ପହଞ୍ଚିଗଲା । ରାଜା ତାହାକୁ ବିନୋଦରେ ଉଠାଇ କଣ୍ଠ ଦେଶରେ ଲଗାଇଲେ, ପରନ୍ତୁ ସେତେବେଳେ ତକ୍ଷକ ନିଜ ରୂପ ଧରି ରାଜାଙ୍କୁ ଦଂଶନ କଲା । ରାଜା ସଙ୍ଗେ ସଙ୍ଗେ ଭସ୍ମ ହୋଇଗଲେ ।

ନିଜ ପିତାଙ୍କର ତକ୍ଷକ ଦଂଶନରେ ମୃତ୍ୟୁ ହୋଇଥିବା କଥା ଶୁଣି ପରୀକ୍ଷିତନନ୍ଦନ ମହାରାଜ ଜନ୍ମେଜୟ ସର୍ପସତ୍ର ଯଜ୍ଞ କଲେ । ମନ୍ତ୍ରରେ ସେହି ସର୍ପକୁ ଆହ୍ୱାନ କରାଇ ଅଗ୍ନିରେ ଆହୂତି ଦେବାକୁ ଯାଉଥିବା ସମୟରେ ଜଣେ ବ୍ରାହ୍ମଣ ଆସି ସର୍ପସତ୍ରଯଜ୍ଞ ସମାପ୍ତି କରାଇଲେ ।

ଏହି ପର୍ଯ୍ୟନ୍ତ ଶୁକ ପରୀକ୍ଷିତ ସମ୍ବାଦ ବର୍ଣ୍ଣନା କରାଯାଇଛି । ଏବେ ଉପସଂହାର ରୂପରେ ଶୌନକ ସୂତଙ୍କୁ କେତେକ ପ୍ରଶ୍ନ ପଚାରିଛନ୍ତି ଓ ନିମ୍ନମତେ ତାହାର ଉତ୍ତର ସେ ଦେଇଛନ୍ତି ।

ଶୌନକଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସୂତ ବେଦ ଓ ତାହାର ଶାଖା ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି । ଶୁକ୍ଳ-ଯଜୁର୍ବେଦ ଓ କୃଷ୍ଣ-ଯଜୁର୍ବେଦ ଏ ଦୁଇ ଶାଖା କିପରି ହେଲା ଏହି କଥା ପ୍ରଥମେ କହିଛନ୍ତି । ଏହାପରେ ଚିରଜୀବୀ ମହର୍ଷି ମାର୍କଣ୍ଡେୟଙ୍କର ମନୋହାରିଣୀ କଥା କହିଛନ୍ତି । ଏଥିରେ ତାଙ୍କର ମାୟାଦର୍ଶନ ବିଷୟ କୁହାଯାଇଛି । ବଟପୁଟର ପତ୍ର ଉପରେ ବାଳମୁକୁନ୍ଦଙ୍କ ଉଦରରେ ସେ ବିଶାଳ ବ୍ରହ୍ମାଣ୍ଡର ଦର୍ଶନ କରିଛନ୍ତି । ସେ ମାୟାଦର୍ଶନ କରି ଭଗବାନଙ୍କ କୃପାରୁ ମାୟାରୁ ପାର ହୋଇପାରିଛନ୍ତି ଓ ତାଙ୍କର ଜୀବନ କୃତାର୍ଥ ହୋଇଛି । ତାହାପରେ କାମାରିକପର୍ଦ୍ଦି ଆଶୁତୋଷ ମାର୍କଣ୍ଡେୟଙ୍କ ଉପରେ କିପରି କୃପା କରିଛନ୍ତି ଓ ବରଦାନ ଦେଇଛନ୍ତି, ଏଠାରେ ତାହା କୁହାଯାଇଛି । ଏହିପରି ମାର୍କଣ୍ଡେୟ ଚରିତ୍ର ସମାପ୍ତି ହୋଇଛି ।

ଏହାପରେ ଭଗବାନଙ୍କର ଅଙ୍ଗ, ଉପାଙ୍ଗ ଆୟୁଧାଦି ରୂପକ ବିଭୂତି ବିଷୟରେ କୁହାଯାଇ ଦ୍ୱାଦଶାଦିତ୍ୟଙ୍କ ସମ୍ବନ୍ଧରେ କୁହାଯାଇଛି ଓ ବିଷୟ ସୂଚୀ ଆରମ୍ଭ କରାଯାଇଛି । ସୂଚୀ କୁହାଯିବା ପରେ ଶ୍ରୀମଦ୍‌ଭାଗବତର ସାରାତିସାର ରହସ୍ୟ କୁହାଯାଇ ଭଗବନ୍ନାମ ସଂକୀର୍ତ୍ତନର ମହିମା ପୁନଶ୍ଚ କୁହାଯାଇଛି । କାରଣ ଶ୍ରୀମଦ୍‌ଭାଗବତର ନାମ ହେଉଛି ପୁରାଣ । ଭଗବନ୍ନାମର ପାବନତାର କାରଣ ମଧ୍ୟ ଏଠାରେ କୁହାଯାଇଛି । ଏଥିରେ ବିଚାର ବିମର୍ଷ କରାଯାଇଛି ଯେ, ଯଦି ଭକ୍ତିହୀନ ହୋଇ ବର୍ଣ୍ଣାଶ୍ରମ ଧର୍ମ ପାଳନ କରାଯାଏ, ତାହାହେଲେ ତାହା ଅଶୋଭନ । ପୁନଶ୍ଚ ଭାଗବତ ଶ୍ରବଣ କରିବା ପାଇଁ ଦ୍ୱାରକା, ମଥୁରା ଓ ପୁଷ୍କର ଏହି ବିଶେଷ ସ୍ଥାନର ମହତ୍ତ୍ୱ ବର୍ଣ୍ଣନା କରାଯାଇଛି । ଦୁଇ ଅଧ୍ୟାୟରେ ''ଭାଗବତ କଥା''କୁ କାମଧେନୁ ଓ କଳି-କଲ୍ମଷହାରିଣୀ ବୋଲି ବର୍ଣ୍ଣନା କରାଯାଇଛି । ପୁନଶ୍ଚ ବାରମ୍ବାର ନମସ୍କାର କରାଯାଇ ଅଷ୍ଟାଦଶ ପୁରାଣର ଶ୍ଳୋକ ସଂଖ୍ୟା କୁହାଯାଇଛି ଓ ଭାଗବତକୁ ସବୁଠାରୁ ଶ୍ରେଷ୍ଠ ବୋଲି କୁହାଯାଇଛି । ଏହାପରେ ଶ୍ରୀମଦ୍‌ଭାଗବତର ଦାନବିଧି ତଥା ଦାନ ଓ ପାଠର ମାହାତ୍ମ୍ୟ ବତାଇ ଦିଆଯାଇଛି । ପୁନଶ୍ଚ ''ସତ୍ୟଂ ପରଂ ଧୀମହି'' ଅଧ୍ୟାୟରେ ପରମ୍ପରାଗତ ସମ୍ପ୍ରଦାୟ, ପରସ୍ପର ଧ୍ୟାନ ବନ୍ଦନ କରି ଅନ୍ତିମ ପ୍ରଣାମ ତଥା ମାନସିକ ପୂଜା କରାଯାଇ ଭାଗବତ କଥାର ସମାପ୍ତି କରାଯାଇଛି ।

ସୂତ କହିଲେ—''ମୁନିଗଣ ! ମୁଁ ଅତି ସଂକ୍ଷେପରେ ଭାଗବତ କଥାର ଏହିସବୁ ବିଷୟ-ସୂଚୀ ଆପଣମାନଙ୍କୁ କହିଲି । ପୂରା ଗ୍ରନ୍ଥ ନପଢ଼ି ଯଦି କେବଳ ଏହି ସୂଚୀ ସମୂହକୁ ପଢ଼ାଯାଏ, ତାହାହେଲେ ବିଶେଷ କଲ୍ୟାଣ ସାଧିତ ହୋଇପାରିବ । ଏବେ ମୁଁ ଶ୍ରୀମଦ୍‌ଭାଗବତର ସାର ତଥା ଭଗବନ୍ନାମର ମହତ୍ତ୍ୱ ଆପଣମାନଙ୍କୁ ଶୁଣାଇବି । ଆପଣମାନେ ମନଧ୍ୟାନ ଦେଇ ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ଜୋ ନ ଭାଗବତ ଚରିତ ପୂର୍ଣ୍ଣ ପଢ଼ିବେ ଜୋ ଅବସର ।
ବିଷୟ ଅନୁକ୍ରମ ପଢ଼େ ଏକ ଅଧ୍ୟାୟ ପୁଣ୍ୟକର ।।
ଅତି ସମାସ ସପ୍ତାହ ନିକାରେଯୌ ସାର ସାର ସବ ।
କରୈଂ କଂଠ ଜୋ ହାର ହୋହି ନହିଁ ବନ୍ଧନ ଭବ ।।
ଯୋ ଅଧ୍ୟାୟ ବିଶେଷ କୁଁ, ସୁନହିଁ ପଢ଼ହିଁ ଗାବହିଁ ରଟୈଂ ।
ହୋହିଁ ମନୋହର ସଫଲ ସବ, ତିନିକେ ଭବ ବନ୍ଧନ କଟୈଂ ।।



# ଶ୍ରୀମଦ୍ଭାଗବତର ସାର-ନାମ ସଂକୀର୍ତ୍ତନ

**ପତିତଃ ସ୍ଖଳିତଶ୍ଚାର୍ତ୍ତଃ କ୍ଷୁତ୍ତ୍ୱା ବା ବିବଶୋ ବ୍ରୁବନ୍ ।**
**ହରୟେ ନମଃ ଇତ୍ୟୁଚ୍ଚୈର୍ମୁଚ୍ୟତେ ସର୍ବପାତକାତ୍ ॥** ★
(ଶ୍ରୀ ଭା: ୧୨ସ୍କ: ୧୨ଅ: ୪୬ଶ୍ଳୋକ)

ଷଟ୍‌ପଦୀ

ଜୋ ଜୋ ଜୀୟେ ପ୍ରଶ୍ନ ଯଥାମତି ସକଲ ବଖାନେ ।
ସବ ଚରିତାନି ମେଂ ସାର ଶ୍ୟାମ ଶୁଭ ନାମହିଁ ଜାନେ ॥
ଉପଟତ ଠୋକର ଖାତ ଗିରତ ଛୀଂକତ ଜମୁହାବତ ।
'ହରୟେ ନମଃ' ୟେ ଶବ୍ଦ ପାପ ପରବତନି ଚହାବତ ॥
ଜୋଂ ରବି ତମକୂଁ, ପବନ ଜ୍ୟୋଂ ଛିନ୍ନ ଭିନ୍ନ ମେଘନି କରୈ ।
ତ୍ୟୋଂ କୀର୍ତନ ହରି ନାମ କୋ, ହିୟ କେ ସବ କଲ୍ମଷ ହରୈ ॥

କଳିଯୁଗର ଜୀବଙ୍କ ଉପରେ କୃପାକରି ଭଗବାନ ନିଜର ମଙ୍ଗଳମୟ ସୁମଧୁର ନାମରେ ନିଜର ସମ୍ପୂର୍ଣ୍ଣ ଶକ୍ତି ଭରି ଦେଇଛନ୍ତି । ଅନ୍ୟ ଯୁଗମାନଙ୍କରେ କଠୋର ସାଧନ କରାଯାଉଥିଲା । ତେଣୁ ଅନେକ ଦିନ ସାଧନା କଲେ କାହାକୁ କେମିତି ଭଗବତ୍ ପ୍ରାପ୍ତି ହେଉଥିଲା । ସେହିସବୁ ସାଧନ ପାଇଁ ମଧ୍ୟ ନାନା ପ୍ରକାର ବିଧି ବିଧାନ ଥିଲା । ଏଥିପାଇଁ କଠିନତା ଅଧିକ ବଢ଼ିଯାଇଥିଲା । କିନ୍ତୁ ଆଜିର ଏହି ଭଗବନ୍ନାମ ସ୍ମରଣରେ କୌଣସି ବିଧି ବିଧାନ ନାହିଁ । ଦେଶ କାଳ ପାତ୍ରର ନିୟମ ନାହିଁ । ସର୍ବାବସ୍ଥାରେ ସବୁଠାରେ ପ୍ରତ୍ୟେକ ବ୍ୟକ୍ତି ଏହି ସରଳ ସୁଗମ ସାଧନକୁ ସବୁକିଛି କରୁଥିବାବସ୍ଥାରେ ମଧ୍ୟ କରି ପାରିବ । କଳିଯୁଗର ଲୋକଙ୍କର ଅଧିକ ଦୁର୍ଭାଗ୍ୟ ଆଉ କ'ଣ ହୋଇପାରେ, ଯିଏ ଏପରି ସୁନ୍ଦର ସାଧନକୁ ଜାଣି ଶୁଣି ମଧ୍ୟ ତାହାର ଉପଯୋଗ ନ କରେ ।

ସୂତ କହିଲେ—''ମୁନିଗଣ ! ମୁଁ ଆପଣମାନଙ୍କୁ ଭାଗବତ କଥାର ସପ୍ତାହ କ୍ରମରେ ବିଷୟ-ସୂଚୀ କହିଥିଲି । ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଚହୁଁଛନ୍ତି ?''

ଶୌନକ କହିଲେ—''ହେ ସୂତ ! ଆମ୍ଭେମାନେ ଏହା ଜାଣିବାକୁ ଚାହୁଁ ଯେ, ଆପଣ ଶ୍ରୀମଦ୍ଭାଗବତରେ ବିଶ୍ୱବ୍ରହ୍ମାଣ୍ଡର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର ବିଭିନ୍ନ ପ୍ରକାର ବର୍ଣ୍ଣନା କଲେ । ରାଜାମାନଙ୍କର ବଂଶ ଚରିତ୍ର ଶୁଣାଇଲେ, ଅନେକ ମୁନି ଋଷିଙ୍କ କଥା କହିଲେ, ଅନେକ ଭାବଉଦ୍ରେକକାରୀ କଥା କହିଲେ ଓ ବିଭିନ୍ନ ଅବତାର ତତ୍ତ୍ୱ କହିଲେ । ବହୁତ ପ୍ରଶ୍ନର ଉତ୍ତର ମଧ୍ୟ ଦେଲେ । ଏବେ ଆମ୍ଭେମାନେ ଜାଣିବାକୁ ଚାହୁଁ ଯେ, ଏସବୁଥିର ସାରବସ୍ତୁ କ'ଣ ?''

---

★ ତାହାର ନାମ ଉଚ୍ଚାରିଲେ । ମନରେ ତା ରୂପ ଚିନ୍ତିଲେ ॥
ଶୁଣି ଶୁଣାଇ ଯେ ବା ଗାଏ । ଶମନ ଭୁବନେ ନ ଯାଏ ॥
ପ୍ରାଣୀ କ୍ଷୁଧା-ତୃଷାର୍ତ୍ତ ହୋଇ । ନାନା ତାପରେ ବ୍ୟଥା ପାଇ ॥
ଚାଲନ୍ତେ ପଥ ଝୁଡ଼ି ପଡ଼େ । ପାଷାଣେ ଅବା କଣ୍ଟାବାଡ଼େ ॥
ହେଳା ବା ଶ୍ରଦ୍ଧାରେ ଶୁଣଇ । ସଂସାର-ସାଗରୁ ତରଇ ॥
ତା ନାମ ଦୃଢ଼େ ଯେ ଭଜନ୍ତି । ତା ହୃଦେ ବାସୁଦେବ ସ୍ଥିତି ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ସୂତ କହିଲେ—''ମହାରାଜ ! ମୁଁ ସମସ୍ତ ଶାସ୍ତ୍ରର ସାର ସଂଗ୍ରହକରି ଆପଣମାନଙ୍କୁ ଭାଗବତ କଥା କହିଲି । ମୋର ଗୁରୁଦେବ ଭଗବାନ୍ ଶୁକ ସମ୍ପୂର୍ଣ୍ଣ ବେଦ, ଶାସ୍ତ୍ର, ଇତିହାସ ଓ ପୁରାଣ ଆଦି ଗ୍ରନ୍ଥର ସାର ନେଇ ମହାରାଜ ପରୀକ୍ଷିତଙ୍କୁ ଭାଗବତ କଥା ଶୁଣାଇଥିଲେ । ଏବେ ସାରରୁ ଅଧିକ ସାର ମୁଁ ଆଉ କ'ଣ ଶୁଣାଇବି ?''

ଶୌନକ କହିଲେ—''ହେ ସୂତ ! ଏହା ସତ୍ୟ ଯେ, ଆପଣ ସାର ସିଦ୍ଧାନ୍ତ ବତାଇଛନ୍ତି । ଶାସ୍ତ୍ରର ସାର ସମନ୍ୱୟ ବିଷୟ ଆପଣ କହିଛନ୍ତି । ସାଧନ, ଯୋଗ, ଭକ୍ତି, ଜ୍ଞାନ, କର୍ମ ଆଦି ସବୁକିଛିର ତତ୍ତ୍ୱ ବତାଇଛନ୍ତି । କିନ୍ତୁ କଳିକାଳ ପାଇଁ କୌଣସି ସରଳ ସୁଗମ ସର୍ବୋପଯୋଗୀ ସାଧନ ସମ୍ବନ୍ଧରେ କହି ନାହାନ୍ତି । ତାହା ଏବେ ଆମ୍ଭମାନଙ୍କୁ କହନ୍ତୁ । ଶ୍ରୀମଦ୍ଭାଗବତର ଅଧିକ ଲକ୍ଷ୍ୟ କେଉଁ ସାଧନ କରିବା ପାଇଁ ?''

ସୂତ ହସି ହସି କହିଲେ—''ମହାରାଜ ! ଏହିକଥା ମୁଁ ଅନେକ ଥର ଆପଣମାନଙ୍କୁ କହିଛି । କିନ୍ତୁ ଆପଣ ତାହା ବାରମ୍ବାର ମୋତେ ପଚାରୁଛନ୍ତି । ଏହି ଭାଗବତ ଗ୍ରନ୍ଥରୁ ଭଗବାନ ନାନା ଅବତାର ହେବା କଥା ଓ ଅବତାର ହୋଇ ନାନାପ୍ରକାର ଲୀଳା କରିଥିବା କଥା ମୁଁ ବର୍ଣ୍ଣନା କରିଛି । ପାପହରଣକାରୀ ହରିଙ୍କର ଲୀଳା କଥା ହିଁ ଭବସାଗର ପାରହେବା ଲୋକପାଇଁ ପ୍ରିୟ ପାଥେୟ ।''

ଶୌନକ ପଚାରିଲେ—''ହେ ସୂତ ! **ଭଗବାନଙ୍କର ନାମ 'ହରି' କାହିଁକି ରଖା ଯାଇଛି ?''**

ସୂତ କହିଲେ—''ମହାରାଜ ! ପ୍ରାଣୀମାନଙ୍କର ପାପ ହରଣ କରୁଥିବାରୁ ତାଙ୍କୁ ହରି ନାମରେ ସମ୍ବୋଧନ କରାଯାଏ ।''

ଶୌନକ ପଚାରିଲେ—''ହେ ସୂତ ! **ପ୍ରାଣୀ ପାପ କାହିଁକି କରେ ?''**

ସୂତ କହିଲେ—''ମହାରାଜ ସଂସ୍କାରର ବଶୀଭୂତ ହୋଇ ପ୍ରାଣୀ ପାପ କରେ । ପାପ ଓ ପୁଣ୍ୟ ଅନୁସାରେ ଶରୀର ମିଳିଥାଏ । ସୂକ୍ଷ୍ମ ଶରୀରରେ ଏହି ପାପ ପୁଣ୍ୟର ସଂସ୍କାର ପୂର୍ବରୁ ରହିଥାଏ । ପୁଣ୍ୟରେ ବନ୍ଧନ ଅଛି ଓ ପୁଣ୍ୟରୁ ମଧ ଜନ୍ମ ମୃତ୍ୟୁ ଅଛି । ଏଥିପାଇଁ ପୁଣ୍ୟ ମଧ ଏକ ପ୍ରକାରର ପାପ । ମନୁଷ୍ୟ ଏହି କାରଣରୁ ପାପ ପରିପୂର୍ଣ୍ଣ ଶରୀର ଧାରଣ କରିଥାଏ । ଭଗବଦ୍ ସେବା, ଭଗବଦ୍ ସ୍ମରଣକୁ ଛାଡ଼ି ଜୀବ ଯେ କୌଣସି କର୍ମ କଲେ ମଧ ସବୁ ପାପ ହିଁ କରିଥାଏ । ସଂସାରୀ ଅସତ୍ ବସ୍ତୁଙ୍କୁ ଏକତ୍ର କରିବା ମଧ ପାପ । ଚତୁର୍ଦ୍ଦିଗରେ ବିଷ୍ଠା ପଡ଼ିଛି । ସେ ସବୁକୁ ଏକତ୍ରିତ କରି ମନୁଷ୍ୟ ଘରେ ଭର୍ତ୍ତି କରୁଛି । ମୋର ମୋର କହିବା ମଧ ଏକ ପ୍ରକାରର ପାପ । ପୂଜା ପାଇଁ, ଯଜ୍ଞ ପାଇଁ ଓ ପ୍ରଭୁଙ୍କ ପାଇଁ ଯେଉଁ କର୍ମ କରାଯାଏ ତାହା ପୁଣ୍ୟ କର୍ମ । ଏହା ବ୍ୟତୀତ ଅନ୍ୟ ସମସ୍ତ ପାପ କର୍ମ । ମନୁଷ୍ୟର ଜନ୍ମ ହିଁ ପାପମୟ । ପିତା ମାତାଙ୍କ ମନରେ ବିକାର ଜାତ ହେଲେ ସଂଗମରୁ ଜୀବ ରଜ ବୀର୍ଯ୍ୟ ସଂମିଶ୍ରଣରୁ ଜାତ ହୁଏ । ଶରୀର ଛିଦ୍ରମୟ । ସବୁଥିରୁ ମଳ ନିର୍ଗତ ହୁଏ । ଶରୀରରେ ନାନାଦି ରୋଗ ଜାତ ହୁଏ । ରୋଗ, ମଳ, ଦୋଷ, ପାପ ଆଦି ସମସ୍ତ ଏକ ପର୍ଯ୍ୟାୟବାଚୀ ଶବ୍ଦ । ପ୍ରତ୍ୟେକ ଶରୀର ମଳ ଓ ରୋଗଯୁକ୍ତ । ପୃଥିବୀର ପ୍ରତ୍ୟେକ ବ୍ୟକ୍ତିଙ୍କୁ ରୋଗ ହୁଏ । ପ୍ରତ୍ୟେକ କାର୍ଯ୍ୟରେ ପାପ ରହିଛି ।''

ଶୌନକ କହିଲେ—''ହେ ସୂତ ! ଆପଣ ସତ କଥା କହୁଛନ୍ତି । ଶ୍ରୀକୃଷ୍ଣଙ୍କ କିଂକର (ଶରଣାଗତ) ନ ହୋଇଥିବା ପ୍ରାଣୀ ପ୍ରତି ମୁହୂର୍ତ୍ତରେ ପାପ କରି ଚାଲିଥାଏ । ଏହି ପାପରୁ ତାକୁ ତ୍ରାହି କିପରି ମିଳିବ ?''

ସୂତ କହିଲେ—''ମହାରାଜ ! 'ନ ମମ' କହିବା ଦ୍ୱାରା ପାପ ତାକୁ ସ୍ପର୍ଶ କରିବ ନାହିଁ ।''

ଶୌନକ ପଚାରିଲେ—"'ନ ମମ'ର ତାତ୍ପର୍ଯ୍ୟ ବା ଅର୍ଥ କ'ଣ ? ତାହା ସ୍ପଷ୍ଟରୂପେ କହନ୍ତୁ ।"

ସୂତ କହିଲେ—"ମହାରାଜ ! ଯଜ୍ଞରେ ଆହୁତି ଦେବା ପରେ କୁହାଯାଏ—'ନ ମମ' । ଯଥା—'ଇନ୍ଦ୍ରାୟ ସ୍ୱାହା, ଇଦଂ ନ ମମ' । ଏହି ଆହୁତି ଇନ୍ଦ୍ରଙ୍କ ପାଇଁ, କିନ୍ତୁ ମୋ ପାଇଁ ନୁହେଁ । ସମସ୍ତ ବସ୍ତୁ ମଧ୍ୟରୁ ନିଜକୁ ବାଦ ଦେଇଦେଲେ ମନୁଷ୍ୟକୁ ପାପ ପୁଣ୍ୟ ସ୍ପର୍ଶ କରେ ନାହିଁ । ତେଣୁ ସବୁକିଛି ସତ୍‌କର୍ମ କରି ମଧ୍ୟ 'ନ ମମ, ନ ମମ' ବୋଲି କହିବା ଉଚିତ୍ । ନ ମମ କହନ୍ତୁ ବା ନମୋ ନମଃ କହନ୍ତୁ ତାହା ଏକା କଥା । ଯେଉଁ ବ୍ୟକ୍ତି ପାପହରଣକାରୀ ହରିଙ୍କୁ ସର୍ବଦା ନମୋ ନମଃ କରୁଥାଏ, ସେ ନିଶ୍ଚିତ ଭାବରେ ପାପରୁ ମୁକ୍ତି ଲାଭ କରେ । ଏଥିପାଇଁ ପାପରୁ ମୁକ୍ତି ଲାଭ କରିବାର ଏକମାତ୍ର ମନ୍ତ୍ର ହେଉଛି—"ହରୟେ ନମଃ ।"

ଶୌନକ ପଚାରିଲେ—"ହେ ସୂତ ! ଏହି ମନ୍ତ୍ରକୁ ଧୀରେ ଧୀରେ ଯଦି ମନ ମଧ୍ୟରେ ଜପ କରାଯାଏ, ତାହାହେଲେ କ୍ଷତି କ'ଣ ?"

ସୂତ କହିଲେ—"ନା, ମହାରାଜ ! ଚୁପ୍‌ଚାପ୍ କରି ମନେ ମନେ କହିବା ଦ୍ୱାରା କାମ ଚଳେ ନାହିଁ । ଉଚ୍ଚସ୍ୱରରେ ହିଁ କହିବା ଦ୍ୱାରା ପାପ-ପକ୍ଷୀ ଉଡ଼ି ପଳାଏ । ହରୟେ ନମଃ, କୃଷ୍ଣାୟ ନମଃ, ବାସୁଦେବାୟ ନମଃ ଏହିସବୁ ମନ୍ତ୍ରକୁ ଉଚ୍ଚସ୍ୱରରେ କୀର୍ତ୍ତନ କରିବା ଉଚିତ୍ । କେବଳ ହେ ରାମ ! ହେ ହରେ ! ହେ କୃଷ୍ଣ ! ହେ ବାସୁଦେବ ! ଏହିପରି ସରଳ ବାକ୍ୟରେ ବିନା ସଂସ୍କୃତରେ ଉଚ୍ଚାରଣ କଲେ ମଧ୍ୟ ପାପ ଖଣ୍ଡନ ହୁଏ ।

ଶୌନକ ପଚାରିଲେ—"ହେ ସୂତ ! ମନ ଧ୍ୟାନ ଦେଇ କହିଲେ ସିନା ପାପ ଖଣ୍ଡନ ହେବ, ମନ ନଥାଇ ସେ କୌଣସି ବ୍ୟସ୍ତତା ଭିତରେ କହିଲେ କ'ଣ କିଛି ଲାଭ ହେବ ?"

ସୂତ କହିଲେ—"ମହାରାଜ ! ମନ ଧ୍ୟାନ ଦେଇ କହିଲେ ତ ସବୁଠାରୁ ଉତ୍ତମ । କିନ୍ତୁ ମନ ନଥାଇ କହିଲେ ମଧ୍ୟ ଯଦି ହଠାତ୍ ବିବଶ ଅବସ୍ଥାରେ ମୁଖରେ 'ହରୟେ ନମଃ', 'ହେ ହରି', 'ହରେ ରାମ', 'ରାମ ରାମ' ବା 'ହେ କୃଷ୍ଣ' ଆଦି ଉଚ୍ଚାରିତ ହୋଇଯାଏ, ତାହାହେଲେ ପ୍ରାଣୀ ସମସ୍ତ ପାପରୁ ଉଦ୍ଧାର ପାଏ ।"

ଶୌନକ ପଚାରିଲେ—"ହେ ସୂତ ! ବିବଶ ହୋଇଥିଲେ ସ୍ୱତଃ ମୁଖରୁ କିପରି ଏହି ନାମ ବାହାରି ପଡ଼େ ? ତାହା ସ୍ପଷ୍ଟରୂପେ ଆମ୍ଭମାନଙ୍କୁ ବୁଝାଇ ଦିଅନ୍ତୁ ।"

ସୂତ କହିଲେ—"ମହାରାଜ ! ଯେପରି କି ବର୍ଷାଦିନେ ଚିକ୍କଣ ମାଟି ଉପରେ ପାଦ ପଡ଼ିଗଲେ ଗୋଡ଼ ଖସିଯାଏ ଓ ଲୋକ କଚାଡ଼ି ହୋଇ ପଡ଼େ ଏବଂ ଏହି ସମୟରେ ହଠାତ୍ ମୁଖରୁ ବାହାରି ପଡ଼େ 'ହେ ରାମ ! ଏ କ'ଣ କଲ ? ଏହିପରି ଅବସ୍ଥା ଅନେକ କ୍ଷେତ୍ରରେ ଘଟିଥାଏ । ସେହି ସେହି ହଠାତ୍ ବିପଦ ସମୟରେ ମୁଖରୁ ସ୍ୱତଃ 'ହେ କୃଷ୍ଣ, ହେ ରାମ, ହେ ଶିବ, ହେ ହରି' ଆଦି ଶବ୍ଦ ବାହାରି ପଡ଼େ । ଏପରିକି ଛିଙ୍କିବାବେଳେ ମଧ୍ୟ କୃଷ୍ଣ କୃଷ୍ଣ, ରାମ ରାମ ଆଦି ଶବ୍ଦ ମୁଖରୁ ସ୍ୱତଃ ବାହାରି ପଡ଼େ । ଏହି ବିବଶ ଅବସ୍ଥାରେ ପରମ ପବିତ୍ର ନାମ ମୁଖରୁ ବାହାରି ପଡୁଥିଲେ ମଧ୍ୟ ପ୍ରାଣୀ ସମସ୍ତ ପାପରୁ ଉଦ୍ଧାର ପାଇଥାଏ ।"

ଶୌନକ ପଚାରିଲେ—"ହେ ସୂତ ! ଭଗବାନଙ୍କ ନାମରେ ଅକ୍ଷର ସଂଖ୍ୟା ତ ଏତେ କମ୍, ଏଥିରେ ବିଶେଷତ୍ୱ କ'ଣ ଅଛି, ଯାହାକି ଶୀଘ୍ର ପାପ ସମୂହକୁ ନାଶ କରିପାରୁଛି ?"

ସୂତ କହିଲେ—"ମହାରାଜ ! ଶବ୍ଦ ତ ଗୋଟିଏ, କିନ୍ତୁ ଶବ୍ଦ ଯୋଜନାରେ ତାହାର ଅନ୍ତର ହେଉଥିବାରୁ ଫଳରେ ଅନୁକୂଳତା ପରିଲକ୍ଷିତ ହୁଏ । ଯେପରିକି ମାତା, ପିତା, ଭାଇ, ଭଉଣୀ ଆଦି ଅତି ଆଦରର ଶବ୍ଦ । ଏଥିରେ ବାତ୍ସଲ୍ୟଭାବ ପରିପୂର୍ଣ୍ଣ, ସ୍ନେହ ମମତା ପରିପୂର୍ଣ୍ଣ । ଯଦି ଶବ୍ଦ-ଯୋଜନାକୁ ବିକୃତ କରି କୁହାଯାଏ ବୋପାଟା, ମା'ଟା, ଭାଇଟା, ଭଉଣୀଟା ଇତ୍ୟାଦି, ତାହାହେଲେ ଏହା ଗାଳି ଦେବାପରି ହୋଇଥାଏ । ଏଥିରେ ସେମାନଙ୍କୁ

ଅସମ୍ମାନ କରାଯାଇଥାଏ ଓ ସେମାନେ ଅପମାନିତ ହୋଇଥାଆନ୍ତି । ଏପରି କହି ତା ସହିତ ବିଶେଷଣ ଯୋଡ଼ି ଶବ୍ଦ ଯୋଜନା କରାଯାଏ, ଯଥା ବୋପାଟା ବଦମାସ୍ ବା ପୂଜ୍ୟ, ଏଥିରେ ଶବ୍ଦ ଯୋଜନାରେ ବ୍ୟତିକ୍ରମ ହେଉଥିବାରୁ ତାହା ଅହିତକର ହୋଇଥାଏ । ସେଥିପାଇଁ ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି—ଖା, ଭୁଞ୍ଜ, ଗିଳ୍ । ଏହାର ପ୍ରଭାବ ମଧ୍ୟ ତଦନୁରୂପ ଅନୁକୂଳ ଓ ପ୍ରତିକୂଳ ହୋଇଥାଏ । ତେଣୁ ଅକ୍ଷର ଓ ଶବ୍ଦ ଗଠନ ଯୋଜନାର ଯଥେଷ୍ଟ ପ୍ରଭାବ ରହିଛି । ସେହି ଅକ୍ଷର ସଂଯୋଜନାରେ ଗାୟତ୍ରୀ ମନ୍ତ୍ର ଆଦି ଅଧିକ ଫଳପ୍ରଦ ମନ୍ତ୍ର ସୃଷ୍ଟି କରାଯାଇ ଜୀବର କଲ୍ୟାଣ କରାଯାଇ ପାରୁଛି । ସେହି ଶବ୍ଦ ଯୋଜନାର ବ୍ୟତିକ୍ରମରେ ମଧ୍ୟ ଜୀବର ଅକଲ୍ୟାଣ କରାଯାଇ ପାରୁଛି । କେତେକ ଶବ୍ଦ କର୍ଣ୍ଣକୁ ଅମୃତ ପରି ଲାଗୁଛି ଓ କେତେକ ବିଷତୁଲ୍ୟ ଲାଗୁଛି । ଶବ୍ଦ ପ୍ରୟୋଗରେ ମନୁଷ୍ୟ ଜୀବନରେ ଶାନ୍ତି ଅଣାଯାଇ ପାରୁଛି ଓ ଅଶାନ୍ତି ସୃଷ୍ଟି କରାଯାଇ ପାରୁଛି । ଉଚ୍ଚସ୍ୱରରେ ନାମକୀର୍ତ୍ତନ ତଥା ଭଗବାନଙ୍କ ଲୀଳା ଶ୍ରବଣ କୀର୍ତ୍ତନ ଦ୍ୱାରା କର୍ଣ୍ଣ ମାଧ୍ୟମରେ ମନୁଷ୍ୟର ହୃଦୟକୁ ସ୍ପର୍ଶ କରାଯାଇ ପାରୁଛି । ଏହାଦ୍ୱାରା ସମସ୍ତ କ୍ଳେଶ ଓ କଳ୍ମଷ ହରଣ ହୋଇ ପାରୁଛି । ବ୍ୟର୍ଥ ବାକ୍ୟଗୁଡ଼ିଏ କହିବା ବକିବା ଦ୍ୱାରା କିଛି ଲାଭ ନଥାଏ, ଏଥିରେ ବାଣୀର ସାର୍ଥକତା ପରିବର୍ତ୍ତେ ସମସ୍ତ ବ୍ୟର୍ଥ ହୋଇଥାଏ ।''

ଶୌନକ ପଚାରିଲେ—''ମହାରାଜ ! ଭଗବନ୍ନାମ ନେଲେ ତ ବାଣୀର ସାର୍ଥକତା ! ହୀରା, ପନ୍ନା, ଲାଲ ଆଦି ରତ୍ନରୁ ଯଦି ବିଷ ସଂଗ୍ରହ କରାଯାଏ, ତେବେ ରତ୍ନଗୁଡ଼ିକର ତ ଦୁରୁପଯୋଗ ହୁଏ, ସେଗୁଡ଼ିକର ଯଥାର୍ଥ ଉପଯୋଗ ତ କେବଳ ଦେବତା ଓ ରାଜାଙ୍କ ମୁକୁଟ ଆଦିରେ ଲଗାଯିବା ଦ୍ୱାରା ହୋଇଥାଏ, ମୁଦ୍ରିକାରେ ମଧ୍ୟ ତାହା ଖଞ୍ଜାଯାଏ, ସ୍ତ୍ରୀଲୋକମାନଙ୍କ କଣ୍ଠହାରରେ ଖଞ୍ଜାଯାଇ ଶୋଭା ବର୍ଦ୍ଧନ କରେ । ସେହିପରି ବାଣୀର ସାର୍ଥକତା ସାଂସାରିକ ବ୍ୟବହାରରେ ହୁଏ ନାହିଁ । ଯେଉଁ ବାଣୀରେ ଭଗବାନଙ୍କର ମଙ୍ଗଳମୟ ମଧୁର ନାମ ନିଆ ନଯାଏ, ସେହି ବାଣୀ ବୃଥା ହୁଏ । ଯେଉଁ ବାଣୀରେ ଭଗବନ୍ନାମ, ଗୁଣ ଆଦିର ଉଦୟ ହୁଏ, ସେହି ବାଣୀ ହିଁ ସତ୍ୟ ଓ ମଙ୍ଗଳମୟୀ । ତାହା ପରମ ପାବନ । ତାହା ମନକୁ ସର୍ବଦା ଆନନ୍ଦ ପ୍ରଦାନ କରେ ଓ ମନୁଷ୍ୟର ଶୋକସାଗରକୁ ଶୁଖାଇ ଦିଏ । ଯେଉଁ ବାଣୀଦ୍ୱାରା ଭଗବାନଙ୍କର ସୁଯଶ ଗାନ କରାଯାଏ, ସେହି ବାଣୀ ଶ୍ରବଣରେ କର୍ଣ୍ଣ ପବିତ୍ର ହୁଏ । ତେଣୁ ଆପଣମାନଙ୍କ ବାଣୀ ଧନ୍ୟ । କାରଣ ଆପଣମାନେ ସର୍ବଦା ଭଗବାନଙ୍କର ନାମ କୀର୍ତ୍ତନ, ଲୀଳାଗୁଣ କଥନ ବ୍ୟତୀତ ଅନ୍ୟ କିଛି ଉଚ୍ଚାରଣ କରୁ ନାହାନ୍ତି । ହେ ମହାନୁଭାବଗଣ ! ଭଗବନ୍ନାମ ମାହାତ୍ମ୍ୟ ଏପରି ଅନନ୍ତ ଅପାର ଯେ, ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ ।''

ଶୌନକ କହିଲେ—''ହେ ସୂତ ! ଆପଣଙ୍କ ବାଣୀ ବଡ଼ ମଧୁର । ତାହା ଶ୍ରବଣ କରି ଆମ୍ଭେମାନେ ସୁଖୀ ହେଲୁ । ଆପଣ ଆଉକିଛି ଭଗବନ୍ନାମ ଗୁଣ ମାହାତ୍ମ୍ୟ ଆମ୍ଭମାନଙ୍କୁ କହନ୍ତୁ ।''

ସୂତ କହିଲେ—''ମହାରାଜ ! ମୁଁ ଯେତେ ଶୁଣାଇବି ମୋର ବାଣୀ ସେତେ ପବିତ୍ର ହେବ । ତେବେ କହୁଛି, ଶୁଣନ୍ତୁ ।

ଷଟ୍‌ପଦୀ

ସୋ ବାନୀ ହୈ ବ୍ୟରଥ ନାମ ହରି କେ ନହିଁ ଗାବୈ ।
ହୈ ବହ କଥା ଜଇଙ୍କ କୃଷ୍ଣ ଚରିତନି ନ ସୁନାବୈ ।।
ହୈ ଅତି ପାବନ ବଚନ ସୁଯଶ ହରି ହୀ କେ ବୋଲେଂ ।
ତେ ପଦ ପାବନ ପରମ ପୁଣ୍ୟ ତୀର୍ଥନି ମେଂ ଡୋଲେଂ ।।
କଥା କୀର୍ତ୍ତନ କୃଷ୍ଣ କୋ, ତୁଲସୀ ହରି ସେବା ଜହାଁ ।
ହଂସ ଭକ୍ତ ନିରମଲ ପରମ, ନିୟମ ସହିତ ନିବସହିଁ ତହାଁ ।।



# ନାମ କୀର୍ତ୍ତନ ଯୋଗୁ ସବୁକିଛି ପବିତ୍ର ହୁଏ

ନ ତଦ୍ ବଚାଶ୍ଚିତ୍ରପଦଂ ହରେର୍ଯଶୋ
ଜଗତ୍‌ପବିତ୍ରଂ ପ୍ରଗୃଣୀତ କର୍ହିଚିତ୍ ।
ତଦ୍ ଧ୍ୱାଙ୍‌କ୍ଷତୀର୍ଥଂ ନ ତୁ ହଂସସେବିତଂ,
ଯତ୍ରାଚ୍ୟୁତସ୍ତତ୍ର ହି ସାଧବୋଽମଳାଃ ॥ ☆
(ଶ୍ରୀ ଭା: ୧୨ସ୍କ: ୧୨ଅ: ୫୦ଶ୍ଲୋକ)

ଷଟ୍‌ପଦୀ
ଜାମେଂ ନହିଁ ହରି ନାମ ଭାଗବତ ଚରିତ ନ ଜାମେଂ ।
କାକତୀର୍ଥ ସୋ ନିତ୍ୟ ନ୍ହାୟଁ କୌଆ ବକ ତାମେଂ ॥
ହୋୱେ କବିତା ସୁଧର ରସୀଲୀ ଗୁନ ପ୍ରସାଦ ଯୁତ ।
କୃଷ୍ଣ କଥା ତେଂ ରହିତ ଘୃନିତ ନୀରସ ଅତି ନିନ୍ଦିତ ॥
ନିତ ନବ ନବ ନଟବର ଚରିତ, ସୁଖଦ ସରସ ଅତିଶୟ ବିମଲ ।
କହତ ପଢ଼ତ ଗାବତ ସୁନତ, ହୋୱେ ବିକସିତ ହୃଦ କମଲ ॥

ରାମାୟଣରେ ଏକ ପ୍ରସିଦ୍ଧ କଥା ଅଛି । ଥରେ ସୀତା ପ୍ରସନ୍ନ ହୋଇ ହନୁମାନଙ୍କୁ ଏକ ବହୁମୂଲ୍ୟ ମଣିର ମାଳା ଦେଲେ । ହନୁମାନ ସେହି ମାଳାର ପ୍ରତ୍ୟେକ ମଣିକୁ ଦାନ୍ତରେ ଭାଙ୍ଗି ଦେଖିବାକୁ ଲାଗିଲେ । କେହି ଜଣେ ଭକ୍ତ ପଚାରିଥିଲେ—"ହନୁମାନ ! ଏତେ ମୂଲ୍ୟବାନ୍ ମଣିଗୁଡ଼ିକୁ ଆପଣ ଭାଙ୍ଗି ପକାଉଛନ୍ତି କାହିଁକି ଓ ପୁନଶ୍ଚ ନିରେଖି ଦେଖୁଛନ୍ତି କାହିଁକି ?

ହନୁମାନ କହିଥିଲେ—"ତୁମେ ଏହି ମଣିଗୁଡ଼ିକୁ ବହୁମୂଲ୍ୟ ବୋଲି କହୁଛ, କିନ୍ତୁ ମୁଁ କହୁଛି, ଏଥିରେ କଡ଼ାକର ବି ମୂଲ୍ୟ ନାହିଁ । କାରଣ ଏଥିରେ କେଉଁଠାରେ ହେଲେ ରାମ-ନାମ ନାହିଁ । ଯେଉଁଥିରେ ରାମ-ନାମ ନାହିଁ, ତାହା ସାଂସାରିକ ବସ୍ତୁ ଓ ତାହା ମୂଲ୍ୟହୀନ ।"

ଏହାର ଉଦ୍ଦେଶ୍ୟ ହେଲା, ଆମ୍ଭମାନଙ୍କର ଜୀବନ ଭଗବନ୍ନାମମୟ ହେଉ । ଆମ୍ଭେମାନେ ଯାହାକିଛି କରୁଛୁ ତାହା ସେହି ଭଗବାନଙ୍କର କାର୍ଯ୍ୟ । ତାଙ୍କରି ପାଇଁ ଆମ୍ଭେମାନେ ସବୁ ପ୍ରକାର କାର୍ଯ୍ୟ କରୁଛୁ । ଯେଉଁ କାର୍ଯ୍ୟ ବା ଯେଉଁ ଚେଷ୍ଟା ଭଗବାନଙ୍କୁ ସ୍ମରଣ ନକରି ଆମ୍ଭେମାନେ କରୁଥାଇଁ ସେ ସମସ୍ତ ବ୍ୟର୍ଥ ହୋଇଥାଏ ।"

ସୂତ କହିଲେ—"ମୁନିଗଣ ! ଭଗବନ୍ନାମର ମହିମାକୁ ସ୍ୱୟଂ ଭଗବାନ ବି କହିବାକୁ ଅସମର୍ଥ । ଭଗବାନ୍ ଅଜନ୍ମା ହୋଇ ମଧ୍ୟ ଏହି କାରଣରୁ ଜନ୍ମ ନିଅନ୍ତି ଯେ, ଲୋକମାନେ

---

☆ ଯେ ମୁଖେ ବାସୁଦେବ ବାଣୀ । ଗାୟନ ନ କରନ୍ତି ପ୍ରାଣୀ ॥
ତା ବାକ୍ୟ କାକତୀର୍ଥ ବୋଲି । ହଂସ ନ କରେ ତହିଁ କେଳି ॥
ଯେ ବାକ୍ୟେ କୃଷ୍ଣନାମ ଭଣେ । ସେ ପୁଣ୍ୟତୀର୍ଥ ପରମାଣେ ॥
ତହି ପରମହଂସ ମେଳି । ସେ ପୁଣ୍ୟତୀର୍ଥ ମଧ୍ୟେ ବଳି ॥
ତା ନାମ ଧରି ସାଧୁଜନ । ପତିତ କରନ୍ତି ପାବନ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ବାଣୀରେ ମୋ ଜନ୍ମ ଓ କର୍ମର ମହିମା ଗାନ କରନ୍ତୁ । ଏଥିପାଇଁ ସେ ନିରଞ୍ଜନ ଓ ନିଷ୍କ୍ରିୟ ହୋଇ ମଧ୍ୟ ମଧୁରାତିମଧୁର ଲୀଳାମାନ କରିଥାଆନ୍ତି । ଏହି କଥା ଶୁଣି ଲୋକମାନଙ୍କର କର୍ଣ୍ଣ ପବିତ୍ର ହୁଏ ।''

କବିମାନେ ତାଙ୍କରି କବିତା ଲେଖି ଜୀବନ ସାର୍ଥକ କରନ୍ତି । କାକ ରୂପକ କୁକବି ଏଣୁ ତେଣୁ କବିତା ରଚନା କରି ନିଜର ଇହଲୋକ ଓ ପରଲୋକକୁ ବିଗାଡ଼ନ୍ତି । କିନ୍ତୁ ହଂସରୂପ ସୁକବି ଅଶ୍ଳୀଳ ଅପବିତ୍ର କବିତା ଲେଖନ୍ତି ନାହିଁ । ସେମାନେ ତ ନିର୍ମଳ ପବିତ୍ର ମାନସରୋବରରେ ବିଚରଣ କରୁଥାଆନ୍ତି । ନିଜର ପବିତ୍ର ଜୀବନ ଯାପନ ଓ ସତ୍‌ସଙ୍ଗ ଲାଭକରି ସେମାନେ ବିଶ୍ୱରେ ବିଖ୍ୟାତ ହୁଅନ୍ତି । ସେହିପରି ନିର୍ମଳ ସ୍ୱଭାବବିଶିଷ୍ଟ ସାଧୁଜନ ସେହି ସ୍ଥାନରେ ବାସ କରନ୍ତି, ଯେଉଁଠାରେ ନିରନ୍ତର ନାରାୟଣଙ୍କ ନାମ ଗାନ କରାଯାଉଥାଏ, ଯେଉଁଠାରେ କୃଷ୍ଣକଥା ମନ୍ଦାକିନୀ ପ୍ରବାହିତ ହେଉଥାଏ । ସୁକବି ସେହି କାବ୍ୟ ରଚନା କରନ୍ତି, ଯେଉଁଥିରେ ଭଗବାନଙ୍କର ଗୁଣ କୀର୍ତ୍ତନ କରାଯାଇ ପାରେ । କବିତା ହେଉଛି କବିଙ୍କର ଅତି ଆଦରଣୀୟ କନ୍ୟା ସଦୃଶ । କେଉଁ ସତ୍‌ପିତା ଚାହିଁବ ନିଜର କନ୍ୟାକୁ ଜଣେ କୁଷ୍ଠ ରୋଗୀକୁ ପ୍ରଦାନ କରିବାକୁ, ଜଣେ ଗଳିତ କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇଥିବା ଲୋକକୁ ଦେବାପାଇଁ । ଏହି ସମ୍ବନ୍ଧରେ ଏକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ଦକ୍ଷିଣ ଦେଶରେ ଜଣେ ପ୍ରସିଦ୍ଧ ସତ୍ ଚରିତ୍ରର କବି ଥିଲେ । ସେ ଭଗବାନଙ୍କ ସମ୍ବନ୍ଧରେ କବିତା ଲେଖୁଥିଲେ । ଭଗବାନଙ୍କର ଗୁଣ ଗାନକରୁଥିଲେ । ସେ ଥିଲେ ନିର୍ଧନ । ତାଙ୍କର ଅନ୍ନବସ୍ତ୍ରର ଅଭାବ ରହୁଥିଲା । ଅତି ଦୟନୀୟ ଭାବରେ ସେ କାଳ କଟାଉଥିଲେ । ତାଙ୍କର ସହଧର୍ମିଣୀ ମଧ୍ୟ ଜଣେ ସହନଶୀଳା ସତୀ, ସାଧ୍ୱୀ, ପତିପରାୟଣା ଗୃହିଣୀ ଥିଲେ । ଭଗବଦ୍ଇଚ୍ଛାରୁ ତାଙ୍କୁ ଯାହାକିଛି ମିଳୁଥିଲା, ସେଥିରେ ସେ ସନ୍ତୁଷ୍ଟ ରହୁଥିଲେ । ଦିନେ ତାଙ୍କ ପତ୍ନୀର ଭାଇ ତାଙ୍କ ଘରକୁ ଆସିଲେ । ସେ ମଧ୍ୟ କବି ଥିଲେ ଓ ଏକ ରାଜସଭାର ରାଜପଣ୍ଡିତ ଥିଲେ । ରାଜା ତାଙ୍କ କବିତା ଶୁଣି ସନ୍ତୁଷ୍ଟ ହୋଇ ତାଙ୍କୁ ପ୍ରଶଂସା କରୁଥିଲେ । ରାଜା ତାଙ୍କୁ ବହୁତ ଧନରତ୍ନ ଦେଉଥିଲେ । ଏଥିପାଇଁ ସେ ବୈଭବଶାଳୀ ହୋଇପାରି ଥିଲେ । ସେ ଅତି ଆଡ଼ମ୍ବରରେ ଚଳୁଥିଲେ ।

ନିଜ ଭିଣୋଇର ଏପରି ଦୈନ୍ୟ ଅବସ୍ଥା ଦେଖି ସେ କହିଲେ—''ପଣ୍ଡିତେ ! ଆପଣ ଏତେ ବଡ଼ ସତ୍‌କବି ହୋଇ ଏପରି ଦରିଦ୍ର ଭାବରେ କାହିଁକି ଦିନ କାଟୁଛନ୍ତି ? ଏତେ ଦୁଃଖରେ କାହିଁକି ଅଛନ୍ତି ? ଆପଣ ରାଜାଙ୍କ ନିମିତ୍ତ ଏକ କବିତା ଲେଖିଦିଅନ୍ତୁ । ରାଜାଙ୍କ ଗୁଣଗାନ କରି ବହୁତ ଟେକାଟେକି କରି ସେହି କବିତା ଲେଖନ୍ତୁ, ଦେଖିବେ ଆପଣ ରାତାରାତି ଧନୀ ହୋଇଯିବେ ।'' ତାଙ୍କ ଭଉଣୀ ଏହି କଥାକୁ ଅନୁମୋଦନ କଲେ । ପତ୍ନୀ ଓ ଶଳାଙ୍କର ଅତିଶୟ ଚାପ ଫଳରେ ପଣ୍ଡିତ ମହାଶୟ ତାଙ୍କ କଥାକୁ ଟାଳିଦେଇ ପାରିଲେ ନାହିଁ । ସେ ସେହିଦିନ ରାତିରେ ଲେଖନୀ ଧରି ବସି ଲେଖିବାକୁ ଯାଉଥିବା ସ୍ଥାନରେ ନିଜ ସମ୍ମୁଖରେ ଦେଖିବାକୁ ପାଇଲେ କବିତାଦେବୀ ତାଙ୍କ ସମ୍ମୁଖରେ କନ୍ୟାରୂପ ଧାରଣ କରି ଠିଆ ହୋଇ କାନ୍ଦୁଛନ୍ତି ।

କବି ପଚାରିଲେ—''ଝିଅ ! ତୁ କାନ୍ଦୁଛୁ କାହିଁକି !'' କନ୍ୟାରୂପୀ କବିତାଦେବୀ କିଛି କହିଲେ ନାହିଁ, କେବଳ କାନ୍ଦିବାକୁ ଲାଗିଲେ ।

କବି ଅତି ଆଗ୍ରହ କରି ପଚାରିବାରୁ କାନ୍ଦୁଣୀ କନ୍ୟାଟି କହିଲା—''ଆପଣ ତ ମୋତେ ବିଷ୍ଣୁଙ୍କୁ ଅର୍ପଣ କରିଥିଲେ । ଏବେ ଆପଣ ମୋତେ ଜଣେ ବିଷୟୀକୁ ପ୍ରଦାନ କରିବାକୁ କିପରି ସ୍ଥିର କରୁଛନ୍ତି ?''

ଏହା ଶୁଣିବା ମାତ୍ରେ କବିଙ୍କର ଆଖି ଖୋଲିଗଲା । ସେହି ସମୟରେ ସେ ଏକ ହୃଦୟଗ୍ରାହୀ କରୁଣାପୂର୍ଣ୍ଣ କବିତା ଲେଖିଲେ । ସେହି କବିତାର ସାରକଥା ଏହି ଯେ, ହେ ଦେବି ! ମୁଁ ଦରିଦ୍ର ହୋଇଥିବାରୁ କର୍ତ୍ତବ୍ୟଚ୍ୟୁତ ହେବାକୁ ଯାଉଥିଲି । ତୁମେ ଆସି ମୋତେ ଚେତାଇ ଦେଲ । ମୁଁ ତୁମକୁ ଅଯୋଗ୍ୟ ହାତରେ କଦାପି ପ୍ରଦାନ କରିବି ନାହିଁ । ବିଷୟୀ ହାତରେ ତୁମର ପାଣିଗ୍ରହଣ କରାଇ ପାରିବି ନାହିଁ । ଯାହାଙ୍କ ହାତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ତାଙ୍କୁ ହିଁ ତୁମକୁ ପ୍ରଦାନ କରିବି । ତୁମକୁ ବିଷ୍ଣୁପ୍ରିୟା କରାଇ ଦେବି ।''

ସାର କଥା ହେଲା, ପ୍ରାକୃତ ପୁରୁଷଙ୍କର ଗୁଣଗାନ କରିବାରୁ ବଞ୍ଚିତ ହେଲେ ବହୁତ ଅନୁତାପ କରିବାକୁ ପଡ଼େ ଓ ନିଜକୁ ଧିକ୍କାର କରିବାକୁ ପଡ଼େ । କବିତାରେ ସମସ୍ତ ପ୍ରକାରର ସଦ୍‌ଗୁଣ ଓ ସଦୁପଦେଶ ରହିବା ଏକାନ୍ତ ପ୍ରୟୋଜନ । ତାହା ଲଳିତ, ଶ୍ରୁତିମଧୁର, ଯମକଯୁକ୍ତ, ଅନୁପ୍ରାସଯୁକ୍ତ ହୋଇଥିବା ଆବଶ୍ୟକ । ଯଦି ସେଥିରେ ଗୋବିନ୍ଦଗୁଣ ଗାନ କରାଯାଇ ନଥିବ, ତାହାହେଲେ ତାହା ବ୍ୟର୍ଥ । ପରମହଂସ ଜ୍ଞାନୀ ପୁରୁଷଗଣ ତାହା କଦାପି ଆଦର କରନ୍ତି ନାହିଁ । ଶ୍ୟାମସୁନ୍ଦରଙ୍କ ଲୀଳା ପରିପୂର୍ଣ୍ଣ କାବ୍ୟ କବିତା ପଢ଼ିଲେ, ଶୁଣିଲେ ତହିଁରୁ ପରମ ଆନନ୍ଦ ମିଳେ, ପରମ ସୁଖ ମିଳେ ଓ ତଦ୍ଦ୍ୱାରା ପାପରାଶିର ବିନାଶ ହୁଏ ।

ଶୌନକ ପଚାରିଲେ—''ହେ ସୂତ ! ଯିଏ ଆତ୍ମକାମ ଆତ୍ମାରାମ ଜ୍ଞାନୀ ପୁରୁଷ, ଯାହାଙ୍କର କୌଣସି କର୍ତ୍ତବ୍ୟ ବାକି ନଥାଏ, ଯିଏ ଅଗ୍ନିକୁ ସର୍ବଦା ତ୍ୟାଗ କରିଅଛନ୍ତି, ଯିଏ ଅକ୍ରିୟ ହୋଇଛନ୍ତି, ତାଙ୍କ ପାଇଁ ତ ଭଗବାନଙ୍କ କଥା ଲୀଳା ଆଦି ଶୁଣିବାରେ କୌଣସି ଆବଶ୍ୟକତା ପ୍ରତୀତ ହେଉ ନାହିଁ । ଏପରି ଜ୍ଞାନୀ ଭଗବାନଙ୍କୁ କାହିଁକି ଅବା ଭଜିବେ ?''

ହସି ହସି ସୂତ କହିଲେ—''ଭଗବନ୍ ! ଭଗବାନ ଶୁକଦେବଙ୍କଠାରୁ ବଳି କିଏ ଜ୍ଞାନୀ ଅଛନ୍ତି ? ତାଙ୍କଠାରେ ତ ସ୍ତ୍ରୀ-ପୁରୁଷଙ୍କର କୌଣସି ଭେଦ ନଥିଲା । ସେ ସ୍ୱୟଂ କହୁଥିଲେ—'ମୁଁ ନିର୍ଗୁଣ ବ୍ରହ୍ମଠାରେ ପରିନିଷ୍ଠିତ, ତଥାପି ଉତ୍ତମଶ୍ଳୋକ ଭଗବାନ୍ ଶ୍ୟାମସୁନ୍ଦରଙ୍କ ଗୁଣରେ ଆକର୍ଷିତ ହୋଇ ତାଙ୍କୁ ଭକ୍ତି କଲି । କାରଣ ଭଗବାନଙ୍କ ଗୁଣ ହେଉଛି ଏହିପରି ଅତି ଲୋଭନୀୟ । ଏଥିପାଇଁ କୁହାଯାଏ, ଆତ୍ମଜ୍ଞାନରେ ସର୍ବଥା ଜ୍ଞାନର ଅଭାବ । ନିର୍ଦ୍ଦୋଷପୂର୍ଣ୍ଣ ହୋଇଥିଲେ ମଧ୍ୟ ଯଦି ସେହି ଜ୍ଞାନ ଭଗବଦ୍ ଭକ୍ତିଶୂନ୍ୟ ହୁଏ, ତାହାହେଲେ ତାହା ସେପରି ଶୋଭା ପାଏ ନାହିଁ, ଯେପରି କି ବିଧବା ମସ୍ତକରେ ସିନ୍ଦୂର ଅଥବା ହାତରେ ଚୂଡ଼ି ଆଦି ନଥିଲେ ଶୋଭା ପାଏ ନାହିଁ । ସେହି ଆତ୍ମଜ୍ଞାନୀ ପ୍ରଶଂସନୀୟ ଯିଏ ସର୍ବଦା ଭକ୍ତିରସରେ ପରିପ୍ଲାବିତ ।''

ଶୌନକ କହିଲେ—''ହେ ସୂତ ! ମୀମାଂସକମାନଙ୍କ କର୍ମରେ ତ ଭଗବଦ୍ ଭକ୍ତିର ଆବଶ୍ୟକତା ନାହିଁ । ସେମାନେ ସ୍ୱର୍ଗ କାମନାରେ ଯଜ୍ଞ କରନ୍ତି ଓ ସେହି କର୍ମଦ୍ୱାରା ସେମାନଙ୍କୁ ସ୍ୱର୍ଗ ମିଳିଯାଏ, କିନ୍ତୁ ସେଥିରେ ଭକ୍ତିର ଅପେକ୍ଷା ନଥାଏ ।''

ସୂତ କହିଲେ—''ମହାରାଜ ! ଭକ୍ତିହୀନ କର୍ମ ତ ବନ୍ଧନର କାରଣ ହୁଏ । ସ୍ୱର୍ଗର ବନ୍ଧନ ହେଉ ବା ନରକର ବନ୍ଧନ ହେଉ ଉଭୟେ ସମାନ । ଭଗବଦ୍ ଭକ୍ତ କର୍ମ ବିରୋଧ କରନ୍ତି ନାହିଁ, କିନ୍ତୁ ସେମାନେ କହନ୍ତି, ତୁମେ ନିତ୍ୟ ନୈମିତ୍ତିକ, କାମ୍ୟ ତଥା ଅନ୍ୟ ସମସ୍ତ କର୍ମ କର, କିନ୍ତୁ ତାହାର ଫଳକୁ ଭଗବାନଙ୍କୁ ଅର୍ପଣ କରିଦିଅ । ଯଦି କର୍ମ ଭଗବାନଙ୍କୁ ସମର୍ପଣ କରା ନଯାଏ, ତାହାହେଲେ କର୍ମ କରୁଥିବା ସମୟରେ ମଧ୍ୟ ବହୁତ କ୍ଳେଶ ସହ୍ୟ କରିବାକୁ ପଡ଼ିଥାଏ ଓ ତାହାର ଫଳ ମଧ୍ୟ ନଗଣ୍ୟ ହୋଇଥାଏ । ପୁଣ୍ୟ କ୍ଷୀଣ ହୋଇଗଲେ ପୁନଶ୍ଚ ଏଠାକୁ ଆସିବାକୁ ପଡ଼େ । ଏଥିପାଇଁ ସାଧନ କାଳରେ ତଥା ଫଳ କାଳରେ ଦୁଃଖ ଭୋଗ କରିବାକୁ ପଡ଼େ । ଏହା ବିପରୀତରେ ଯେଉଁ କର୍ମ ଭଗବାନଙ୍କ ନିମିତ୍ତ କରାଯାଏ,

ତାହା କରିବା ସମୟରେ ଫଳ ଇଚ୍ଛା ନରହିଲେ ଦୁଃଖ ଭୋଗ କରିବାକୁ ପଡ଼େ ନାହିଁ ଓ ତାହା ଭଗବାନଙ୍କୁ ଅର୍ପଣ କରାଗଲେ ତାହା ଅକ୍ଷୟ ଓ ଅନନ୍ତ ହୋଇଯାଏ । ଆପଣମାନେ ଏବେ ଚିନ୍ତା କରନ୍ତୁ, ଯଦି ନୈଷ୍କର୍ମ୍ୟ, ନିର୍ଦ୍ଦୋଷ, ପୂର୍ଣ୍ଣ ଆତ୍ମଜ୍ଞାନ ଲାଭ କରି ମଧ ବ୍ୟକ୍ତି ଭଗବଦ୍ ଭକ୍ତିଶୂନ୍ୟ ହୋଇଥାଏ, ତାହାହେଲେ ଯେଉଁ କର୍ମ ଅଦୃଢ଼, ତାହା ଭକ୍ତିବିହୀନ ହୋଇଥିବାରୁ କିପରି ଶୋଭା ପାଇବ ? କିପରି ଅବା ସେଥିରୁ ସୁଖଶାନ୍ତି ମିଳି ପାରିବ ?''

ଶୌନକ ପଚାରିଲେ—''ହେ ସୂତ ! ବର୍ଣ୍ଣାଶ୍ରମ ଧର୍ମରେ ତ ଭକ୍ତିର କୌଣସି ଆବଶ୍ୟକତା ନାହିଁ, ସେଥିରେ ତ କର୍ତ୍ତବ୍ୟର ହିଁ ପ୍ରାଧାନ୍ୟ ଦିଆଯାଇଛି, ମୋକ୍ଷ ତ ବର୍ଣ୍ଣାଶ୍ରମ ଧର୍ମ ପାଳନରେ ମିଳି ପାରିବ, ତଥାପି ଭକ୍ତିରେ କି ଆବଶ୍ୟକତା ରହିଛି ? ଆପଣ କୃପାକରି ଆମ୍ଭମାନଙ୍କର ଏହି ପ୍ରଶ୍ନର ଉତ୍ତର ଦିଅନ୍ତୁ ।''

ସୂତ କହିଲେ—''ଠିକ୍ ଅଛି, ମହାରାଜ ! ମୁଁ ଆପଣମାନଙ୍କର ଏହି ପ୍ରଶ୍ନର ଉତ୍ତର ଦେଉଛି, ଏହା ଅତି ଉତ୍ତମ ପ୍ରଶ୍ନ ।''

ଷଟ୍‌ପଦୀ

ମିଲୈ ନ ଛନ୍ଦ ପ୍ରବନ୍ଧ ନ ଉପମା ଅନୁପ୍ରାସ ଗୁନ ।
ଯମକ ନ ମାତ୍ରା ଶବ୍ଦ ମିଲୈ ନହିଁ ତୁକ ସବ ଅବଗୁନ ।।
ରହେଁ ଶ୍ୟାମ କେ ନାମ ସୁଯଶ ଯୁତ ଯଦି ମନ ଭାବନ ।
ଜୋ ବନ୍ଦ ଅଘହର ଛନ୍ଦ ଗାଇ ହୋବୈ ଜଗ ପାବନ ।।
ଭଗବଦ୍ ଭକ୍ତି ବିହୀନ ଯଦି, ହୋ ହି ଜ୍ଞାନ କରମନି ରହିତ ।
ନହିଁ ଫଲ ହରି ଅରପିତ କିୟେ, ଉତ୍ତମ ନହିଁ ସୋ ଦୁଃଖ ସହିତ ।।



# ଭକ୍ତିହୀନ ବର୍ଣ୍ଣାଶ୍ରମ ଧର୍ମ ଅଶୋଭନ

**ଯଶଃ ଶ୍ରିୟାମେବ ପରିଶ୍ରମଃ ପରୋ**
**ବର୍ଣ୍ଣାଶ୍ରମାଚାରତପଃଶ୍ରୁତାଦିଷୁ ।**
**ଅବିସ୍ମୃତିଃ ଶ୍ରୀଧରପାଦପଦ୍ମୟୋ-**
**ଗୁଣାନୁବାଦଶ୍ରବଣାଦିଭିର୍ହରେଃ ।।** ☆

(ଶ୍ରୀ ଭା: ୧୨ସ୍କ: ୧୨ଅ: ୫୩ଶ୍ଲୋକ)

☆ ବେଦ ପଠନ ବର୍ଣ୍ଣଧର୍ମେ । ତପ ଆଦିରେ ଯେବା ଭ୍ରମେ ।।
ବାସୁଦେବ ଯେବେ ନ ଜାଣି । ବିଅର୍ଥେ ମରନ୍ତି ସେ ପ୍ରାଣୀ ।।
ଶ୍ରୀକୃଷ୍ଣ- ଚରଣାରବିନ୍ଦ । ଯେ ପ୍ରାଣୀ କରନ୍ତି ଆସ୍ୱାଦ ।।
କୀର୍ତ୍ତନ ନାମ ଗୁଣମାନ । ଆବର ସ୍ମରଣ ପୂଜନ ।।
ଚିତ୍ତ ଗୋବିନ୍ଦ ନ ପାସୋରେ । ସକଳ ଅମଙ୍ଗଳୁ ତରେ ।।

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଷଟ୍‌ପଦୀ

ତପ ବରନାଶ୍ରମ ଧରମ ଆଚରନ ଶ୍ରୀଯଶ ଦେବୈଂ ।
ପ୍ରଭୁ-ପଦ ସୁମିରନ ସତତ ହୋ ହି ତିନି ଢେ ହରି ସେବୈ ॥
ହରି ଲୀଲା ଗୁନ ଶ୍ରବନ ନିତ୍ୟ ହରିଭକ୍ତି ବଢ଼ାବୈଂ ।
ଇସ୍ତୁତି ହରିପଦ ରବୈ ଅମଙ୍ଗଲ ସକଲ ନସାବୈଂ ॥
କରୈ ଶାନ୍ତ ବିସ୍ତାର ନିତ, ଚିତ ଶୁଦ୍ଧି ହୋଵୈ ଅବସି ।
ଭକ୍ତି, ଜ୍ଞାନ, ବୈରାଗ୍ୟ ସବ, ମିଲୈ ହୋ ହିଁ ହିୟ ପ୍ରଭୁ ପରସି ॥

ବର୍ଣ୍ଣାଶ୍ରମ ଧର୍ମ ଏକ ଶ୍ରଦ୍ଧାମୟ କର୍ତ୍ତବ୍ୟ ପରାୟଣତାରେ ଯୁକ୍ତ ସିଧା ସର୍ବସାଧାରଣଙ୍କୁ ନିଜର ଗନ୍ତବ୍ୟ ସ୍ଥାନରେ ନେଇ ପହଞ୍ଚାଇ ଦିଏ । ତେଣୁ ଏହା ସର୍ବୋପଯୋଗୀ ଅତି ସୁନ୍ଦର ମାର୍ଗ । ଯଦି ଆପଣମାନେ ଏହାର ଆଶ୍ରୟ ନେଇ ଆଖିବୁଜି ଚାଲନ୍ତି, ତାହାହେଲେ ଡେରିରେ ହେଲେ ମଧ୍ୟ ଗନ୍ତବ୍ୟ ସ୍ଥଳରେ ଯାଇ ପହଞ୍ଚି ପାରିବେ । ଏଥିପାଇଁ ପ୍ରାଚୀନ ମହର୍ଷିଗଣ ବର୍ଣ୍ଣାଶ୍ରମ ଧର୍ମ ଉପରେ ଗୁରୁତ୍ୱ ଦେଇଥିଲେ । ବର୍ଣ୍ଣାଶ୍ରମ ଧର୍ମରେ ଦୁଇଟି କଥା, ଗୋଟିଏ ଧର୍ମ ଓ ଅନ୍ୟଟି ବୃତ୍ତି ବା ଜୀବିକା ନିର୍ବାହ । ଯାହାର ବୃତ୍ତି ଶୁଦ୍ଧ ନୁହେଁ, ସେ କଦାପି ଧର୍ମ ପାଳନ କରିପାରେ ନାହିଁ । ଏଥିପାଇଁ ବର୍ଣ୍ଣାଶ୍ରମ ଧର୍ମ ବୃତ୍ତି ପ୍ରଧାନ । ଧର୍ମ ପାଳନ ତ ବିଶେଷକରି ମନଉପରେ ନିର୍ଭରକରେ । କିନ୍ତୁ ବୃତ୍ତି ନିର୍ଭର କରେ କର୍ମ ଉପରେ । ଏଥିପାଇଁ ବର୍ଣ୍ଣାଶ୍ରମ ଧର୍ମରେ ବୃତ୍ତିରୁ ହିଁ ବର୍ଣ୍ଣ ଓ ଜାତି ନିର୍ଦ୍ଧାରଣ କରାଯାଇଛି । ଯେପରିକି ବ୍ରାହ୍ମଣର ଧର୍ମ ତ ବେଦ ପାଠ କରିବା, ଦାନ ଦେବା ଓ ଯଜ୍ଞ ଆଦି କରିବା । ଯଦି ବ୍ରାହ୍ମଣ ତାହା ପାଳନ ନକରେ, ତାହାହେଲେ ସେ ବ୍ରାହ୍ମଣତ୍ୱରୁ ପତିତ ହୁଏ । ଯଦି ଧର୍ମ ପାଳନ କରିବାକୁ ହେବ, ତାହାହେଲେ ସେ ଖାଇବ କ'ଣ ? ଏଥିପାଇଁ ଏହାର ତିନିଟି ବୃତ୍ତି ରହିଛି । ଯଜ୍ଞ କରିବାରେ ଯେଉଁ ଦକ୍ଷିଣା ମିଳିବ, ସେଥିରେ ସେ ପରିବାର ପୋଷଣ କରିବ । ଦକ୍ଷିଣା ଦାନଠାରୁ ଭିନ୍ନ ବସ୍ତୁ । ଦକ୍ଷିଣା ଏକ ପ୍ରକାର ପାରିଶ୍ରମିକ । ଯଜ୍ଞର ପରିଶ୍ରମ ପାଇଁ ବ୍ରାହ୍ମଣଙ୍କୁ କିଛି ଦ୍ରବ୍ୟ ମଧ୍ୟ ଦିଆଯାଏ । ଏହା ବ୍ରାହ୍ମଣର ଉତ୍ତମ ବୃତ୍ତି । ଅନ୍ୟ ଏକ ବୃତ୍ତି ହେଉଛି ଅଧ୍ୟାପନା । ସେ ଯେଉଁ ଜ୍ଞାନ ଲାଭ କରିଥାଆନ୍ତି, ତାହା ଛାତ୍ରଙ୍କୁ ପ୍ରଦାନ କରନ୍ତି ଓ ଛାତ୍ର ଯେଉଁ ଭିକ୍ଷା ମାଗି ଆଣିଥାଏ, ତହିଁରୁ ନିଜେ ଚଳିବା ପାଇଁ କିଛି ରଖି ଆଉ ସମସ୍ତ ଗୁରୁଙ୍କୁ ପ୍ରଦାନ କରେ । ଏହା ବ୍ରାହ୍ମଣର ମଧ୍ୟମ ବୃତ୍ତି । ଯଦି ଏଥିରେ କାମ ନ ଚଳେ, ତାହାହେଲେ ଯେଉଁ ଲୋକ ଦାନ କରୁଥାଆନ୍ତି, ସେହି ଯୋଗ୍ୟପାତ୍ରର ଦାନରେ ସେ ଜୀବିକା ନିର୍ବାହ କରିଥାଏ । ଏହା ବ୍ରାହ୍ମଣର ଅଧମ ବା ନିକୃଷ୍ଟ ବୃତ୍ତି । ଦାନ ନେବାରେ ପ୍ରଶଂସା ନାହିଁ । ସମୟ ସମୟରେ ଏଥିପାଇଁ ସେ ନିନ୍ଦିତ ହୋଇଥାଏ । ଯଦି ବ୍ରାହ୍ମଣର ଦାନ ନେବା ଏକାନ୍ତ ଆବଶ୍ୟକ ପଡ଼େ, ଅନ୍ୟ ବୃତ୍ତିରୁ ଚଳିପାରୁ ନଥିଲେ ସେ ଦାନ ନେଇପାରେ । ସେହିପରି କ୍ଷତ୍ରିୟ ବେଦ ପଢ଼ିବା, ଯଜ୍ଞ କରିବା, ଦାନ ଦେବା ଓ ପ୍ରଜାଙ୍କୁ ରକ୍ଷା କରିବା ଏହି ଚାରିଟି ଧର୍ମ । ପ୍ରଜାଙ୍କଠାରୁ କର ନେଇ ଚଳିବା ହେଉଛି ତାହାର ବୃତ୍ତି । ସେହିପରି ବେଦପାଠ, ଯଜ୍ଞ ଓ ଦାନ ଏ ତିନିଟି କର୍ମ ବୈଶ୍ୟଙ୍କର । ଏହା ସହିତ ଧର୍ମପୂର୍ବକ ଚାଷବାସ କରିବା, ଗୋପାଳନ କରିବା ଓ ବେପାର ବାଣିଜ୍ୟ କରିବା ହେଉଛି ଜୀବିକା ନିର୍ବାହ ପନ୍ଥା । ଶୂଦ୍ରଙ୍କର ଧର୍ମ ସେବା କରିବା । ଏହି ସେବାଦ୍ୱାରା ଜୀବିକା ହେଉଛି ସେମାନଙ୍କର ବୃତ୍ତି । ଯିଏ ନିଜର ବର୍ଣ୍ଣୋପଯୋଗୀ ଧର୍ମ ପାଳନ କରି ଧର୍ମପୂର୍ବକ ନିଜର ବୃତ୍ତିରେ ଜୀବନ ନିର୍ବାହ କରେ, ତାକୁ ଇହଲୋକରେ ଯଶ ମିଳେ ଓ ପରଲୋକରେ ପୁଣ୍ୟଲୋକ ବା ସ୍ୱର୍ଗ ପ୍ରାପ୍ତିହୁଏ । ବର୍ଣ୍ଣାଶ୍ରମ ଧର୍ମରୁ ଉତ୍ତମୋତ୍ତମଲୋକ ମିଳେ ଓ ମୁକ୍ତି ମଧ୍ୟ ମିଳେ । କିନ୍ତୁ ସାକ୍ଷାତ୍ ରୂପେ ଏଥିରେ ମୁକ୍ତି ମିଳେ ନାହିଁ । ମୁକ୍ତି ବା ଭଗବଦ୍ ପ୍ରାପ୍ତି ତ ଜ୍ଞାନ ଓ ଭକ୍ତିରୁ ହିଁ ମିଳେ ।''

ସୂତ କହିଲେ—''ମୁନିଗଣ ! କେହି ଯଦି ଚାହେଁ କେବଳ କର୍ମ କରି ଉତ୍ତମ ସୁଖ ଲାଭ କରିବ, ତାହା କଦାପି ସମ୍ଭବ ହୁଏ ନାହିଁ । କର୍ମ କରିବାରେ ପରିଶ୍ରମ କରାଯାଇଥାଏ, ଚିନ୍ତା ହୋଇଥାଏ ଓ ନାନା ଉଦ୍ୟୋଗ କରିବାକୁ ପଡ଼ିଥାଏ । ଏହିସବୁ କାରଣରୁ କର୍ମ କରିବା ସମୟରେ ମଧ୍ୟ ଦୁଃଖ ଭୋଗ କରିବାକୁ ପଡ଼େ । ଏଥିରୁ ଯେଉଁ ଉତ୍ତମ ଲୋକ ପ୍ରାପ୍ତ ହୁଏ, ସେଥିରୁ ପତନ ହେବାର ଚିନ୍ତା, ଅସାମ୍ୟ ଓ ଏଥିରେ ନିରତିଶୟ ଦୋଷ ରହୁଥିବାରୁ ଫଳ ପାଇବା କାଳରେ ବି ଦୁଃଖ ମିଳେ । ଏହି କଥା ବର୍ଣ୍ଣାଶ୍ରମ ସମ୍ବନ୍ଧରେ କୁହାଯାଇଛି ।''

ଶୌନକ ପଚାରିଲେ—''ହେ ସୂତ ! ବର୍ଣ୍ଣାଶ୍ରମ ଧର୍ମକୁ ଆପଣ ଏତେ ହେୟ ବୋଲି କାହିଁକି କହୁଛନ୍ତି ?''

ସୂତ କହିଲେ—''ଭଗବନ୍ ! ମୋର ଉଦ୍ଦେଶ୍ୟ ବର୍ଣ୍ଣାଶ୍ରମ ଧର୍ମକୁ ନିନ୍ଦା କରିବା ନୁହେଁ । ମୋର ଏକମାତ୍ର ଉଦ୍ଦେଶ୍ୟ ଭକ୍ତିର ଶ୍ରେଷ୍ଠତା ପ୍ରତିପାଦନ କରିବା । ଆପଣମାନେ ଏହା ବିଚାର କରନ୍ତୁ ଯେ, ବର୍ଣ୍ଣାଶ୍ରମ ଧର୍ମ ଏକ କ୍ରମିକ ମାର୍ଗ, ଯେପରି କୌଣସି ଶୂଦ୍ର ଧର୍ମପୂର୍ବକ ଗୃହସ୍ଥ ଧର୍ମ ପାଳନ କରେ । ଧର୍ମ ବୋଲି ଭାବି ଦ୍ୱିଜାତିଙ୍କର ସେବା କରେ । ତେଣୁ ଇହଲୋକରେ ତାକୁ ପ୍ରଶଂସା ମିଳେ ଓ ମୃତ୍ୟୁ ପରେ ତାକୁ ସ୍ୱର୍ଗ ମିଳେ । ସ୍ୱର୍ଗସୁଖ ଭୋଗ କଲା ପରେ ତାକୁ ଅନ୍ୟ ଜନ୍ମରେ ଶୂଦ୍ର ଯୋନିରେ ଜନ୍ମ ନେବାକୁ ପଡ଼ିବ । କେବଳ ବର୍ଣ୍ଣାଶ୍ରମ ଧର୍ମ ପାଳିଥିବାରୁ ସେ ଶୂଦ୍ର ଯୋନିରେ ଭକ୍ତି ମୁକ୍ତି ଲାଭ କରି ନପାରେ । ସେହିପରି ବୈଶ୍ୟ ଜନ୍ମରେ ବିଧିବଦ୍ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ପୁନଶ୍ଚ ଗୃହସ୍ଥାଶ୍ରମରେ ପ୍ରବେଶ କରେ ଓ ନିଜର ଧର୍ମ ପାଳନ କରି କରି ଯଦି ଶରୀର ତ୍ୟାଗ କରେ, ତାହାହେଲେ ସେ ସ୍ୱର୍ଗଲୋକରେ ସୁଖ ଭୋଗ କରି ଅନ୍ୟ ଜନ୍ମରେ କ୍ଷତ୍ରିୟ କୁଳରେ ଜନ୍ମ ହୁଏ । ଯଦି ବୈଶ୍ୟ ସ୍ୱଧର୍ମକୁ ଛାଡ଼ି ବାନପ୍ରସ୍ଥ ବା ସନ୍ୟାସ ଧର୍ମ ଗ୍ରହଣ କରେ, ତାହାହେଲେ ସେ ପତିତ ହୋଇଯାଏ । ଶୂଦ୍ର ପାଇଁ ଏକ ଆଶ୍ରମ ଓ ବୈଶ୍ୟଙ୍କ ପାଇଁ ଦୁଇ ଆଶ୍ରମ ଏବଂ କ୍ଷତ୍ରିୟ ପାଇଁ ତିନି ଆଶ୍ରମ ରହିଛି । କ୍ଷତ୍ରିୟ ବ୍ରହ୍ମଚର୍ଯ୍ୟାଶ୍ରମ ପରେ ଗୃହସ୍ଥାଶ୍ରମରେ ପ୍ରବେଶ କରି ପ୍ରଜାପାଳନ କରିବେ । ଶେଷରେ ସବୁ ତ୍ୟାଗକରି ବନରେ ରହି କନ୍ଦମୂଳ ଓ ଫଳ ଆହାରକରି ଜୀବନ ନିର୍ବାହ କରିବେ ଏବଂ ତପୋମୟ ଜୀବନ ଯାପନ କରିବେ । ଏହିପରି ସ୍ୱଧର୍ମ ପାଳନ କରୁ କରୁ ମୃତ୍ୟୁବରଣ କଲେ ସେ ତପଲୋକ ପ୍ରାପ୍ତ ହେବେ । ତପଲୋକର ସୁଖ ଭୋଗ କରିବା ପରେ ତାଙ୍କୁ ବ୍ରାହ୍ମଣ କୁଳରେ ଜନ୍ମ ହେବାକୁ ପଡ଼ିବ । କେବଳ ପ୍ରଥମ ବର୍ଣ୍ଣ ବ୍ରାହ୍ମଣଙ୍କ ପାଇଁ ଚତୁର୍ଥ ଆଶ୍ରମ ''ସନ୍ୟାସ'' ଆଶ୍ରମର ଅଧିକାର ଅଛି । ସେ ଯଦି ସତ୍ୟରେ ରହି ଚାରି ଆଶ୍ରମକୁ ବିଧିବଦ୍ ପାଳନ କରି ସନ୍ୟାସୀ ହୋଇ ବିଧିବଦ୍ ସନ୍ୟାସ ଧର୍ମ ପାଳନ କରିଥିବେ, ତାହାହେଲେ ତାହା ପ୍ରଭାବରେ ତାଙ୍କୁ ସତ୍ୟଲୋକ ପ୍ରାପ୍ତ ହେବ । କାରଣ ବର୍ଣ୍ଣାଶ୍ରମ ଧର୍ମର ଫଳ ଉତ୍ତମରୁ ଉତ୍ତମ ଲୋକ ପ୍ରାପ୍ତି କରାଏ । ପୁଣ୍ୟ କର୍ମରୁ ଯଦି ସତ୍ୟଲୋକ ପ୍ରାପ୍ତି ହୁଏ, ତେବେ ତହିଁରୁ ମଧ୍ୟ ପୁନରାବୃତ୍ତି ହୋଇପାରେ । ଯଦି ଯୋଗରୁ ସନ୍ୟାସ ପ୍ରାପ୍ତ ହୁଏ, ତାହାହେଲେ ବ୍ରହ୍ମା ତାଙ୍କୁ ଜ୍ଞାନ ଦାନ କରନ୍ତି । ସେହି ଜ୍ଞାନରେ ମୁକ୍ତି ଲାଭ ହୁଏ । ବର୍ଣ୍ଣାଶ୍ରମ ଧର୍ମରେ କେବଳ ବ୍ରାହ୍ମଣର ସନ୍ୟାସ ନେବାର ଅଧିକାର ଅଛି । ସେହିପରି ବର୍ଣ୍ଣାଶ୍ରମ ଧର୍ମର ଫଳ ହେଉଛି, ଯଶ ଓ ଶ୍ରୀ ପ୍ରାପ୍ତି କରାଇବା । ଶୂଦ୍ର, ବୈଶ୍ୟ ଓ କ୍ଷତ୍ରିୟ ଯଦି ଚାହାନ୍ତି ଯେ, ଆମେ ବର୍ଣ୍ଣାଶ୍ରମ ଧର୍ମଦ୍ୱାରା ନିଜ ନିଜ ବର୍ଣ୍ଣରେ ରହି ମୁକ୍ତି ଲାଭ କରିବୁ, ତାହା କଦାପି ସମ୍ଭବ ହେବ ନାହିଁ । ଯଦି ସେମାନେ ନିଜ ନିଜ ଧର୍ମକୁ ଛାଡ଼ି ପରଧର୍ମ ବା ବ୍ରାହ୍ମଣ ଧର୍ମ ଆଚରଣ କରନ୍ତି, ତାହାହେଲେ ସେମାନଙ୍କ ପାଇଁ ତାହା ଭୟାବହ ହେବ । କିନ୍ତୁ ଯଦି ସେମାନେ ନିଜ ନିଜ ଧର୍ମରେ ରହି ମଧ୍ୟ ଭକ୍ତିମାର୍ଗର ଅନୁସରଣ କରନ୍ତି, ଶ୍ରୀହରିଙ୍କର ଗୁଣାନୁବାଦ ଶ୍ରବଣ କରନ୍ତି, ନାମ କୀର୍ତ୍ତନ

କରନ୍ତି ଓ ତାଙ୍କୁ ସ୍ମରଣ ବନ୍ଦନ କରନ୍ତି, ଏବଂ ଯଦି ସେମାନେ ଦାସ୍ୟଭାବ, ସଖ୍ୟଭାବ ବା ମଧୁରଭାବରେ ଭାବିତ ହୋଇ ଭଗବାନଙ୍କର ସେବା କରି ଆତ୍ମସମର୍ପଣ କରି ଦିଅନ୍ତି, ତାହାହେଲେ ସେମାନେ ନିଜ ନିଜ ବର୍ଣ୍ଣରେ ରହି ମଧ୍ୟ ଜନ୍ମ ମୃତ୍ୟୁ ଚକ୍ରରୁ ଉଦ୍ଧାର ପାଇ ପାରନ୍ତି । ଭକ୍ତିମାର୍ଗ ବର୍ଣ୍ଣାଶ୍ରମ ଧର୍ମର ଉପେକ୍ଷା କରେ ନାହିଁ । ଯିଏ ଯେଉଁ ବର୍ଣ୍ଣରେ ବା ଯେଉଁ ଆଶ୍ରମରେ ଥାଆନ୍ତୁ ପଛେ ସେହିଠାରେ ରହି ସେହି ବର୍ଣ୍ଣାଶ୍ରମ ଧର୍ମ ପାଳନ କରିବା ଉଚିତ୍ । କିନ୍ତୁ ଭଗବାନଙ୍କର ଚରଣ କମଳରେ ନିରନ୍ତର ମନ ରଖିବା ଉଚିତ୍ । ସେହି ସ୍ମୃତି ବା ସ୍ମରଣ ରଖିବା କେବଳ ସତ୍‌ସଙ୍ଗ ପ୍ରଭାବରୁ ସମ୍ଭବ ହୋଇଥାଏ । ଭଗବାନଙ୍କ କଥା ଶ୍ରବଣ କରିବା ଓ ନବଧା ଭକ୍ତି ଆଦି ଆଚରଣ କରିବା ଦ୍ୱାରା ଏହି ଭକ୍ତିଭାବ ଦୃଢ଼ ହୋଇଥାଏ । ତେଣୁ ଭଗବାନଙ୍କ କଥା ଶୁଣିବା, ଲୀଳା କୀର୍ତ୍ତନ କରିବା ଏକାନ୍ତ ଆବଶ୍ୟକ । ଭକ୍ତିମାର୍ଗର ପଥିକ ସତ୍‌ସଙ୍ଗ ଓ ଭଗବତ୍ କଥାର ବିନା ଆଶ୍ରୟରେ ଏ ପଥରେ ପାଦେ ହେଲେ ବି ଅଗ୍ରସର ହୋଇପାରିବେ ନାହିଁ ।''

ଶୌନକ ପଚାରିଲେ—''ହେ ସୂତ ! **ଭଗବାନଙ୍କୁ ସ୍ମରଣ କଲେ କ'ଣ ହୁଏ ?''**

ସୂତ ହସି ହସି କହିଲେ—''ମହାରାଜ ! ଏପରି ପିଲାଳିଆ ପ୍ରଶ୍ନ କ'ଣ ଆପଣ ପଚାରୁଛନ୍ତି ! ଯଦି ଭଗବାନଙ୍କୁ ସ୍ମରଣ କରିବାରେ କିଛି ହେଉ ନଥାନ୍ତା, ତାହାହେଲେ ଆପଣମାନେ ସବୁକିଛି ଛାଡ଼ି ଏଠାରେ ନିରନ୍ତର ହରିକଥା କାହିଁକି ଆସି ଶୁଣୁଛନ୍ତି ? ଯଦି ଶ୍ରୀକୃଷ୍ଣଙ୍କ ଚରଣାରବିନ୍ଦରେ ନିରନ୍ତର ମନ ରହେ, ତାହାହେଲେ ଜୀବର ସମସ୍ତ ଅମଙ୍ଗଳକୁ ସେ ଏପରି ଭସ୍ମସାତ୍ କରିଦିଅନ୍ତି, ଯେପରି କି ପ୍ରଜ୍ୱଳିତ ଅଗ୍ନି ଇନ୍ଧନକୁ ନାଶ କରିଦିଏ । ମନୁଷ୍ୟର ପ୍ରାଣ କାହିଁକି ସର୍ବଦା ଅଶାନ୍ତ ରହୁଛି ? ତାହାର କାରଣ ଏହି ଯେ, ସେ ସର୍ବଦା ଏଣୁ ତେଣୁ ଗୁଡ଼ିଏ କଥା ଚିନ୍ତା କରୁଛି । ଏ କ୍ଷଣଭଙ୍ଗୁର ନଶ୍ୱର ପଦାର୍ଥଗୁଡ଼ିକ ପାଇଁ ତାହାର ସର୍ବଦା ଚିନ୍ତା । ସର୍ବଦା ସେ କିପରି ତାହା ପାଉଥିବ ସେହି ବିଚାର ବା ଚିନ୍ତାରେ ମାତିଥାଏ । ନଶ୍ୱର ପଦାର୍ଥ ଆଜି ଅଛି ତ କାଲିକୁ ନଥିବ । ମରିଚିକାରେ କଦାପି କେବେ ଶୋଷ ଦୂର ହୋଇପାରେ ? ଏ ସଂସାରୀ ପଦାର୍ଥଲାଭର ଆଶା ସ୍ୱତଃ ହୋଇଥାଏ । ଏହା ପାଇବାକୁ ଚିନ୍ତା କଲେ ଶାଶ୍ୱତୀ ଶାନ୍ତି ମିଳେ ନାହିଁ । ଯଦି ମନୁଷ୍ୟ ଏହି ଅନିତ୍ୟ ଅଶାଶ୍ୱତ ଅଶାନ୍ତି ପ୍ରଦାୟକ ପଦାର୍ଥର ଚିନ୍ତା ତ୍ୟାଗକରି ନିତ୍ୟ ଶାଶ୍ୱତ, ଏକରସ ଶ୍ରୀଭଗବାନଙ୍କ ଚରଣାରବିନ୍ଦକୁ ଚିନ୍ତନ କରେ, ଭଗବାନଙ୍କ ଚିନ୍ତାରେ ସର୍ବଦା ନିମଗ୍ନ ରହେ, ତାହାହେଲେ ତାକୁ ଶାନ୍ତି ମିଳିବ । ତା' ଚତୁର୍ଦ୍ଦିଗରେ ଶାନ୍ତିର ସାମ୍ରାଜ୍ୟ ବିରାଜମାନ କରିବ ।''

ଶୌନକ କହିଲେ—''ହେ ସୂତ ! ଆପଣ ତ ଭଲକଥା କହୁଛନ୍ତି । କିନ୍ତୁ ଯେ ପର୍ଯ୍ୟନ୍ତ ଶାସ୍ତ୍ରୋକ୍ତ ପ୍ରାୟଶ୍ଚିତାଦି କରି ଚିତ୍ତ ଶୁଦ୍ଧ ନ ହୋଇଛି, ସେ ପର୍ଯ୍ୟନ୍ତ ସମସ୍ତ ସାଧନ ବ୍ୟର୍ଥ ସିନା ?''

ସୂତ କହିଲେ—''ମହାରାଜ ! ଭକ୍ତିମାର୍ଗରେ ଏ ଉପବାସାଦି କାୟାକ୍ଲେଶକର ପ୍ରାୟଶ୍ଚିତର ଆବଶ୍ୟକତା ନାହିଁ । ଏଥିରେ ହରିକଥା ଶ୍ରବଣ ଓ କୀର୍ତ୍ତନ ଆଦି କରୁ କରୁ ସ୍ୱତଃ ଚିତ୍ତ ଶୁଦ୍ଧି ହୋଇଯାଏ । ଆପଣ ଚିନ୍ତାକରି ଦେଖନ୍ତୁ ଚିତ୍ତରେ ଆଉ ଅଶୁଦ୍ଧି ରହିଲା କେଉଁଠି ? ଅସତ୍ ଅପବିତ୍ର ବିଷୟଭୋଗ ଏଥିରେ ବିସ୍ମରଣ ହୋଇ ତା ସ୍ଥାନରେ ଚିତ୍ତରେ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଚାରୁ ଚରଣାରବିନ୍ଦ ସ୍ଥାନ ପାଇଲା । ତେଣୁ ଚିତ୍ତ ସ୍ୱତଃ ବିଶୁଦ୍ଧ ହୋଇଗଲା । ପ୍ରାୟଶ୍ଚିତାଦିରେ ବାରମ୍ବାର ମଳିନ ହେଉଥିବାର ଉଦାହରଣ ମଧ୍ୟ ରହିଛି । କିନ୍ତୁ ଯେଉଁ ଚିତ୍ତରେ ଚିତ୍ତଚୋରଙ୍କର ଚରଣାରବିନ୍ଦ ସ୍ଥାନ ପାଇଛି, ତାକୁ ସେଠାରୁ ଆଉ କେହି ହଟାଇ ନପାରନ୍ତି ।''

ଶୌନକ ପଚାରିଲେ—"ହେ ସୂତ ! ହୃଦୟରେ ଭକ୍ତିଭାବ ଉଦୟ ହେଲେ ସିନା ଏହା ସମ୍ଭବ ହେବ ?"

ସୂତ କହିଲେ—"ମହାରାଜ ! ଶ୍ରବଣ କୀର୍ତ୍ତନ ଦ୍ୱାରା ହିଁ ଈଶ୍ୱରଭକ୍ତି ଲାଭ ହୁଏ । ଏହା ସାଧନ ଓ ସାଧ୍ୟ ଉଭୟକୁ ବୁଝାଏ । ଭଗବତ୍ କଥା ଶ୍ରବଣ, କୀର୍ତ୍ତନ ଓ ସ୍ମରଣାଦି ସାଧନ କରୁ କରୁ ତାହା ଅଭ୍ୟାସରେ ପଡ଼ିଯାଏ । ଯେ ପର୍ଯ୍ୟନ୍ତ ଏହା କରିବାରେ କଠିନତା ଅନୁଭବ ହେଉଥାଏ, ମନକୁ ଏଥିରେ ଜୋର କରି ଲଗାଇବାକୁ ପଡୁଥାଏ, ସେ ପର୍ଯ୍ୟନ୍ତ ଏହାକୁ ସାଧନ ବୋଲି କୁହାଯାଏ । ଯେତେବେଳେ ଆପେ ଆପେ ଏକାର୍ଯ୍ୟ ହେବାକୁ ଲାଗେ, ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦ ସେବନ ଓ ଦାସ୍ୟାଦିରେ ସ୍ୱତଃ ଆନନ୍ଦ ମିଳିଥାଏ । ଏସବୁକୁ ଆଉ ଛାଡ଼ି ରହି ହୁଏ ନାହିଁ । ଏହାକୁ ସେତେବେଳେ ସାଧ୍ୟ ସ୍ଥିତି କୁହାଯାଏ । ଈଶ୍ୱର ଭକ୍ତି ଏହିପରି ଅଭ୍ୟାସ କରୁ କରୁ ପ୍ରାପ୍ତ ହୋଇଯାଏ ।"

ଶୌନକ କହିଲେ—"ହେ ସୂତ ! ଭକ୍ତି ତ ଏହିପରି ସହଜରେ ପ୍ରାପ୍ତ ହୁଏ, କିନ୍ତୁ ଜ୍ଞାନ ବୈରାଗ୍ୟ ତ ଶ୍ରବଣ କୀର୍ତ୍ତନ ଦ୍ୱାରା ପ୍ରାପ୍ତ ହୋଇପାରେ ନାହିଁ ?"

ସୂତ ହସି ହସି କହିଲେ—"ମହାରାଜ ! ଯିଏ କଳିଯୁଗୀ ନୀଚ ପୁତ୍ର ହୋଇଥିବ, ସେ ମାତାକୁ ସହଜରେ ତ୍ୟାଗ କରିବ । କିନ୍ତୁ ସତ୍‌ପୁତ୍ର ତ ସର୍ବଦା ମାତାଙ୍କୁ ସେବା କରିବ, ମାତାଙ୍କ ପାଖେ ପାଖେ ରହିବ, ତାଙ୍କ ଆଜ୍ଞା ପାଳନ କରିବ । ଜ୍ଞାନ ବୈରାଗ୍ୟ ତ ଭକ୍ତିର ପୁତ୍ର । ଯେତେବେଳେ ଭଗବତ୍ ଭକ୍ତି ଲାଭ ହେବ, ସେତେବେଳେ ଅନୁଭବ, ଜ୍ଞାନ ଓ ବୈରାଗ୍ୟ ସହିତ ତତ୍ତ୍ୱଜ୍ଞାନ ଆପେ ଆପେ ଉଦୟ ହେବ । ମହାରାଜ ! ତେଣୁ ଏସବୁ କଥା ଆଉ ନ ପଚାରି ଆପଣମାନେ ନିରନ୍ତର ଭଗବତ୍ କଥା ଶ୍ରବଣ କୀର୍ତ୍ତନ ଆଦିରେ ଶ୍ରଦ୍ଧାର ସହିତ ନିମଜ୍ଜିତ ହେବା ଉଚିତ୍ । ଏହି ସାଧନ କୀର୍ତ୍ତନ ଆଦିରେ ଅନ୍ୟ କୌଣସି ସରଳ ନିଷ୍କଣ୍ଟକ ତଥା ସୁଗମ ସାଧନ ନାହିଁ ।"

ଶୌନକ ପଚାରିଲେ—"ହେ ସୂତ ! ଆପଣଙ୍କୁ ସେ କଥା ମୁଁ କ'ଣ କହିବି, ମୁଁ ନିଜେ ତ ଯାଗଯଜ୍ଞ କରୁଛି, ମୋ ମନରେ କ'ଣ ତାହାହେଲେ ଭକ୍ତି ଉଦୟ ହେଉ ନାହିଁ ?"

ଛଳ ଛଳ ନେତ୍ର ହୋଇ ସୂତ କହିଲେ—"ମହାରାଜ ! ଆପଣ ନିଜ କଥା କୁହନ୍ତୁ ନାହିଁ । ଆପଣମାନେ ସମସ୍ତେ ତ ଧନ୍ୟ ଅଟନ୍ତି । ଆପଣମାନଙ୍କ ଭଳି ବଡ଼ ଭାଗ୍ୟବାନ୍ ଏ ସଂସାରରେ କିଏ ଅଛି ? ଭଗବନ୍ ! ଯାଗଯଜ୍ଞ ତ ଲୋକ ସଂଗ୍ରହ ନିମିତ୍ତ କରିବା ଉଚିତ୍ । ଯଜ୍ଞ, ଦାନ, ତପସ୍ୟା ଏହା ତ ମନୁଷ୍ୟର ପବିତ୍ର ହେବାର ସାଧନ । କିନ୍ତୁ ଆପଣଙ୍କର ଲକ୍ଷ୍ୟ ତ ଯାଗଯଜ୍ଞ କରି ସ୍ୱର୍ଗପ୍ରାପ୍ତି ହେବାର ନୁହେଁ । ଆପଣ ତ ନିଜ ଅନ୍ତଃକରଣରେ ଅଚ୍ୟୁତ, ଅଖିଳେଶ ଅଜନ୍ମା ଶ୍ରୀହରିଙ୍କୁ ସ୍ଥାନ ଦେଇଛନ୍ତି । ଯିଏ ସମସ୍ତଙ୍କର ଶାସକ, ଯାହାଙ୍କର ଶାସନ କର୍ତ୍ତା ଅନ୍ୟ କେହି ନାହାନ୍ତି, ଯିଏ ସର୍ବଦା ସ୍ୱତନ୍ତ୍ର, ଯିଏ ସର୍ବାନ୍ତର୍ଯ୍ୟାମୀ ଓ ଯିଏ ସମସ୍ତର ନିୟାମକ ସର୍ବଶକ୍ତିମାନ୍, ଆପଣ ତାଙ୍କୁ ଦୃଢ଼ତାର ସହିତ ନିଜ ହୃଦୟରେ ସ୍ଥାପିତ କରିଛନ୍ତି । ଆପଣଙ୍କ ପରି ପରମାର୍ଥ ପଥର ପଥିକଙ୍କର ପଦାନୁସରଣ କରି ଏହି ଅପାର ସଂସାର ସାଗରରୁ ଅତି ସହଜରେ ସମସ୍ତେ ପାରି ହୋଇ ପାରିବେ । ଭଗବନ୍ ! ଆପଣ ସାଧାରଣ ମନୁଷ୍ୟ ନୁହନ୍ତି । ଆପଣ ତ ସମସ୍ତଙ୍କର ଉଦ୍ଧାର କର୍ତ୍ତା । ଆପଣଙ୍କ କୃପା ବର୍ଣ୍ଣନାତୀତ ।"

ଶୌନକ କହିଲେ—"ହେ ସୂତ ! ଏହି ଗ୍ରନ୍ଥ ଶ୍ରବଣର ଫଳ ବିଷୟରେ ତ ଆମ୍ଭେମାନେ ବାରମ୍ବାର ଆପଣଙ୍କଠାରୁ ଶୁଣିଛୁ, କିନ୍ତୁ କୌଣସି ବିଶେଷ ସ୍ଥାନରେ, ବିଶେଷ ପ୍ରକାରରେ ଏହା ଶୁଣିବାରେ କୌଣସି ବିଶେଷ ଫଳ ଲାଭ ହୋଇପାରେ କି ନାହିଁ ତାହା ଆପଣ ଆମ୍ଭମାନଙ୍କୁ କହି ନାହାନ୍ତି । ଏବେ ତାହା କୃପା କରି କୁହନ୍ତୁ ।"

ସୂତ କହିଲେ—"ଠିକ୍ ଅଛି, ମହାରାଜ ! ଏହା ଶ୍ରବଣରେ ଯାହା ବିଶେଷତ୍ୱ ଅଛି, ତାହା ମୁଁ କହୁଛି । ଆପଣମାନେ ତାହା ମନଧ୍ୟାନ ଦେଇ ଶ୍ରବଣ କରନ୍ତୁ ।"

ଷଟ୍‌ପଦୀ

ବଡ଼ଭାଗୀ ସବ ଆପୁ ଜହାଁ ତକ ଜଲୁଁ ବଢ଼ାଇ ।
ତଜି ସବ ଜଗତ ପ୍ରପଞ୍ଚ କୃଷ୍ଣ ପଦ ଭକ୍ତି ଦୃଢ଼ାଇ ।।
ନିନ୍ଦା ଇସ୍ତୁତି ତ୍ୟାଗି ଭଜନ ମେଂ ଚିତ୍ତ ଲଗାୟୌ ।
ତୁମନେ ହୀ ମୁନିବୃନ୍ଦ ମନୁଜ ଜୀବନ ଫଲ ପାୟୌ ।।
ମୈ ହୂଁ ଅତିଶୟ ଧନ୍ୟ ହୂଁ, ତୁମରୀ ସଙ୍ଗତି ପାଇକେଂ ।
କରେ୍ୟା କୃତାରଥ ଜୁମତି ହୂଁ, ହରି ଯଶ ୟାଦି ଦିବାଇକେଂ ।।



# ବିଶେଷ ସ୍ଥାନରେ ଭାଗବତ ଶ୍ରବଣ ମାହାତ୍ମ୍ୟ

**ପୁଷ୍କରେ ମଥୁରାୟାଂ ଚ ଦ୍ୱାରାବତ୍ୟାଂ ଯତାତ୍ମବାନ୍ ।**
**ଉପୋଷ୍ୟ ସଂହିତାମେତାଂ ପଠିତ୍ୱା ମୁଚ୍ୟତେ ଭୟାତ୍ ।।** ☆

(ଶ୍ରୀ ଭା: ୧୨ସ୍କ: ୧୨ଅ: ୬୦ଶ୍ଳୋକ)

ଷଟ୍‌ପଦୀ

ନୃପତି ପରୀକ୍ଷିତ ତ୍ୟାଗି ରାଜ ଗଂଗାତଟ ଧାୟେ ।
ଭାବୀ ଅତି ଲ ପ୍ରବଲ ତହାଁ ମମ ଗୁରୁ ଶୁକ ଆୟେ ।।
ହୌ ହୂଁ ପହୁଁଚେ୍ୟା ତହାଁ କଥା ଗୁରୁଦେବ ସୁନାଇ ।
ସକଲ ମୁନିନି ନୃପ ସଂଗ ସୁନି ମୈନେ ସୁଖଦାଇ ।।
ଶ୍ରୀଗୁରୁ ମୁଖତେଂ ଜୋ ସୁନୀ, କହୀ ଯଥାମତି ସୋ ସକଲ ।
କଲି କଲୁଷ ନାଶନ ନିମିତ, ଅନଲ ସରିସ ୟହ ଅତି ବିମଲ ।।

ସାଧାରଣ ଦେଶରେ, ସାଧାରଣ କାଳରେ ସର୍ବସାଧାରଣ ପୁରୁଷ ଯେପରି କାର୍ଯ୍ୟ କରନ୍ତି, ତାହାର ଫଳ ସେହିପରି ସାଧାରଣ ହୋଇଥାଏ । ଯଦି ଗଙ୍ଗାତଟ ଅଥବା ପୁଣ୍ୟ ପବିତ୍ର ପ୍ରଦେଶରେ ଅମାବାସ୍ୟା, ପୂର୍ଣ୍ଣିମା, ସଂକ୍ରାନ୍ତି ତଥା ବ୍ୟତୀପାତ ଆଦି ପୁଣ୍ୟକାଳରେ ଓ

☆ ପୁଷ୍କରତୀର୍ଥ ବଦରିକା । ମଥୁରା ପ୍ରୟାଗ ଦ୍ୱାରକା ।।
କୁରୁକ୍ଷେତ୍ର ପୁରୁଷୋତ୍ତମ । କାଶୀପୁର ଉତ୍ତମ ସ୍ଥାନ ।।
ସଂଯମୀ ହୋଇ ଯେଉଁ ଜନ । ............
ସର୍ବ ପାପରୁ ମୁକ୍ତ ହୋଇ । ଅଗ୍ନି ଯେସନେ ସର୍ବଖାଇ ।।
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଶାନ୍ତ, ଦାନ୍ତ, ଉତ୍ସାହୀ ଶୁଦ୍ଧ ଅନ୍ତଃକରଣଯୁକ୍ତ କର୍ତ୍ତାଙ୍କଦ୍ୱାରା କୌଣସି କାର୍ଯ୍ୟ କରାଯାଏ, ତହିଁରେ ବିଶେଷ ଫଳ ମିଳେ । ଏଥିପାଇଁ ପ୍ରତ୍ୟେକ କାର୍ଯ୍ୟରେ ଦେଶ, କାଳ ତଥା ପାତ୍ରତାର ଶୁଦ୍ଧି ଉପରେ ବିଶେଷ ଧ୍ୟାନ ଦିଆଯାଏ । ଶ୍ରୀମଦ୍ ଭାଗବତ ଯିଏ, ଯେଉଁଠି, ଯେଉଁ ସମୟରେ ପଢ଼ିଲେ ମଧ୍ୟ ସେଥିରୁ ବହୁତ ଲାଭ ମିଳେ । କିନ୍ତୁ ତାହା ଶୁଦ୍ଧ ଅନ୍ତଃକରଣରେ ନିୟମ, ବ୍ରତ କରି ଉପବାସ ରହି ପୁଣ୍ୟ ପବିତ୍ର ସ୍ଥାନରେ ଏକାଦଶୀ, ଦ୍ୱାଦଶୀ ତିଥିରେ ତଥା ଶ୍ରାବଣ, ଭାଦ୍ରବ, ବୈଶାଖ ଓ କାର୍ତ୍ତିକ ଆଦି ପବିତ୍ର ମାସରେ ଯିଏ ଅନୁଷ୍ଠାନ ପୂର୍ବକ ପାଠ କରନ୍ତି, ତାହାର ଫଳ ଅଲୌକିକ ହୋଇଥାଏ ।

ସୂତ କହିଲେ—''ମୁନିଗଣ ! ମୁଁ ଏହି ପରମ ପାବନ ଭାଗବତ ସଂହିତା ଭାଦ୍ରବ ମାସରେ ଗଙ୍ଗାତଟରେ ନିୟମପୂର୍ବକ ମହାତ୍ମାମାନଙ୍କ ସନ୍ନିଧିରେ ନିଜର ଗୁରୁଦେବ ଭଗବାନ ଶୁକଦେବଙ୍କ ମୁଖାରବିନ୍ଦରୁ ଶୁଣିଥିଲି ।''

ଶୌନକ ପଚାରିଲେ—''ହେ ସୂତ ! ଗଙ୍ଗା ତ ହସ୍ତିନାପୁର ନିକଟରେ ପ୍ରବାହିତ ହେଉଛନ୍ତି । ମହାରାଜ ପରୀକ୍ଷିତ ନିଜ ନଗର ନିକଟରେ ଥିବା ଗଙ୍ଗାକୁ ଛାଡ଼ି ୧୦ କ୍ରୋଶ ଦୂରସ୍ଥ ଶୁକାଶ୍ରମ ନିକଟକୁ ଉପବାସ କରିବାକୁ କାହିଁକି ଯାଇଥିଲେ ?''

ସୂତ କହିଲେ—''ମହାରାଜ ! ଏହା ସତ୍ୟ ଯେ, ଗଙ୍ଗା ହସ୍ତିନାପୁର ନିକଟରେ ପ୍ରବାହିତ ହେଉଛନ୍ତି । କିନ୍ତୁ ପୁଣ୍ୟ ପବିତ୍ର ତୀର୍ଥରେ ଯେଉଁଠି ମୁନି ଋଷିମାନେ ବ୍ରତ ଅନୁଷ୍ଠାନ, ଜପ ତପ କରନ୍ତି, ସେଠାକାର ବାତାବରଣ ଅତ୍ୟନ୍ତ ସାତ୍ତ୍ୱିକ ତଥା ନିର୍ମଳ । ସେଠାରେ ପାଠ, ଜପ ଓ ଅନୁଷ୍ଠାନ କରିବାଦ୍ୱାରା ବିଶେଷ ଫଳ ଲାଭହୁଏ । ମହାରାଜ ପରୀକ୍ଷିତ ଯେଉଁଠାରେ ଭାଗବତ କଥା ଶୁଣିଥିଲେ, ତାହା ହରିଦ୍ୱାର ସନ୍ନିକଟରେ ଅବସ୍ଥିତ । ଏଠାରୁ ହରିଦ୍ୱାର ପର୍ବତମାଳା ଦୃଷ୍ଟିଗୋଚର ହୁଏ । ପ୍ରଥମେ ଏହି ସ୍ଥାନର ନାମ ''ଆନନ୍ଦତଟ'' ଥିଲା । ମୁନି ଋଷିମାନେ ଏଠାରେ ରହୁଥିଲେ । ନାରଦ ମୁନି ଏହି ସ୍ଥାନରେ ସନକାଦି ଋଷିଙ୍କଠାରୁ ଶ୍ରୀମଭାଗବତ ସପ୍ତାହ ବ୍ୟାପୀ ଶୁଣିଥିଲେ । ଏହିଠାରେ ବୃଦ୍ଧ ଜ୍ଞାନ ବୈରାଗ୍ୟଯୁକ୍ତ ହୋଇ ଯୁବକରେ ପରିଣତ ହୋଇଥିଲେ ଓ ଏହିଠାରେ ଭଗବତୀ ''ଭକ୍ତି'' ସ୍ୱୟଂ ହରି ପାର୍ଷଦଙ୍କ ସହିତ ମହାସଂକୀର୍ତ୍ତନରେ ନୃତ୍ୟ କରିଥିଲେ । ଏଥିପାଇଁ ଏହା ସିଦ୍ଧକ୍ଷେତ୍ର । ଶ୍ରୀଭାଗବତ ସପ୍ତାହ ପ୍ରଥା ଏହିଠାରୁ ଆରମ୍ଭ ହୋଇଥିଲା । ଏହି କ୍ଷେତ୍ରର ପବିତ୍ରତା କାରଣରୁ ମହାରାଜ ପରୀକ୍ଷିତ ନିଜ ନଗର ନିକଟରେ ଉପବାସବ୍ରତ ନକରି ଏଠାକୁ ଆସି ଉପବାସ ବ୍ରତ କରିଥିଲେ ଏବଂ ଏହିଠାରେ ଦୈବଯୋଗରୁ ସତ୍ୟବତୀନନ୍ଦନ ବ୍ୟାସଙ୍କର ପୁତ୍ର ଶୁକଦେବ ପଦାର୍ପଣ କରିଥିଲେ । ସେ ମୁନିଋଷିମାନଙ୍କ ଗହଣରେ ମହାରାଜ ପରୀକ୍ଷିତଙ୍କୁ ସାତଦିନରେ ଭାଗବତ କଥା ଶୁଣାଇଥିଲେ । ସେହିଦିନୁ ଏହି ଆଶ୍ରମର ନାମ ଶୁକାଶ୍ରମ ହୋଇଅଛି । ଏହା ସମ୍ମୁଖରେ ନଦୀର ଆରପାରିରେ ମହାଭାଗବତ ବିଦୁରଙ୍କର ଆଶ୍ରମ । ଶୁକ ଆଶ୍ରମ ପରମ ପବିତ୍ର । ଆପଣମାନେ ଧନ୍ୟ, କାରଣ ଆପଣମାନେ ଭାଗବତ କଥା ଶୁଣି ଧନ୍ୟ ହେବା ସଙ୍ଗେ ସଙ୍ଗେ ମୋତେ ବି ଧନ୍ୟ କରିଛନ୍ତି ।''

ଶୌନକ କହିଲେ—''ହେ ସୂତ ! ଆମ୍ଭେମାନେ ଆପଣଙ୍କ କୃପାରୁ ଧନ୍ୟ ହେଲୁ । ଆମ୍ଭମାନଙ୍କର ଏହି ସମୟତକ ଅତି ସୁଖରେ କଟିଗଲା । ଏବେ ମନ କେଉଁ ଦିଗକୁ ଗତି କରିବ, ତାହା କହିହେଉନାହିଁ ।''

ସୂତ କହିଲେ—''ଭଗବନ୍ ! ଆପଣମାନେ ସମସ୍ତେ ତ ଜନ୍ମସିଦ୍ଧ ମହାପୁରୁଷ । ଆପଣମାନଙ୍କ ଚିତ୍ତ ତ ସର୍ବଦା ଭଗବଦ୍ ଚିନ୍ତାରେ ନିମଜ୍ଜିତ । ଯେ କେହି ଏହି ଭାଗବତ କଥାକୁ ଏକ ପ୍ରହର ବା କ୍ଷଣେମାତ୍ର ଅନନ୍ୟ ଭାବରେ ଶ୍ରବଣ କରିବ, ସେମାନଙ୍କ ଚିତ୍ତ ନିଶ୍ଚିତ

ଭାବରେ ପବିତ୍ର ହେବ । ଏହାଠାରୁ ବଳି ଉତ୍ତମ ସାଧନ ଆଉ କିଛି ନାହିଁ । ଯିଏ ଏହି ମୂଳ ଭାଗବତ କଥାକୁ ଅଖଣ୍ଡ ଭାବରେ ପାଠ କରିବେ, ତାଙ୍କର ଅକାଳମୃତ୍ୟୁ ହେବ ନାହିଁ । ସେ ଦୀର୍ଘାୟୁ ହୋଇଯିବେ ।''

ଶୌନକ ପଚାରିଲେ—''ହେ ସୂତ ! **ଅଖଣ୍ଡ ପାଠର ବିଧି କ'ଣ ।''**

ସୂତ କହିଲେ—''ମହାରାଜ ! ଏକାଦଶୀକୁ ତ୍ରିବ୍ରତା ବୋଲି କୁହାଯାଏ । ଏଥିରେ ଦଶମୀର ସାୟଂକାଳରୁ ଏକାଦଶୀ ବା ଦ୍ୱାଦଶୀର ରାତ୍ରି ପର୍ଯ୍ୟନ୍ତ ଭୋଜନ କରାଯାଏ ନାହିଁ । ଯେଉଁ ବ୍ୟକ୍ତି ସ୍ମାର୍ତ୍ତ ପଦ୍ଧତିରେ ଏକାଦଶୀ ବ୍ରତ କରନ୍ତି, ତାଙ୍କର ଦ୍ୱାଦଶୀରେ ପାରଣା ହୁଏ ଓ ଯେଉଁ ବ୍ୟକ୍ତି ଦ୍ୱାଦଶୀର ବ୍ରତ ରଖନ୍ତି, ସେ ତ୍ରୟୋଦଶୀରେ ପାରଣା କରନ୍ତି । ଏକାଦଶୀ ବ୍ରତ ହେଉ ଅଥବା ଦ୍ୱାଦଶୀର ପ୍ରାତଃକାଳ ଅରୁଣୋଦୟ ସମୟରେ ସଂକ୍ଷିପ୍ତ ନିତ୍ୟ ନିୟମ କରାଯାଇ ଭାଗବତ ପାଠରେ ମନ ଦିଆଯାଉ, କୌଣସି ଶାରୀରିକ କ୍ରିୟା କରିବାକୁ ପାଠଛାଡ଼ି ଉଠିବାକୁ ହେଲେ ଉଠି ହେବ ନାହିଁ, ନିରନ୍ତର ପାଠ କରିବାକୁ ପଡ଼ିବ । ରାତିରେ ମଧ ଶୋଇବାକୁ ହେବ ନାହିଁ । ଅନ୍ୟ ଦିନ ଦ୍ୱାଦଶୀ ଅଥବା ତ୍ରୟୋଦଶୀରେ ଯଦିଚ ପାଠ ଶେଷ ହୋଇଥାଏ, ତେବେ ଯାଇ ପାରଣା କରିବାକୁ ହେବ । ଯେଉଁ ବ୍ୟକ୍ତି ଏପରି କରନ୍ତି, ସେ ସମସ୍ତ ପାପରୁ ମୁକ୍ତି ଲାଭ କରନ୍ତି । ଯାହାଙ୍କର ପାଠ କରିବାର ସାମର୍ଥ୍ୟ ନାହିଁ, ସେ ଅନ୍ୟଦ୍ୱାରା ପାଠ କରାଇ ତାହା ଶୁଣିବାକୁ ହେବ । ତାହାହେଲେ ସେ ଦୀର୍ଘାୟୁ ହେବ ।''

ଶୌନକ ପଚାରିଲେ—''ହେ ସୂତ ! ଦୁଇଦିନ ଉପବାସ କରି ଓ ଜାଗ୍ରତ ରହି ଭାଗବତ ପାଠ କରିବାର ସାମର୍ଥ୍ୟ ଯଦି ନଥାଏ, ତାହାହେଲେ ବ୍ରତକାରୀ କ'ଣ କରିବ ?''

ସୂତ କହିଲେ—''ମହାରାଜ ! ତାହାହେଲେ ସେ ସାତଦିନ ଶୁଣିବେ, ଏହାଦ୍ୱାରା ଏହା ସୁଗମ ହୁଏ । ଏକାହାର, ଫଳାହାର, ଦୁଗ୍‌ଧାହାର, ପଞ୍ଚାମୃତ ପାନ, ପୟପାନ ଅଥବା ନିରାହାର ଆଦି ନିୟମ ପାଳନକରି ସେ ଭାଗବତ ଶ୍ରବଣ କରିବେ । ଯଦି ପାଠ କରିବାକୁ ପଡ଼େ, ତାହାହେଲେ ନିରାହାର ରହି ସାତଦିନରେ ପାଠ କରିବେ ।''

ଶୌନକ ପଚାରିଲେ—''ହେ ସୂତ ! ପାଠ କରିବା ପାଇଁ କିପରି ସ୍ଥଳ ଉତ୍ତମ ?''

ସୂତ କହିଲେ—''ମହାରାଜ ! ସବୁସ୍ଥଳ ଉତ୍ତମ, ବଦରୀବନ, ଶୁକାଶ୍ରମ, ହରିଦ୍ୱାର, ନୈମିଷାରଣ୍ୟ, ମଥୁରା, ବୃନ୍ଦାବନ, ଗୋବର୍ଦ୍ଧନ, କାଶୀ, ପ୍ରୟାଗ ଓ ଅନ୍ୟ ସମସ୍ତ ପୁରାଣ କଥିତ ତୀର୍ଥ ପାଠକରିବା ପାଇଁ ଉତ୍ତମ ସ୍ଥଳ । କିନ୍ତୁ ତିନିଟି ସ୍ଥାନରେ ଉପବାସ ପୂର୍ବକ ପାଠ କରିବାର ବିଶେଷ ମାହାତ୍ମ୍ୟ ରହିଛି ।''

ଶୌନକ ପଚାରିଲେ—''ସେ ତିନିସ୍ଥଳ କିଏ କିଏ ?''

ସୂତ କହିଲେ—''ମହାରାଜ ! ସେହି ତିନିଟି ସ୍ଥଳର ନାମ ହେଲା—ପୁଷ୍କର, ମଥୁରା ଓ ଦ୍ୱାରକା । ପୁଷ୍କର ତୀର୍ଥରେ ବ୍ରହ୍ମା ଆଦିସୃଷ୍ଟି ରଚନା କରିଥିଲେ । ସେହିଠାରୁ ସୃଷ୍ଟିଚକ୍ର ଚାଲିଛି । ଏଥିପାଇଁ ଏହା ସମସ୍ତ ତୀର୍ଥର ଗୁରୁ । ମଥୁରାରେ ଆନନ୍ଦକନ୍ଦ ଶ୍ରୀମଭାଗବତର ପ୍ରଧାନ ନାୟକ ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହୋଇଥିଲେ । ଏଥିପାଇଁ ଭଗବାନ ସେଠାରେ ନିତ୍ୟ ବିରାଜମାନ କରିଛନ୍ତି । ଦ୍ୱାରାବତୀରେ ଭଗବାନ ନିଜର ଉତ୍ତର ଲୀଳା ସମ୍ପାଦନ କରିଥିଲେ । ମଥୁରାରୁ ଯାଇ ସେଠାରେ ରହିଥିଲେ । ତେଣୁ ସେଠାରେ ବି ଭଗବାନଙ୍କର ନିତ୍ୟ ବିରାଜମାନତା ରହିଛି । ଏହି ତିନିଟିଯାକ ପରମ ପବିତ୍ର ପୁରୀରେ ଯିଏ ଜିତେନ୍ଦ୍ରିୟ ହୋଇ ଉପବାସ ପୂର୍ବକ ଶ୍ରୀମଭାଗବତ ପାଠ କରନ୍ତି, ସେ ସମସ୍ତ ପ୍ରକାରର ସଂକଟରୁ ରକ୍ଷା ପାଇଥାଆନ୍ତି ।''

ଶୌନକ ପଚାରିଲେ—''ହେ ସୂତ ! ଏହି ତିନି ପୁରୀରେ କି ବିଶେଷତ୍ୱ ଅଛି ?''

ସୂତ କହିଲେ—"ଭଗବନ୍ ! ପୁଷ୍କରର ମାହାତ୍ମ୍ୟ ଅନନ୍ତ । ଏହା ମୁଁ ଅନ୍ୟ କେତେବେଳେ କହିବି । କିନ୍ତୁ ଏବେ ଏତିକି ସଂକ୍ଷେପରେ କହୁଛି ଯେ, ପୁଷ୍କର ହେଉଛି ଗାୟତ୍ରୀଙ୍କ ଜନନୀ । ଏହିଠାରେ ଗାୟତ୍ରୀଙ୍କର ବ୍ରହ୍ମାଙ୍କ ସହିତ ବିବାହ ହୋଇଥିଲା । ଏହା ତ ପୌରାଣିକ କଥା ଓ ବହୁତ ବଡ଼ । ସଂକ୍ଷେପରେ ଏହା କୁହାଯାଇ ପାରେ ଯେ, ପୁଷ୍କରରେ ବ୍ରହ୍ମା ଏକ ବିରାଟ ଯଜ୍ଞ କରିବାକୁ ବିଚାର କରିଥିଲେ । ଯଜ୍ଞର ମୁହୂର୍ତ୍ତ ଉପସ୍ଥିତ ହେଲା, କିନ୍ତୁ ସେ ପର୍ଯ୍ୟନ୍ତ ସରସ୍ୱତୀ ଦେବୀ ସେଠାକୁ ଆସିଲେ ନାହିଁ । ବିନା ପତ୍ନୀରେ ଯଜ୍ଞ ଅବା କିପରି ହୁଅନ୍ତା ? ଯଜ୍ଞର ସମୟ ଶେଷ ହେବାକୁ ବସିଲା । ଏଥିପାଇଁ ଦେବତାଗଣ ସେଠାକୁ ଏକ କନ୍ୟା ନେଇ ଆସିଲେ । ତା ସହିତ ବ୍ରହ୍ମାଙ୍କର ବିବାହ କରାଇଲେ । ବ୍ରହ୍ମା ତାଙ୍କ ପତ୍ନୀଙ୍କ ସହିତ ଯଜ୍ଞଦୀକ୍ଷା ନେଲେ । ସେହି କନ୍ୟା ବିବାହ ହେବା ପରେ ତାଙ୍କର ନାମ ଗାୟତ୍ରୀ ରଖାଗଲା । ସେ ଦେବୀ ଗାୟତ୍ରୀ ନାମରେ ପ୍ରସିଦ୍ଧ ହେଲେ ।"

**ଏହି ଶ୍ରୀମଦ୍ଭାଗବତ ହେଉଛି ଗାୟତ୍ରୀର ଭାଷ୍ୟ । ଚବିଶ ଅକ୍ଷର ବିଶିଷ୍ଟ ଏହି ଗାୟତ୍ରୀ ମନ୍ତ୍ରକୁ ଶ୍ରୀମଦ୍ଭାଗବତର ଦ୍ୱାଦଶ ସ୍କନ୍ଧରେ ବିସ୍ତାରିତ ଭାବେ ବର୍ଣ୍ଣନା କରାଯାଇଛି ।** ପୁନଶ୍ଚ ଏହି ସ୍ଥାନ ହେଉଛି ସୃଷ୍ଟିର ଆଦି ସ୍ଥାନ । ଏହି ବିଶେଷତ୍ୱ ଯୋଗୁ ପୁଷ୍କରରେ ବିଶେଷତଃ କାର୍ତ୍ତିକ ମାସରେ ଏହା ଅଧିକ ପୁଣ୍ୟପ୍ରଦ ।

ମଥୁରାରେ ତ ସ୍ୱୟଂ ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହୋଇଥିଲେ । ଏଥିପାଇଁ କେବଳ ମଥୁରା କାହିଁକି, ସମଗ୍ର ମଥୁରାମଣ୍ଡଳ ବ୍ରଜମଣ୍ଡଳକୁ ନେଇ ଅତ୍ୟନ୍ତ ପୁଣ୍ୟପ୍ରଦ । ତେଣୁ ଶ୍ରୀମଦ୍ଭାଗବତ ପାଠ ପାଇଁ ଏ ସ୍ଥାନର ଅଧିକ ମାହାତ୍ମ୍ୟ ରହିଛି । ସେହିପରି ଦ୍ୱାରକାରେ ମଧ୍ୟ ଭଗବାନ ନିବାସ କରି ଗୃହସ୍ଥୋଚିତ ଅନେକ ଲୀଳା କରିଥିଲେ । ଦ୍ୱାରାବତୀରେ କୋଣେ କୋଣେ ଭଗବାନଙ୍କର ଅନେକ ସ୍ମୃତି ସନ୍ନିହିତ ଅଛି । ଏ ସ୍ଥାନର ବାୟୁମଣ୍ଡଳରେ ଏ ସମସ୍ତ ଏବେ ମଧ୍ୟ ବିଦ୍ୟମାନ । ଏଥିପାଇଁ ଏହି ତିନିଟିଯାକ ପୁରୀର ଅନନ୍ତ ମାହାତ୍ମ୍ୟ ରହିଛି ।"

ସୂତ କହିଲେ—"ମୁନିଗଣ ! ମୁଁ ଏବେ କିଛି ଭାଗବତ ମାହାତ୍ମ୍ୟ ବର୍ଣ୍ଣନା କରିବି । ଆପଣମାନେ ତାହା ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ ।"

ଷଟ୍‌ପଦୀ

ପ୍ରତିଦିନ ସମୟ ନିକାରି ଭାଗବତ ଚରିତ ସୁନିଂଗେ ।
ସୁନିକେଂ ସବ ନର ନାରି ଅବସି ଚିତ ବିମଲ କରିଂଗେ ।।
ହରି ବାସର ବ୍ରତ କରୈ ପ୍ରେମତେଂ ସବ ପଢ଼ି ଜାବୈଂ ।
ଆୟୁ ବଢ଼ୈ ଅଘ ଘଟୈଂ ଅନ୍ତମେ ପ୍ରଭୁପଦ ପାବୈଂ ।।
ପୁଷ୍କର, ମଥୁରା, ଦ୍ୱାରକା, କାଶୀ, ପୁଣ୍ୟପ୍ରୟାଗ ଥଲ ।
ପାଠ କରେଂ ତେ ଭୟ ଛୁଟେଂ, ହୋ ହି ବୁଦ୍ଧି ଅତିଶୟ ବିମଲ ।।



# ଭାଗବତ କଥା କାମଧେନୁ ସ୍ୱରୂପ

**ବିପ୍ରୋଽଧୀତ୍ୟାପ୍ନୁୟାତ୍ ପ୍ରଜ୍ଞାଂ ରାଜନ୍ୟୋଦଧିମେଖଲାମ୍ ।**
**ବୈଶ୍ୟୋ ନିଧିପତିତ୍ୱଂ ଚ ଶୂଦ୍ରଃ ଶୁଦ୍ଧ୍ୟେତ୍ ପାତକାତ୍ ॥** ☆
(ଶ୍ରୀ ଭା: ୧୨ସ୍କ: ୧୨ଅ: ୬୪ଶ୍ଳୋକ)

ଷଟ୍‌ପଦୀ

ଶୁଦ୍ଧ ଚିତ୍ତ ତେଂ ମନୁଜ ଗାଇବେଂ ଜାଇ ସନାବେଂ ।
ତିନିକେ ଅତି ଅନୁକୂଳ ପିତର, ଋଷି, ସୁର ହ୍ୱୈ ଜାବେଂ ॥
ସିଦ୍ଧ, ପିତର, ସୁର, ଭକ୍ତ ଦେହି ଇଚ୍ଛିତ ଫଲ ତାହ୍ନୁଁ ।
ଭୁକ୍ତି, ମୁକ୍ତି, ସବ ସିଦ୍ଧି ସହଜ ମେଂ ମିଲି ହୈଂ ଗ୍ୱାହ୍ନୁଁ ॥
ପଢ଼େଂ ଭାଗବତ ଚରିତ କୁଁ, ତେ ସବଇ ଫଲ ପାଇଁଗେ ।
ଦ୍ୱିଜ ଧୀ, ନୃପ ଭୂ, ବୈଶ୍ୟ ଧନ, ଶୂଦ୍ର ଶୁଦ୍ଧ ହ୍ୱୈଜାଇଁଗେ ॥

ମୁନି ଋଷିମାନଙ୍କ ଆଶ୍ରମରେ କାମଧେନୁ ରହୁଥିଲେ । ତାଙ୍କଦ୍ୱାରା ସେମାନେ ନିଜ ନିଜର ସମସ୍ତ ମନୋବାଞ୍ଛିତ କାର୍ଯ୍ୟ ସାଧନ କରୁଥିଲେ । ବଶିଷ୍ଠଙ୍କ ଆଶ୍ରମରେ କାମଧେନୁ ଥିଲା । ତାହାରି ଯୋଗୁ ମହାରାଜ ବିଶ୍ୱାମିତ୍ରଙ୍କର ଲକ୍ଷ ଲକ୍ଷ ସୈନ୍ୟ ଭୂରି ଭୋଜନ ଆଦି ପାଇ ସନ୍ତୁଷ୍ଟ ହୋଇଥିଲେ । ସେମାନଙ୍କୁ ମନ ମୁତାବକ ପ୍ରସାଦ ମିଳିଥିଲା । ମହର୍ଷି ଜମଦଗ୍ନିଙ୍କ ଆଶ୍ରମରେ ମଧ୍ୟ କାମଧେନୁ ଥିଲା । ତାହାଦ୍ୱାରା ସେ ହେହୟବଂଶୀ ମହାରାଜ ସହସ୍ରାର୍ଜୁନଙ୍କର ସମସ୍ତ ସୈନ୍ୟଙ୍କୁ ସବୁ ପ୍ରକାରର ସନ୍ତୁଷ୍ଟ କରାଯାଇଥିଲା । ମହର୍ଷି ଭରଦ୍ୱାଜଙ୍କ ଆଶ୍ରମରେ ମଧ୍ୟ କାମଧେନୁ ଥିଲା । ତାହାଦ୍ୱାରା ଭରତଙ୍କୁ ସ୍ୱର୍ଗଠାରୁ ବଳି ସତ୍କାର କରାଯାଇଥିଲା । ଭରତଙ୍କର ସୈନ୍ୟମାନେ ଏ ପ୍ରକାର ଅଭୂତପୂର୍ବ ଦିବ୍ୟ ସତ୍କାର ପାଇ କହିଥିଲେ—"ଆମେ ଆଉ ଭରତଙ୍କ ସୈନ୍ୟ ହୋଇ ନରହି ଏହି ମୁନିଙ୍କ ଆଶ୍ରମରେ ରହି ସ୍ୱର୍ଗୀୟ ସୁଖଗୁଡ଼ିକୁ ଉପଭୋଗ କରିବୁ । ମୁନିଙ୍କ ଆଶ୍ରମରେ ଚତୁଷ୍ପଦ କାମଧେନୁ ରହୁଥିଲେ । ସଦ୍-ଗୃହସ୍ଥଙ୍କ ଘରେ ଦ୍ୱିପଦ ବିଶିଷ୍ଟ କାମଧେନୁ ଏବେ ବି ରହୁଛନ୍ତି । ସେହି ଗୃହ କାମଧେନୁଙ୍କୁ ଶାସ୍ତ୍ରକାରମାନେ ସୁଲକ୍ଷଣା ଗୃହିଣୀ ବା ଗୃହକାମଧେନୁ ବୋଲି କହିଛନ୍ତି । **ସଂସାରରେ ଯାହାଙ୍କୁ**

---

☆ କ୍ଷତ୍ରି ଯେବେ ପଢ଼ି ଶୁଣଇ । ସପତ ଦ୍ୱୀପ ରାଜା ହୋଇ ॥
ବୈଶ୍ୟ ହୋଇ ପଢ଼ି ଶୁଣିଲେ । ଧନରତନ ତାକୁ ମିଳେ ॥
ବିଷ୍ଣୁ ପ୍ରାପ୍ତି ତାକୁ ହୁଅଇ । ସୁଖେ ବାଣିଜ୍ୟ କୃଷି ହୋଇ ॥
ଶୂଦ୍ର ହୋଇଣ ଯେବେ ପଢ଼ି । ଶୁଣଇ ଶ୍ରଦ୍ଧାଚିତ୍ତେ ବଢ଼ି ॥
ସକଳ ପାପୁ ମୁକ୍ତ ହୋଇ । ଶ୍ରୀକୃଷ୍ଣ ଚରଣ ଲଭଇ ॥
ବ୍ରାହ୍ମଣ ସଂହିତାରେ ପଢ଼ି । ଅର୍ଥ ଭେଦରେ ଚିତ୍ତ ବଢ଼ି ॥
ଯେ ଫଳ ହୁଅଇ ତାହାର । ଆବର ତିନି ବର୍ଣ୍ଣଙ୍କର ॥
ସକଳ ପାପ ନ ଲାଗଇ । ବିଷ୍ଣୁ ଚରଣେ ଲୀନ ହୋଇ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

**ନିଜର ମନୋନୁକୂଳ ପ୍ରିୟଭାଷିଣୀ ସୁନ୍ଦର ଲକ୍ଷଣଯୁକ୍ତା ଜୀବନ ସଙ୍ଗିନୀ ମିଳିଛନ୍ତି, ତାଙ୍କ ଗୃହରେ ସମସ୍ତ ସୁଖ ବିଦ୍ୟମାନ ।** କାମଧେନୁ ତ ନିୟମରେ ସଦାଚାରପୂର୍ଣ୍ଣ ଜୀବନ ଯାପନକାରୀ ସତ୍ୟବାଦୀ ତପସ୍ୱୀମାନଙ୍କ ଆଶ୍ରମରେ ରହନ୍ତି । କିନ୍ତୁ ଗୃହକାମଧେନୁ ଭାଗ୍ୟଶାଳୀ ପୁଣ୍ୟାତ୍ମା ସଦ୍‌ଗୃହସ୍ଥଙ୍କ ଘରେ ରହନ୍ତି । ଆହୁରି ମଧ୍ୟ ଏପରି ଏକ ପ୍ରକାର କାମଧେନୁ ଅଛନ୍ତି, ଯେଉଁ କାମଧେନୁମାନେ ଗୃହସ୍ଥ, ଅନାସକ୍ତ, ରାଜା, ରଙ୍କ, ବ୍ରାହ୍ମଣ, ଶୂଦ୍ର ପ୍ରତ୍ୟେକଙ୍କ ଘରେ ସମାନ ରୂପେ ରହି ପାରନ୍ତି ଓ ସମସ୍ତଙ୍କୁ ସୁଖଶାନ୍ତି ଓ ସନ୍ତୋଷ ପ୍ରଦାନ କରିପାରନ୍ତି । ସେହି କାମଧେନୁଙ୍କ ନାମ ହେଉଛି ''ଭାଗବତ କଥା ।''

ସୂତ କହିଲେ—''ମୁନିଗଣ ! ଶ୍ରୀମଦ୍ଭାଗବତର କଥାଗୁଡ଼ିକ ଇହଲୋକରେ ସମସ୍ତ ପ୍ରକାର ସୁଖ ପ୍ରଦାନ କରେ । ମୁଁ ତ ଅଜ୍ଞ, ଏକମୁଖ ବିଶିଷ୍ଟ ବ୍ୟକ୍ତି ଓ ମରଣଶୀଳ । ଯଦି ସଙ୍କର୍ଷଣାବତାର ଭଗବାନ ଶେଷଦେବ ଯିଏକି ସର୍ବଜ୍ଞ, ଯାହାଙ୍କର ସହସ୍ର ମୁଖ ଓ ସହସ୍ର ଜିହ୍ୱା, ଯିଏକି ନିତ୍ୟ ଓ ଅମର ଅଟନ୍ତି, ସେ ମଧ୍ୟ ଯଦି ନିରନ୍ତର ଶ୍ରୀମଦ୍ଭାଗବତର ମାହାତ୍ମ୍ୟ କହିବାକୁ ଇଚ୍ଛା କରନ୍ତି, ତାହାହେଲେ ପୂର୍ଣ୍ଣରୂପେ ବର୍ଣ୍ଣନା କରିପାରିବେ ନାହିଁ । ହେ ମହାନୁଭାବଗଣ ! ଶ୍ରୀମଦ୍ଭାଗବତରେ ଏପରି ରସ ରହିଛି, ଯାହା କି ସ୍ତ୍ରୀ, ପୁରୁଷ, ବାଳକ, ବୃଦ୍ଧ ଓ ସବୁଶ୍ରେଣୀର ମନୁଷ୍ୟଙ୍କୁ ସନ୍ତୁଷ୍ଟ କରି ପାରୁଛି । ସେମାନେ ସେମାନଙ୍କ ଇଷ୍ଟଦେବଙ୍କୁ ସନ୍ତୁଷ୍ଟ କରିବା ପାଇଁ ମନ୍ତ୍ରଜପ ବା ଅନ୍ୟ ଅନୁଷ୍ଠାନ କରିବାର ଆବଶ୍ୟକତା ନାହିଁ ।''

ଶୌନକ ପଚାରିଲେ—''ହେ ସୂତ ! ବିନା ମନ୍ତ୍ରାନୁଷ୍ଠାନରେ ଦେବତାଗଣ କିପରି ସନ୍ତୁଷ୍ଟ ହୋଇ ପାରିବେ ?''

ସୂତ କହିଲେ—''ହଁ, ମହାରାଜ ! ଆପଣମାନେ ନିଜ ନିଜର ଇଷ୍ଟଦେବଙ୍କୁ ଶ୍ରୀମଦ୍ଭାଗବତ କେବଳ ପାଠକରି ଶୁଣାନ୍ତୁ । ଭାଗବତରେ ଶ୍ଳୋକ, ମନ୍ତ୍ର ବି ରହିଛି । ଏହା ପାଠ କରୁ କରୁ ଦେବତା ସ୍ୱୟଂ ଆସି ଆପଣମାନଙ୍କୁ ଇପ୍‌ସିତ ବସ୍ତୁ ପ୍ରଦାନ କରିବେ ।''

ଶୌନକ ପଚାରିଲେ—''ହେ ସୂତ ! କିଏ କ'ଣ ଏପରି କରି କିଛି ପାଇଛନ୍ତି ?''

ସୂତ କହିଲେ—''ବହୁତଙ୍କୁ ଏପରି ମିଳିଛି । ବିନା ମନ୍ତ୍ରପାଠ କରି, ବିନା ବେଦାନ୍ତ ଅଭ୍ୟାସ କରି, ବିନା ଚାନ୍ଦ୍ରାୟଣାଦି ବ୍ରତ ଆଚରଣ କରି, କେବଳ ଭାଗବତର ପୁଣ୍ୟ ଚରିତ୍ର ପାଠ କରିବାଦ୍ୱାରା ହିଁ ଅନେକ ବ୍ୟକ୍ତି ସିଦ୍ଧି ଲାଭ କରିଛନ୍ତି । ଏବେ କିଛିଦିନ ତଳେ ଏପରି ଏକ ଘଟଣା ଘଟିଛି ।''

ଶୌନକ ପଚାରିଲେ—''ହେ ସୂତ ! ସେହି ଘଟଣା ସମ୍ବନ୍ଧରେ ଆପଣ ଆମ୍ଭମାନଙ୍କୁ କହନ୍ତୁ । ଏହି ପ୍ରତ୍ୟକ୍ଷ ଘଟଣା ଶୁଣିବା ପାଇଁ ଆମ୍ଭମାନଙ୍କର ଶ୍ରଦ୍ଧା ବଢୁଛି ।''

ସୂତ କିଲେ—''ମୁନିଗଣ ! ଏହା ସତ୍ୟ, ତ୍ରେତା, ଦ୍ୱାପର ଯୁଗର କଥା ନୁହେଁ, ଯୁଧିଷ୍ଠିର ବା ପରୀକ୍ଷିତଙ୍କ ରାଜ୍ୟକଥା ବି ନୁହେଁ, ବୌଦ୍ଧ, ହୁଣ, ଶକ ବା ମ୍ଳେଚ୍ଛମାନଙ୍କ ଶାସନକାଳ କଥା ନୁହେଁ । ସମ୍ପ୍ରତି ଗୁରୁଣ୍ଡ ରାଜ୍ୟଶାସନର କିଛିଦିନ ପୂର୍ବର ଘଟଣା । ଦକ୍ଷିଣ ଭାରତର ପୁନା ନିକଟରେ ସିତାରା ଜନପଦରେ ଏକ 'ବାଇକ୍ଷେତ୍ର' ଅବସ୍ଥିତ । ସେଠାରେ କୃଷ୍ଣାନଦୀତଟରେ ଏକ ବୃଦ୍ଧା ବିଧବା ବ୍ରାହ୍ମଣୀ ବାସ କରୁଥିଲେ । ତାଙ୍କର ଗୋଟିଏ ପାଠଶାଠ ପଢ଼ି ନଥିବା ପୁତ୍ର ଥିଲା । ତାହାର ନାମ ଥିଲା ନୃସିଂହାଚାର୍ଯ୍ୟ । ବୃଦ୍ଧା ଅତ୍ୟନ୍ତ ନିର୍ଦ୍ଧନ ଥିଲେ । ସେ ମାଗିଯାଚି କୌଣସି ପ୍ରକାରେ ନିଜର ଜୀବନ ନିର୍ବାହ କରୁଥିଲେ । ଥରେ ସୋମବତୀ ଅମାବାସ୍ୟା ପଡ଼ିଥିଲା । ସେହିଦିନ ମାତାମାନେ କୌଣସି ଫଳ ସହିତ ଅଶ୍ୱତ୍ଥ ପରିକ୍ରମା କରନ୍ତି ଓ ପୂଜା କରନ୍ତି । ଜଣେ ପରିକ୍ରମାକାରିଣୀ ସେଠାରେ ଗୋଟିଏ ଫଳ ରଖିଦେଲେ । ଏହିପରି ଯେ କୌଣସି ଫଳରୁ ୧୦୮ଟି ସେଠାରେ ରଖିବା ଏକାନ୍ତ ଆବଶ୍ୟକ ପଡ଼େ । କେହି ପାଚିଲା କଦଳୀ ରଖି ପୂଜା କରନ୍ତି ତ କେହି ଆମ୍ବ ଜାମୁ ଆଦିରେ ପୂଜା

କରନ୍ତି । ଯେପରି ସମୟ ହୋଇଥାଉ, ଯେପରି ଶକ୍ତି ହୋଇଥାଉ ବା ଯେପରି ସୁବିଧା ହେଉ, ସେହିପରି ପୂଜା କରାଯାଏ ।

"ସେହି ବୃଦ୍ଧାଙ୍କ ପାଖରେ ୧୦୮ ଫଳ ନଥିଲା କି ସେ ଏତେ ଫଳ କିଣିବା ପାଇଁ ସମର୍ଥବାନ୍ ବି ନଥିଲେ । ସେ କହିଲେ—'ମୁଁ ବିନା ଫଳରେ ହିଁ ୧୦୮ ମହାଦୀକ୍ଷା କରିନେବି । ନିଜର ପୁତ୍ରକୁ ସଙ୍ଗରେ ନେଇ ସେ ମନ୍ଦିର ନିକଟରେ ଥିବା ଅଶ୍ୱତଥ୍ ବୃକ୍ଷ ନିକଟକୁ ଗଲେ ଓ ଅଶ୍ରୁପୂର୍ଣ୍ଣ ନେତ୍ରରେ ପୁତ୍ରକୁ କହିଲେ—'ତୁ ମୋର ଏପରି ଅଯୋଗ୍ୟ ପୁତ୍ର ହେଲୁ ଯେ, ୧୦୮ଟି ଫଳ ବି ଜୁଟାଇ ପାରିଲୁ ନାହିଁ । ମୋତେ ଅଶ୍ୱତଥ୍ ଦେବଙ୍କର ପ୍ରଦକ୍ଷିଣ ବିନା ଫଳରେ କରିବାକୁ ପଡ଼ିଲା ।'

ପୁତ୍ର କହିଲା—"ମା ! ତୁ ଚିନ୍ତା କରନା । ମୁଁ ୧୦୮ ଶ୍ରୀମଦ୍‌ଭାଗବତ ରୂପକ ଫଳ ଏହି ଅଶ୍ୱତ୍‌ଥଦେବଙ୍କୁ ଅର୍ପଣ କରିବି ।"

ଏହା ଶୁଣି ମା ହସିଲେ ଓ କହିଲେ—"ତୋତେ ଭଲଭାବେ ଅକ୍ଷର ପଢ଼ି ଆସେ ନାହିଁ । ଶ୍ରୀମଦ୍‌ଭାଗବତର ୧୦୮ ପାଠ କିପରି କରିବୁ ?"

ପୁତ୍ର ଦୃଢ଼ତାର ସହିତ କହିଲା—"ମା ! ତୁ ବିଶ୍ୱାସ କର, ମୁଁ ନିଶ୍ଚିତ ଭାବରେ ଦେବତାଙ୍କୁ ୧୦୮ ଶ୍ରୀମଦ୍‌ଭାଗବତ ରୂପକ ଫଳ ଅର୍ପଣ କରିବି ।"

ନିଜର ମୂର୍ଖପୁତ୍ର କଥାରେ ମା' ଆଦୌ ବିଶ୍ୱାସ କଲେ ନାହିଁ । ପରଦିନ ସମସ୍ତେ ଦେଖିଲେ, ସେହି ମୂର୍ଖବାଳକ ଶ୍ରୀମଦ୍‌ଭାଗବତକୁ ହସ୍ତରେ ଧରି ସେଠାରୁ ଦୁଇକୋଶ ଦୂର କୃଷ୍ଣାନଦୀ ତଟସ୍ଥ ଧୌମ୍ୟ ମହାବଳେଶ୍ୱର ନିକଟରେ ଥିବା ନୃସିଂହଙ୍କ ମନ୍ଦିରରେ ଯାଇ ବସିଛି । ତାହାର କେବଳ ସାମାନ୍ୟ ଅକ୍ଷରଜ୍ଞାନ ଥିଲା । ତେଣୁ ସେ ଗୋଟିଏ ଗୋଟିଏ ଅକ୍ଷର ଚିହ୍ନି ଚିହ୍ନି ପଢ଼ି ପାଠ କରିବାକୁ ଆରମ୍ଭ କଲା । ଏହିପରି ସେ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ପାଠ କରି ଦୁଇମାସରେ ସମସ୍ତ ଭାଗବତ ସମ୍ପୂର୍ଣ୍ଣ କରିଦେଲା । ଭାଗବତ ତା ଉପରେ କୃପା କଲେ । ଦ୍ୱିତୀୟଥର ସେ ଦେଢ଼ମାସ ମଧ୍ୟରେ ପାଠ କରି ଶେଷ କଲା । ଏହିପରି କେତେକ ବର୍ଷ ମଧ୍ୟରେ ସେ ୧୦୮ ଥର ଶ୍ରୀମଦ୍‌ଭାଗବତ ପାଠ ପୂର୍ଣ୍ଣ କରିଦେଲା । ଭାଗବତ ହେଉଛନ୍ତି ପ୍ରତ୍ୟକ୍ଷ ଦେବତା । ସେ ସ୍ୱୟଂ ଅଶ୍ୱତଥ୍ ଓ ନୃସିଂହ ମନ୍ଦିରରେ ବସି ତାହା ଶୁଣିଥିଲେ । ସେ ଏଥିରେ ପ୍ରସନ୍ନ ହୋଇଗଲେ । ନୃସିଂହ ଭଗବାନ ମଧ୍ୟ କୃପା କଲେ । ଏବେ ସେହି ବାଳକ ଭାଗବତର ଅର୍ଥ କରିବାକୁ ଲାଗିଲା । ତାହାର ଅର୍ଥ ଏପରି ଚମତ୍କାର ହେଲା ଯେ, ମହା-ମହୋପାଧ୍ୟାୟଗଣ ବି ତାହାଠାରୁ ଭାଗବତ ତତ୍ତ୍ୱ ଶୁଣିବାକୁ ଲାଗିଲେ । ତାହାର ଧନର ତ ଅଭାବ ରହିଲା ନାହିଁ, ଧନ ବ୍ୟତୀତ ଅନେକ ଦ୍ରବ୍ୟ ମଧ୍ୟ ତା ଘରକୁ ବର୍ଷାଜଳ ସଦୃଶ ବହିବାକୁ ଲାଗିଲା । ଇଚ୍ଛାନୁସାରେ ସେ ତାହା ଗ୍ରହଣ କଲା । ସମସ୍ତ ମହାରାଷ୍ଟ୍ର ପ୍ରାନ୍ତରେ ତା'ର ଯଶ ଖ୍ୟାତି ବଢ଼ିଗଲା । ଏବେ ସେ ଆଉ ଇହଜଗତରେ ନାହିଁ ସତ, କିନ୍ତୁ ତାହାର ବିମଳ ଯଶ ଏବେ ବିଦ୍ୟମାନ ରହିଛି । ଏହିପରି ଶ୍ରୀମଦ୍‌ଭାଗବତର କୀର୍ତ୍ତନକାରୀ ଉପରେ ଦେବତାମାନେ ପ୍ରସନ୍ନ ହୋଇ ମନୋବାଞ୍ଛିତ ଫଳ ପ୍ରଦାନ କରନ୍ତି । ଶ୍ରୀମଦ୍‌ଭାଗବତର ସୁପ୍ରସିଦ୍ଧ ଟୀକାକାର ଶ୍ରୀଧରସ୍ୱାମୀଙ୍କ ଉପରେ ମଧ୍ୟ ନୃସିଂହ କୃପା କରିଥିଲେ । ଭାଗବତ ପାଠ କରୁଥିବା ବ୍ୟକ୍ତି ଉପରେ କେବଳ ଦେବତାମାନେ କାହିଁକି, ମୁନି-ଋଷି, ସିଦ୍ଧ, ପିତୃପୁରୁଷ, ସାଧାରଣ ମନୁଷ୍ୟ ଓ ନୃପତିଗଣ ମଧ୍ୟ ପ୍ରସନ୍ନ ହୁଅନ୍ତି । ଯିଏ ଭାଗବତ ପାଠ କରି ଭାବରେ ନିମଜ୍ଜିତ ହୋଇ ଭାଗବତ କଥା କହେ, ସେ ସାଂସାରିକ ପଦାର୍ଥ ପାଇଁ ଦୁଃଖୀ ହୁଏ ନାହିଁ ।"

ଶୌନକ ପଚାରିଲେ—"ହେ ସୂତ ! ବ୍ରାହ୍ମଣଙ୍କର ତ ମୁଖ୍ୟ ଧର୍ମ ହେଉଛି ବେଦ ପାଠ କରିବା । ବେଦ ଅଧ୍ୟୟନ କରିବାଦ୍ୱାରା ହିଁ ତାଙ୍କର ବ୍ରାହ୍ମଣତ୍ୱ ତିଷ୍ଠି ରହେ । ବେଦପାଠ ନକଲେ ତାଙ୍କୁ କୌଣସି ଶାସ୍ତ୍ର ପାଠର ଫଳ ମିଳେ ନାହିଁ ।"

ସୂତ କହିଲେ—''ହଁ ମହାରାଜ ! ଏହା ସତ କଥା ଯେ, ବ୍ରାହ୍ମଣର ମୁଖ୍ୟ କର୍ମ ନିଷ୍କାମ ଭାବରେ ବେଦପାଠ ଓ ଅଧ୍ୟାପନା କରିବା । ଶାସ୍ତ୍ରରେ କୁହାଯାଇଛି ଋଗ୍‌ବେଦ ଅଧ୍ୟୟନଦ୍ୱାରା ମଧୁ-ନଦୀ ଲାଭ ହୁଏ । ଯଜୁର୍ବେଦ ଅଧ୍ୟୟନଦ୍ୱାରା ଘୃତ-ନଦୀ ଓ ସାମବେଦ ଅଧ୍ୟୟନଦ୍ୱାରା ଦୁଗ୍ଧ-ନଦୀ ମିଳେ । ବେଦତ୍ରୟୀ ଅଧ୍ୟୟନର ମାହାତ୍ମ୍ୟ ରହିଛି । କିନ୍ତୁ ଶ୍ରୀମଦ୍ଭାଗବତରେ ତ ସମଗ୍ର ବେଦ ଓ ଶାସ୍ତ୍ରର ସାର ସିଦ୍ଧାନ୍ତ ନିହିତ ଅଛି । ତେଣୁ ବେଦପାଠରୁ ଯେଉଁ ଫଳ ମିଳେ, ସେହି ଫଳ ଭାଗବତ ପାଠରୁ ମିଳେ । ଗୀତା ଆଦିରେ ସାକ୍ଷାତ୍ ଶ୍ରୀଭଗବାନ୍ ଶ୍ରୀମୁଖରେ ଯାହାକୁ ପରମ ପଦ କହିଛନ୍ତି, ପରାଗତି କହି ଯାହା ବର୍ଣ୍ଣନା କରିଛନ୍ତି, ସେହି ପଦ ଏହି ପୁରାଣ ସଂହିତା ଆଦିକୁ ଏକାଗ୍ର ଚିତ୍ତରେ ପାଠକଲେ ସହଜରେ ପ୍ରାପ୍ତ ହୋଇଯାଏ ।''

ଶୌନକ ପଚାରିଲେ—''ହେ ସୂତ ! ଏହା ଅଧ୍ୟୟନ କରିବାଦ୍ୱାରା ସମସ୍ତଙ୍କୁ ଫଳ ପ୍ରାପ୍ତ ହୁଏ, ନା ପାତ୍ରଭେଦରେ ଫଳରେ ପାର୍ଥକ୍ୟ ରହେ ?''

ସୂତ କହିଲେ—''ହଁ ମହାରାଜ ! ପାତ୍ରଭେଦରେ, ଭାବନା ଭେଦରେ ଫଳପ୍ରାପ୍ତିର ପାର୍ଥକ୍ୟ ରହେ । ଯେପରିକି ବ୍ରାହ୍ମଣ ସର୍ବଥା 'ମୋର ବୁଦ୍ଧି ଶୁଦ୍ଧ ରହୁ' ଏହି କଥା ଚିନ୍ତା କରେ । ଏଥିପାଇଁ ସେ ନିରନ୍ତର ଗାୟତ୍ରୀ ମନ୍ତ୍ର ଜପ କରୁଥାଏ । ଗାୟତ୍ରୀ ମନ୍ତ୍ରରେ କୁହାଯାଇଛି, 'ହେ ବରେଣ୍ୟ ! ଆମ୍ଭମାନଙ୍କର ବୁଦ୍ଧିକୁ ସର୍ବଦା ଶୁଭକର୍ମ କରିବା ପାଇଁ ପ୍ରେରିତ କର ।' ଏଥିପାଇଁ ଯଦି ବ୍ରାହ୍ମଣ ଏହି ସଂହିତାକୁ ଅଧ୍ୟୟନ କରନ୍ତି, ତାହାହେଲେ ତାଙ୍କ ବୁଦ୍ଧି ନିର୍ମଳ ହୋଇଯାଏ । ସେହିପରି କ୍ଷତ୍ରିୟର ପୃଥିବୀ ପାଇଁ ଚିନ୍ତା ରହୁଥିବାରୁ ସେ ଯଦି ଶ୍ରଦ୍ଧାର ସହିତ ଏହା ପାଠ କରେ, ତାହାହେଲେ ସସାଗରାଧରାର ଶାସକ ହୋଇଯାଏ । ବୈଶ୍ୟର ସର୍ବଦା ଧନଚିନ୍ତା ରହୁଥିବାରୁ ସେ ଯଦି ଏହା ଅଧ୍ୟୟନ କରେ, ତାହାହେଲେ ତାକୁ କୋଷାଧିପତ୍ୟ ଲାଭ ହେବ । ଶୂଦ୍ର ଯଦି ଏହା ଅଧ୍ୟୟନ କରେ ବା ଶ୍ରବଣ କରେ, ତାହାହେଲେ ସେ ସମସ୍ତ ପ୍ରକାର ପାପରୁ ମୁକ୍ତ ହୋଇ ପବିତ୍ର ହୋଇଯିବ ।''

ଶୌନକ ପଚାରିଲେ—''ହେ ସୂତ ! ଆପଣ ତ ଏହି ଶ୍ରୀମଦ୍ ଭାଗବତ ସଂହିତାର ଆବଶ୍ୟକତାକୁ ଅଧିକ ପ୍ରଶଂସା କଲେ । ଏହା ବ୍ୟତୀତ ଆହୁରି ଅନେକ ଶାସ୍ତ୍ର ମଧ୍ୟ ରହିଛି । ମହାଭାରତକୁ ତ ପଞ୍ଚମବେଦ କୁହାଯାଏ । ଆପଣ କେବଳ ଏହାର ଏତେ ମହିମା କାହିଁକି ଗାନ କରୁଛନ୍ତି ? ଏଥିରେ ଏପରି କେଉଁ ବିଶେଷତ୍ୱ ଅଛି ? ଆପଣ କହିପାରନ୍ତି ଯେ, ଏଥିରେ ଭଗବାନଙ୍କ ଚରିତ୍ର ଗାନ କରାଯାଇଛି । ଏପରି କୌଣସି ଗ୍ରନ୍ଥ ନାହିଁ, ଯେଉଁଥିରେ କି ଭଗବାନଙ୍କର ନାମ ରୂପ ତଥା ଚରିତ୍ରର ଗାନ କରା ନଯାଇଛି । ବେଦରେ, ମହାଭାରତ, ରାମାୟଣ ତଥା ଅନ୍ୟ ସମସ୍ତ ପୁରାଣର ଆଦି, ମଧ୍ୟ ତଥା ଅନ୍ତଃରେ ସର୍ବତ୍ର ହିଁ ହରିଗୁଣ ଗାନ କରାଯାଇଛି । ତେଣୁ ଏ ସମସ୍ତ ଗ୍ରନ୍ଥର ପ୍ରଶସ୍ତି ଗାନ ନକରି ଆପଣ କେବଳ ଶ୍ରୀମଦ୍ଭାଗବତର ପ୍ରଶସ୍ତି କାହିଁକି ଗାନ କରୁଛନ୍ତି ? କୃପାକରି ଆମ୍ଭମାନଙ୍କର ଏହି ସଂଶୟ ଦୂର କରାନ୍ତୁ ।''

ଏହା ଶୁଣି ସୂତ ଗମ୍ଭୀର ହୋଇଗଲେ ଓ କହିଲେ—''ଭଗବନ୍ ! ମୁଁ ଆପଣଙ୍କର ଭାବ ବୁଝିପାରୁଛି । ଏପରି ପ୍ରଶ୍ନ କରି ଆପଣ ଏହାର ମାହାତ୍ମ୍ୟକୁ ଆହୁରି ପ୍ରାଞ୍ଜଳ ଭାବରେ ଶୁଣିବାକୁ ଚାହୁଁଛନ୍ତି । ଯଦି ଏଥିରେ ଅନ୍ୟାନ୍ୟ ଶାସ୍ତ୍ର ଅପେକ୍ଷା ବିଶେଷତ୍ୱ ନଥାନ୍ତା, ତାହାହେଲେ ଆପଣମାନେ ଏହାକୁ ଏତେ ଆଗ୍ରହର ସହିତ ଶ୍ରବଣ କରୁ ନଥାନ୍ତେ । ଏହାର ବିଶେଷତ୍ୱ ମୁଁ ଅନେକ ଥର କହିଛି ଓ ସେହି କଥାକୁ ଆଉ ଥରେ ମଧ୍ୟ କହୁଛି, ଆପଣମାନେ ତାହା ମନଧ୍ୟାନ ଦେଇ ଶୁଣନ୍ତୁ ।''

ଷଟ୍‌ପଦୀ

ସର୍ବ ଗ୍ରନ୍ଥନିତେ ଶ୍ରେଷ୍ଠ ଭାଗବତ— ଚରିତମନୋହର ।
ଭକ୍ତ ଭାଗବତ ବୃତ୍ତ କହେ ପଦ ପଦ ପୈ ସୁନ୍ଦର ॥
ଅବତାରନି କୀ କଥା ଚରିତ ଭକ୍ତନି କୋ ଅଘହର ।
ଭଗବନ୍ନାମ ମହାତ୍ମ୍ୟ ଛୋଡ଼ି ଜାମେଂ ନହିଁ ଦୂସର ॥
ଜୋ ଅଚ୍ୟୁତ ଅଖିଲେଶ ହୈଂ, ଜିନ କେ ଅଗନିତ ନାମ ହୈଂ ।
ତିନି କେ ପଦ ପାଥୋଜମେ, ପୁନି ପୁନି ପୁନ୍ୟ ପ୍ରନାମ ହୈଂ ॥



# କଳି-କଲୁଷ-ବିନାଶିନୀ ଭାଗବତ କଥା

**କଳିମଳସଂହତିକାଳନୋଽଖିଲେଶୋ**
**ହରିରିତରତ୍ର ନ ଗୀୟତେ ହ୍ୟଭୀକ୍ଷଣମ୍ ।**
**ଇହ ତୁ ପୁନର୍ଭଗବାନ୍‌ଶେଷମୂର୍ତ୍ତିଃ**
**ପରିପଠିତୋଽନୁପଦଂ କଥାପ୍ରସଙ୍ଗୈଃ ॥** ☆
(ଶ୍ରୀ ଭା: ୧୨ସ୍କ: ୧୨ଅ: ୬୫ଶ୍ଳୋକ)

ଷଟ୍‌ପଦୀ

ଜୀବ ଚରାଚର ରଚୈ ପ୍ରକୃତି ଅରୁ ବିକୃତି ବନାବୈଂ ।
ଆଚାରଜ୍ ବନି ସ୍ୱୟଂ ସାଧନା ସୀଖ ସିଖାବୈଂ ॥
ସତ୍ୟ ସନାତନ ଧାମ ଭୁବନପତି ଅଜ ବିଶ୍ୱମ୍ଭର ।
ଜିନକୀ ସତ୍ତା ବିନା ରହୈଂ ନହିଁ ଜଙ୍ଗମ ଥାବର ॥
ରଚନା ପାଲନ ନାସିବୌ, ଜିନିକୋ ନିତ କାମ ହୈ ।
ତିନିକେ ପାବନ ପଦନି ମେଂ, ପୁନି ପୁନି ପୁନ୍ୟ ପ୍ରନାମ ହୈ ॥

---

☆ ଶ୍ରୀଭାଗବତ ପୁରାଣରେ । କଳିର ପାପ ନାଶ କରେ ॥
ସେ ବାସୁଦେବର ମହିମା । ଗାୟନ ତାଙ୍କ ଗୁଣସୀମା ॥
ଆନ ପୁରାଣମାନଙ୍କର । ଏ ଭାବ ନୁହଁଇ ପ୍ରଚାର ॥
ଅଶେଷ ଜଗତ ମୂରତି । ଏ ଗ୍ରନ୍ଥେ ବାସୁଦେବ ସ୍ଥିତି ॥
ତାଙ୍କ ମହିମା ପଦେପଦେ । କଥା ପ୍ରସଙ୍ଗରେ ଆନନ୍ଦେ ॥
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୨ଶଅ.)

ଏହି ସଂସାରରେ ସାର କମ୍, ଅସାର ଅଧିକ । ଗହମ, ଯଅର ବୀଜକୁ ବୁଣିଲେ ସେଥିରୁ ଅଧିକ ତସୁ ବାହାରେ, ଅନ୍ନର ମାତ୍ରା କମ୍ । ଧାନ ଅମଳରେ ଅଗାଡ଼ି ଓ ଭୁଷି ଅଧିକ, ଚାଉଳ ଖୁବ୍ କମ୍ ମିଳେ । ମୁଗରେ, ବାଦାମରେ, କାଜୁରେ, ଚିଲ୍‌ଗୋଜା ଓ ଅଖ୍‌ରୋଟ ଆଦିରେ ଖାଦ୍ୟ ଉପଯୋଗୀ ରସ କମ୍ ଥାଏ ଓ ଖୋଳପା, ମଞ୍ଜି, ଚୋପା ଆଦି ଅଧିକ ଥାଏ । ବିନା ଚୋପା, ଖୋଳପା ଓ ଭୁଷିରେ ସାରପଦାର୍ଥ ତିଷ୍ଠି ରହିପାରେ ନାହିଁ । ତାହା ହିଁ ଆଧାର । ଲେମ୍ବୁ, ମୌସୁମୀ, ସନ୍ତରା ଓ କମଳାରେ ରସ ତିଷ୍ଠିରହେ କେବଳ ତା ଚୋପା ଆଦି ସକାଶେ । ରସ ନିଗାଡ଼ି ନେବାପରେ ସେସବୁ ପଦାର୍ଥକୁ ଫିଙ୍ଗି ଦିଆଯାଏ । ସେହିପରି ଅନ୍ୟାନ୍ୟ ପୁରାଣଶାସ୍ତ୍ରମାନଙ୍କରେ କେତେକ ଅନାବଶ୍ୟକ କଥା ବିସ୍ତୃତ ଭାବରେ ରହିଛି । ତହିଁରୁ ସାରଭାଗ କାଢ଼ି ନିଆଯାଇ ଅନାବଶ୍ୟକ ଭାଗଗୁଡ଼ିକୁ ତ୍ୟାଗ କରାଯିବା ପାଇଁ ଅଧିକ ପାଠଗୁଡ଼ିଏ ରଖାଯାଇଛି । କିନ୍ତୁ କେତେକ ଫଳ ଏପରି ଅଛି, ଯେଉଁଥିରେ କି କିଛି ତ୍ୟାଜ୍ୟ ଅଂଶ ନଥାଏ । ଯେପରି ଅଙ୍ଗୁର, ଅଂଜୀର ଓ ଅମରୁଦ୍ ଆଦି ଫଳ । ସେହିପରି ଶାସ୍ତ୍ରମାନଙ୍କ ମଧ୍ୟରେ ଗୋଟିଏ ଶ୍ରେଷ୍ଠ ଶାସ୍ତ୍ର ହେଉଛି ଶ୍ରୀମଦ୍ ଭାଗବତ ଶାସ୍ତ୍ର, ଯେଉଁଥିରେ କି କୌଣସି ତ୍ୟାଜ୍ୟାଂଶ ନାହିଁ ।

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କୁ ଏବେ ଅନ୍ୟାନ୍ୟ ଶାସ୍ତ୍ରର ବିଶେଷତ୍ୱ କହୁଅଛି । ଏ କଳିକାଳରେ ସାଧାରଣତଃ ଲୋକମାନଙ୍କର ପାପରେ ସ୍ୱାଭାବିକ ପ୍ରବୃତ୍ତି ରହେ । ପାପକର୍ମରେ ଲିପ୍ତ ହେବାକୁ ସେମାନେ ପଶ୍ଚାତ୍‌ପଦ ହେଉ ନାହାନ୍ତି । ଏ ଯୁଗରେ ଜପ, ତପ, ଅନୁଷ୍ଠାନ, ଚାନ୍ଦ୍ରାୟଣାଦି ବ୍ରତ, ପ୍ରାୟଶ୍ଚିତ ଆଦି ଅସମ୍ଭବ । ତେଣୁ ସମସ୍ତ ପାପ ନାଶ କରିବା ପାଇଁ ଏକମାତ୍ର ସର୍ବୋପଯୋଗୀ ସୁଗମ ସାଧନ ହେଉଛି ଭଗବାନଙ୍କ ନାମ କୀର୍ତ୍ତନ । ଅନ୍ୟାନ୍ୟ ଶାସ୍ତ୍ରରେ ହରିନାମ କୀର୍ତ୍ତନ ନ୍ୟୁନ, ଧର୍ମ, ଅଧର୍ମ ତଥା ପ୍ରବୃତ୍ତି ମାର୍ଗର ବର୍ଣ୍ଣନା ବିସ୍ତାରିତ ଭାବରେ କରାଯାଇଛି । କିନ୍ତୁ ଶ୍ରୀମଭାଗବତରେ ଭଗବନ୍ନାମ, ଅବତାର ଓ ଚରିତ୍ର ଆଦି ବିସ୍ତାରିତ ଭାବରେ ବର୍ଣ୍ଣିତ ହୋଇଛି । ଏଥିରେ ସର୍ବତ୍ର ଅବତାରଙ୍କ ଚରିତ୍ର ଗାନ କରାଯାଇଛି । ଏଥିପାଇଁ ଏହାର ନାମ ପୁରାଣ । 'ଇଦଂ ଭାଗବତଂ ନାମ ପୁରାଣଂ ବ୍ରହ୍ମ ସମ୍ମିତମ୍', ଏହା ବେଦ ସହିତ ସମାନ । କେବଳ ସମାନ ନୁହେଁ, ଏହା କଳିକାଳ ପାଇଁ ବେଦଠାରୁ ମଧ୍ୟ ଶ୍ରେଷ୍ଠ ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଆପଣ ଏପରି କ'ଣ କହୁଛନ୍ତି ? ପୁରାଣ କିପରି ବେଦଠାରୁ ଶ୍ରେଷ୍ଠ ହୋଇପାରିବ ?"

ସୂତ କହିଲେ—"ମହାରାଜ ! ବଡ଼ପଣିଆ ଓ ସାନପଣିଆ ତ କାର୍ଯ୍ୟସିଦ୍ଧିରୁ ହିଁ ଜଣାଯାଏ । ଆମେ ଅମୃତକୁ ଶ୍ରେଷ୍ଠ ବୋଲି କହିଥାଉ । ଏଥିରେ ଦେବଗଣ ତୃପ୍ତ ହୋଇଥାଆନ୍ତି । ଆମେ ଦୁଧ, ଘିଅ ଓ ଅନ୍ନ ଆଦିରେ ତୃପ୍ତ ହେଉ । ତାହା ଆମ୍ଭମାନଙ୍କ ପାଇଁ ଶ୍ରେଷ୍ଠ । ଆମ୍ଭେମାନେ ଜାଣୁ ଆଖୁ ଏକ ଶ୍ରେଷ୍ଠ ବସ୍ତୁ । ସେଥିରୁ ଗୁଡ଼, ଚିନି, କନ୍ଦ ଓ ଅନ୍ୟାନ୍ୟ ମିଠା ଜିନିଷ ତିଆରି ହୁଏ । କିନ୍ତୁ ବ୍ରାହ୍ମଣ ଭୋଜନ ଅନୁଷ୍ଠାନରେ ଦହି ସହିତ ଚିନି ଏକାନ୍ତ ଆବଶ୍ୟକ, ଏହି କାର୍ଯ୍ୟପାଇଁ ତ ଚିନି ଶ୍ରେଷ୍ଠ ବୋଲି ଗ୍ରହଣ କରାଯାଏ । ସେହିପରି ସତ୍ୟଯୁଗ, ତ୍ରେତାଦି ଯୁଗରେ ଲୋକମାନେ ବୁଦ୍ଧିମାନ୍, ବହୁଶ୍ରୁତ ତଥା ମେଧାବୀ ଥିଲେ । ଶୁଣି ଶୁଣି ସମସ୍ତ ମନେରଖି ପାରୁଥିଲେ । ସେହି ସମୟରେ ସର୍ବତ୍ର ବେଦର ପ୍ରଚାର ପ୍ରସାର ଥିଲା । ସେହି ସମୟ ପାଇଁ ତାହା ଶ୍ରେଷ୍ଠ ଥିଲା । ଯେତେବେଳେ ମୋର ପରମଗୁରୁ ବେଦବ୍ୟାସ ଦେଖିଲେ ଯେ, କଳିଯୁଗୀ ଲୋକ ଅଳ୍ପାୟୁ ତଥା ଅଳ୍ପବୁଦ୍ଧି ହେଉଥିବା ଯୋଗୁ ବେଦକୁ ଧାରଣ କରିପାରୁ ନାହାନ୍ତି, ସେତେବେଳେ ସେମାନଙ୍କ ଉପରେ କୃପାକରି ସେ ପୁରାଣ ରଚନା

କଲେ । ସ୍ତ୍ରୀ, ଶୂଦ୍ର, ଦ୍ୱିଜବନ୍ଧୁ ସମସ୍ତେ ଦ୍ୱିଜ ହୋଇଥିଲେ ମଧ୍ୟ ସେମାନଙ୍କର ବେଦ ଅଧ୍ୟୟନର ଅଧିକାର ନଥିବାରୁ ସେମାନଙ୍କ ପାଇଁ ସେ ମହାଭାରତ ରଚନା କଲେ । ଯେତେବେଳେ ସେଥିରେ ତାଙ୍କ ମନ ମାନିଲା ନାହିଁ, ସେତେବେଳେ ସେ ଦେବର୍ଷି ନାରଦଙ୍କ ଆଜ୍ଞାରେ ଏହି ଭାଗବତ ସଂହିତା ରଚନା କଲେ । ଏଥିରେ ଏହି ବିଶେଷତ୍ୱ ଅଛିଯେ, ଯେପରି ଦୁଧକୁ ଦହି ବସାଇ ତାକୁ ମନ୍ଥନ କରି ତହିଁରୁ ଲହୁଣି ବାହାର କରାଯାଏ, ସେହିପରି ଏଥିରେ ସମସ୍ତ ଶାସ୍ତ୍ରର ସାରବସ୍ତୁ ବିଶ୍ୱମୂର୍ତ୍ତି ଭଗବାନଙ୍କ ଗୁଣ ଗାନ, ଭକ୍ତଙ୍କ ମହିମା ଆଦି ବାରମ୍ବାର ପ୍ରକାଶ କରାଯାଇ ଶ୍ରୀହରିଙ୍କ ନାମ ମାହାତ୍ମ୍ୟ ପ୍ରକାଶ କରାଯାଇଛି ।''

ଶୌନକ ପଚାରିଲେ—''ହେ ସୂତ ! ଆପଣ ସତ୍ୟକଥା କହୁଛନ୍ତି । ଭାଗବତ କଥା ଶ୍ରବଣରେ ଯେତେ ସୁଖ ମିଳେ, ସେପରି ସୁଖ ଅନ୍ୟ କେଉଁଥିରୁ ମିଳେ ନାହିଁ । ଏବେ ଆମ୍ଭମାନଙ୍କୁ ଆଉ କିଛି ଶୁଣାନ୍ତୁ ।''

ସୂତ କହିଲେ—''ଏବେ କ'ଣ ଆଉ ଶୁଣାଇବି ମହାରାଜ ! ଏହାର ତ ଆଦି ନାହିଁ କି ଅନ୍ତ ନାହିଁ । ମୋର ଯାହା କହିବାର କଥା ମୁଁ କହି ସାରିଛି । ପୁନଶ୍ଚ ପରେ କେତେବେଳେ ଦେଖାଯିବ । ଏବେ ମୁଁ ନିଜର ଇଷ୍ଟଦେବ ତଥା ଗୁରୁଦେବଙ୍କୁ ପ୍ରଣାମ କରି ଏହି ପ୍ରସଙ୍ଗକୁ ଏଠାରେ ସମାପ୍ତ କରୁଛି ।''

ଶୌନକ କହିଲେ—''ହେ ସୂତ ! ଆପଣଙ୍କର ଯେପରି ଇଚ୍ଛା ସେପରି କରନ୍ତୁ । କିନ୍ତୁ ହେ ମହାନୁଭବ ! ଆମ୍ଭମାନଙ୍କର ଏପର୍ଯ୍ୟନ୍ତ ଶ୍ରବଣ କରିବାରେ ତୃପ୍ତି ହୋଇ ନାହିଁ ।''

ଶୌନକଙ୍କର ଏ କଥାରେ ସୂତ କିଛି ଉତ୍ତର ଦେଲେ ନାହିଁ । ସେ ଦୁଇହାତ ଯୋଡ଼ି ଗଦ୍‌ଗଦ୍ କଣ୍ଠରେ କହିବାକୁ ଲାଗିଲେ—

''ଅଖିଳାତ୍ମା ଶ୍ରୀହରିଙ୍କର ସତ୍ତ୍ୱ, ରଜ ଓ ତମପ୍ରଧାନ ଶକ୍ତିଗୁଡ଼ିକରୁ ଆମ୍ଭେମାନେ ବିଶ୍ୱବ୍ରହ୍ମାଣ୍ଡର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ କ୍ରିୟା ହେଉଥିବାର ଦେଖୁ । ଯିଏ ଏତେ ମହାନ୍, ତାଙ୍କର ଏହି ମହତ୍‌ପଣିଆକୁ ମନୁଷ୍ୟ ଓ ଅନ୍ୟ ଦେବତାମାନେ କାହିଁକି, ଇନ୍ଦ୍ର, ବ୍ରହ୍ମା, ଶଙ୍କର ପ୍ରଭୃତି ମଧ୍ୟ ଜାଣିପାରନ୍ତି ନାହିଁ । ସେହି ଆତ୍ମତତ୍ତ୍ୱ ସ୍ୱରୂପ ଅନନ୍ତ, ଅଜ, ଅଚ୍ୟୁତ ତଥା ଅଖିଳେଶଙ୍କୁ ମୁଁ ଶ୍ରଦ୍ଧା ଓ ଭକ୍ତି ସହକାରେ ନମସ୍କାର କରୁଛି ।

''ଯିଏ ପୃଥ୍ୱୀ, ଜଳ, ତେଜ, ବାୟୁ ଓ ଆକାଶ ବ୍ୟତୀତ ଅହଂକାର, ବୁଦ୍ଧି, ମହତତ୍ତ୍ୱ ତଥା ପ୍ରକୃତି ଏହି ନଅ ତତ୍ତ୍ୱ ସାହାଯ୍ୟରେ ନିଜ ଶକ୍ତିଦ୍ୱାରା ଏହି ଚରାଚର ଆଶ୍ରୟଭୂତ ସମଗ୍ର ସଂସାରକୁ କ୍ରୀଡ଼ା ପୁତ୍ତଳିକାରୂପେ ଗଢ଼ିଛନ୍ତି, ଖେଳୁ ଖେଳୁ ଏହି ସ୍ଥାବର ଜଙ୍ଗମରୂପ ଜଗତର ରଚନା କରିଛନ୍ତି, ସେହି ସମସ୍ତ ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ, ଜ୍ଞାନସ୍ୱରୂପ ଏକମାତ୍ର ସନାତନ ପୁରୁଷଙ୍କ ପାଦପଦ୍ମରେ ମୁଁ ବାରମ୍ବାର ପ୍ରଣାମ କରୁଛି ।

''ଯାହାଙ୍କ ଦୃଷ୍ଟିରେ ସ୍ତ୍ରୀ-ପୁରୁଷ, ଜଡ଼-ଚୈତନ୍ୟ ମଧ୍ୟରେ କୌଣସି ପ୍ରଭେଦ ନାହିଁ, ଯାହାଙ୍କର ଚିତ୍ତ ଆତ୍ମାନନ୍ଦରୂପ ମହାର୍ଣ୍ଣବରେ ନିରନ୍ତର ନିମଗ୍ନ ହୋଇ ରହିଛି, ଯାହାଙ୍କ ହୃଦୟରେ ଅଜ୍ଞାନର ଗୋଟିଏ ହେଲେ ଗ୍ରନ୍ଥି ନାହିଁ, ଯିଏ ଆତ୍ମାରାମ ଓ ପୂର୍ଣ୍ଣକାମ ହୋଇ ମଧ୍ୟ ଭଗବାନଙ୍କର ଲଳିତ ଲଲାମ ଲୀଳାଗୁଡ଼ିକୁ ଯାହାଙ୍କ ହରିଗୁଣ ଗାନରେ ଆତ୍ମାନନ୍ଦ ଜନିତ ସ୍ଥିରତା ଆକର୍ଷିତ ହୋଇଯାଇଛି, ଯିଏ ଆତ୍ମକାମ, ଯାହାଙ୍କର ଆଉ କୌଣସି କର୍ତ୍ତବ୍ୟ ବାକି ନାହିଁ, ଯିଏ ବିଧିନିଷେଧ, କର୍ତ୍ତବ୍ୟ-ଅକର୍ତ୍ତବ୍ୟ, ତ୍ୟାଜ୍ୟ-ଗ୍ରାହ୍ୟ ଆଦି ଭାବରୁ ଅତୀତ, ଯିଏ କଳି କଳ୍ମଷ କ୍ଲେଶିତ ଜୀବଗଣଙ୍କ ଉପରେ କୃପାକରି ଏହି ପରମ ପୁଣ୍ୟପ୍ରଦ ପରମାର୍ଥ ପ୍ରକାଶକ ପାବନ ପୁରାଣକୁ ପ୍ରସାର କରିଅଛନ୍ତି, ସେହି ସ୍ୱଚ୍ଛନ୍ଦବିହାରୀ, କଳିକଳ୍ମଷହାରୀ, ସର୍ବପାପ ପ୍ରହାରୀ, ଜଗଦ୍ ହିତକାରୀ ବ୍ୟାସନନ୍ଦନ ମୋର ଗୁରୁଦେବ ଭଗବାନ ଶୁକଦେବଙ୍କର ପାଦପଦ୍ମରେ

ବାରମ୍ବାର ପ୍ରଣାମ କରି ଏହି ପୁଣ୍ୟ ପ୍ରସଙ୍ଗକୁ ସମାପ୍ତ କରୁଅଛି ।'' ଏହା କହି ସୂତ ଅନେକ ସମୟ ପର୍ଯ୍ୟନ୍ତ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ ।

କିଛି ସମୟ ପରେ ଶୌନକ ପଚାରିଲେ—''ହେ ସୂତ ! ତାହାହେଲେ କ'ଣ ଏହିଠାରେ ଭାଗବତ କଥା ସମାପ୍ତ ହୋଇଗଲା ?''

ସୂତ ଅଶ୍ରୁ ପୋଛୁ ପୋଛୁ କହିଲେ—''ହଁ, ମହାରାଜ ! ଏବେ ସମାପ୍ତ ହେଲା ବୋଲି ଜାଣନ୍ତୁ । କଥା ସମାପ୍ତ ହୋଇଗଲା ସତ, କେବଳ ଉପସଂହାର ରୂପରେ ମୁଁ ଆଉ କିଛି ଭାଗବତ ସ୍ମରଣ ଓ କିଛି ପୁରାଣ ବିଷୟରୁ କହିବି । ତାହା ମଧ୍ୟ ଆପଣମାନେ ମନଧ୍ୟାନ ଦେଇ ଶୁଣନ୍ତୁ ।''

ଷଟ୍‌ପଦୀ

ଆତ୍ମାରାମ, ନିରୀହ, ନିରାମୟ ମୁନି ମମ ଗୁରୁବର ।
ଭେଦଭାବ ଦ୍ୱୈତ ରହିତ ଜ୍ଞାନ ନିଷ୍ଠା ଜିନି ଦୃଢ଼ତର ॥
ହରି ଗୁନ ସୁନିକେଁ ବଁଧେ ଭାଗବତ ଚରିତ ସୁହାୟେ ।
ନିମିତ ପରୀକ୍ଷିତ କରେ, ଜଗତ ହିତ ହରି ପ୍ରକଟାୟେ ॥
ପରମହଂସ ଅବତଂସ ମୁନି, ଶ୍ରୀଶୁକ ଜିନିକୋ ନାମ ହୈ ।
ତିନିକେ ପାବନ ପଦନି ମେଂ, ପୁନି ପୁନି ପୁନ୍ୟ ପ୍ରନାମ ହୈ ॥



# ନମୋ ନମଃ

**ଯଂ ବ୍ରହ୍ମା ବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈଃ-**
**ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ॥**
**ଧ୍ୟାନାବସ୍ଥିତତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ ।**
**ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣାଃ ଦେବାୟ ତସ୍ମୈ ନମଃ ॥** ☆

(ଶ୍ରୀ ଭା: ୧୨ସ୍କ: ୧୩ଅ: ୧ଶ୍ଳୋକ)

☆ ସୂତ ଉବାଚ :

ବ୍ରହ୍ମା ବରୁଣ ଇନ୍ଦ୍ର ଶିବ । ମରୁତ ଆଦି ଯେତେ ଦେବ ॥
ଦିବ୍ୟ ଯେ ସ୍ତୁତିମାନଙ୍କରେ । ସ୍ତୁତି କରନ୍ତି ଭାବଭରେ ॥
ଅଙ୍ଗ ଉପାଙ୍ଗ ପଦକ୍ରମ । ଉପନିଷଦ ସମେତେଣ ॥
ସାମଗାୟନେ ବିପ୍ରଜନେ । ମହିମା ଗାବନ୍ତି ବଦନେ ॥
ଧ୍ୟାନରେ ତଦଗତ ହୋଇ । ପରମଯୋଗୀ ଯାହା ଧ୍ୟାୟି ॥
ଆତ୍ମା ସ୍ୱରୂପେ ଦେଖୁଛନ୍ତି । ଯା ଅନ୍ତ କେହି ନ ଜାଣନ୍ତି ॥
ସେ ବ୍ରହ୍ମସ୍ୱରୂପ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ॥

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୩ଅ.)

ଷଟ୍‌ପଦୀ

ଜିନିକୀ ଇସ୍ତୁତି କରେଂ ବରୁନ, ଅଜ, ଇନ୍ଦ୍ର, ମରୁଦ୍‌ଗନ ।
ସସ୍ୱର ଗାବେଂ ଜିନହିଁ ବେଦବିଦ୍ ମୁନି ଯୋଗୀ ଜନ ।।
ପାଇଁ ନ ଜିନିକୋ ଅନ୍ତ ଶାରଦା, ଅଜ, ଚତୁରାନନ ।
ଶେଷ, ସୁରେଶ, ମହେଶ, ଦିନେଶ ହୁ ଦେବ ଅସୁରଗନ ।।
ଜିନିକେ ଅଗନିତ ନାମ ହୈଂ, ରୂପ ଅନୁପମ ଶ୍ୟାମ ହୈଂ ।
ତିନିକେ ପଦ ପାଥୋଜ ମେଂ, ପୁନି ପୁନି ପୁନ୍ୟ ପ୍ରନାମ ହୈଂ ।।
କୃଷ୍ଣାୟ ନମଃ ବାସୁଦେବାୟ ନମଃ ହରୟେ ନମଃ ପରମାତ୍ମନେ ନମଃ
ପ୍ରଣତକ୍ଳେଶ ନାଶାୟ ନମଃ ଗୋବିନ୍ଦାୟ ନମୋ ନମଃ ଗୋବିନ୍ଦାୟ
ନମୋ ନମଃ ଗୋବିନ୍ଦାୟ ନମୋ ନମଃ ।

ସେହି ଅନନ୍ତଶକ୍ତି ବିଶିଷ୍ଟ ଭୂମା ପୁରୁଷଙ୍କର ମହତ୍ତ୍ୱ କେହି କ'ଣ ଜାଣିପାରିବେ ? ତାଙ୍କ ମହିମା କେହି କ'ଣ ବର୍ଣ୍ଣନା କରିପାରିବେ ? ତାଙ୍କର ବଳ, ବୀର୍ଯ୍ୟ, ପରାକ୍ରମ, ଓଜ, ତେଜ, ପ୍ରଭାବ, ଗୁଣ ତଥା ଐଶ୍ୱର୍ଯ୍ୟର ମହିମା କେହି ହେଲେ କହିପାରିବେ ନାହିଁ । ଥରେ ଗରୁଡ଼ଙ୍କର ଅଭିମାନ ହେଲା—"ମୁଁ ସମସ୍ତଙ୍କଠାରୁ ଅଧିକ ବଳବାନ୍ । ମୁଁ ଭୁବନପତି ଭଗବାନ ବିଷ୍ଣୁଙ୍କର ଭାର ଅତି ସହଜରେ ବହନ କରିପାରୁଛି । ତାଙ୍କୁ ନିଜ ପିଠି ଉପରେ ବସାଇ ବିଭିନ୍ନ ସ୍ଥାନକୁ ନେଇ ପାରୁଛି । ମୁଁ ନଥିଲେ, ଭଗବାନ ବିଷ୍ଣୁ ଏତେଶୀଘ୍ର କିପରି ଯାଇପାରନ୍ତେ ?"

ଭଗବାନ ବିଷ୍ଣୁ ତା ମନକଥା ଜାଣିପାରିଲେ । ସେ ଭାବିଲେ, 'ମୋ ଭକ୍ତ ମନରେ ଯଦି ଅଭିମାନ ବଢ଼ିଯିବ, ତାହାହେଲେ ତ ସର୍ବନାଶ । ଭକ୍ତ ମନରେ ସ୍ଥାନ ପାଇଥିବା ଅଭିମାନକୁ ମୋତେ ଶୀଘ୍ର ନାଶ କରିବାକୁ ପଡ଼ିବ ।' ଏହା ଭାବି ସେ ଗରୁଡ଼ ମନରୁ ଅଭିମାନ ଦୂର କରିଦେବାକୁ ତାଙ୍କୁ ଦିନେ ପାଖକୁ ଡାକିଲେ ଓ ତାଙ୍କୁ କହିଲେ—"ଗରୁଡ଼ ! ତୁମେ ମୋର ବୋଝକୁ ଉଠାଇ ପାରୁଛ ?"

ଗରୁଡ଼ ମନ ଭିତରେ ଅଭିମାନ ଓ ବାହାରକୁ ଶିଷ୍ଟତା ପ୍ରଦର୍ଶନ ପୂର୍ବକ କହିଲା—"ତାହା ମୁଁ କିପରି ଅସ୍ୱୀକାର କରିବି ମହାପ୍ରଭୁ ! ମୁଁ ତ ସର୍ବଦା ଆପଣଙ୍କୁ ବହନ କରୁଛି ।"

ଭଗବାନ କହିଲେ—"ତୁମେ ମୋତେ ବହନ କରୁଛ ?"

ଗରୁଡ଼ କହିଲା—"ମୁଁ ନ ଉଠାଇ ଥିଲେ ଆଉ କିଏ ଉଠାଇବା ସମ୍ଭବ ହୁଅନ୍ତା ?"

ଭଗବାନ୍ କହିଲେ—"ଆଚ୍ଛା, ଠିକ୍ ଅଛି, ତୁମେ ହିଁ ମୋତେ ବହନ କରୁଛ ଏହା ମୁଁ ମାନୁଛି । ତାହାହେଲେ ମୋର ସମ୍ପୂର୍ଣ୍ଣ ଶରୀର କଥା ପଛକୁ ଥାଉ, ଏବେ ମୋର ଏହି ହାତକୁ ତୁମେ ଉଠାଅ ତ ।" ଏହା କହି ଭଗବାନ ନିଜର ଏକ ହାତର ପଂଝାକୁ ଗରୁଡ଼ ଉପରେ ଥୋଇଦେଲେ । ଗରୁଡ଼ ସେହି ପଂଝାର ବୋଝରେ ଚାପିହୋଇ ଗଲା । ସେ ସଁ ସଁ ହେବାକୁ ଲାଗିଲା । ସତେ ଯେପରି ସଙ୍ଗେ ସଙ୍ଗେ ତା ପ୍ରାଣ ଛାଡ଼ିଯିବ । ସେ ଅତି କଷ୍ଟରେ କହିଲା—"ପ୍ରଭୋ ! ମୁଁ କ'ଣ ମରିଯିବାକୁ ଆପଣ ଚାହୁଁଛନ୍ତି ? ମୋର ପ୍ରାଣ ତ ବାହାରିଯିବ ।"

ଭଗବାନ ହସି ହସି କହିଲେ—"ମୁଁ ତ ମୋ ପଂଝାକୁ ଖୁବ୍ ହାଲୁକା କରି ତୁମ ପିଠିରେ ରଖିଛି, ଏଥିରେ ତୁମର ପ୍ରାଣ ଛାଡ଼ିଯାଉଛି । କିନ୍ତୁ ଟିକିଏ ଜୋର କରି ରଖିଦେଲେ ତ ସଙ୍ଗେ ସଙ୍ଗେ ତୁମର ପ୍ରାଣବାୟୁ ଉଡ଼ିଯିବ । ସେଦିନ କହୁଥିଲ, ମୋର ସମ୍ପୂର୍ଣ୍ଣ ବୋଝ ତୁମେ ବହନ କରୁଛ ବୋଲି ?" ଭଗବାନ ସଙ୍ଗେ ସଙ୍ଗେ ଗରୁଡ଼ ଉପରୁ ହାତକୁ କାଢ଼ିଆଣିଲେ ଓ କହିଲେ—"ଗରୁଡ଼ ! ମୋତେ ଉଠାଇବାକୁ କିଏ କ୍ଷମ ହେବ ? ମୁଁ ତ ତୁମ ଉପରେ

କୃପାକରି ନିଜେ ନିଜେ ତୁମକୁ ମୋର ବାହନ କରିଛି । ମୋର ଶକ୍ତି ଅନନ୍ତ । ମୋ କରୁଣାରୁ ହିଁ ସମସ୍ତେ ସବୁକିଛି କରିବାକୁ କ୍ଷମ ହେଉଛନ୍ତି । ମୋର ଗୁଣଗାନ କରି ପାରୁଛନ୍ତି ଓ ମୋତେ ନମସ୍କାର କରି ପାରୁଛନ୍ତି ।''

ସୂତ କହିଲେ—''ମୁନିଗଣ ! ମୁଁ ଏହି ମହାମହିମ ଶ୍ରୀହରିଙ୍କୁ ବାରମ୍ବାର ନମସ୍କାର କରୁଅଛି । ତାଙ୍କ ମହିମା ଅପାର ।

''ଦେଖନ୍ତୁ, ବ୍ରହ୍ମା ସମଗ୍ର ବିଶ୍ୱର ଏକମାତ୍ର ଜନକ ଅଟନ୍ତି । ସେ ସ୍ଥାବର, ଜଙ୍ଗମ ସବୁକିଛି ସୃଷ୍ଟି କରିଛନ୍ତି । ସେହି ବ୍ରହ୍ମା ଯାହାଙ୍କୁ ଦିବ୍ୟ ସ୍ତୋତ୍ରଦ୍ୱାରା ସ୍ତୁତି କରନ୍ତି, ଉତ୍ତର ଦିଗର ଲୋକପାଳ ବରୁଣ, ସମସ୍ତ ଦେବତାଙ୍କର ଅଧୀଶ୍ୱର ଇନ୍ଦ୍ର, ଚରାଚର ସୃଷ୍ଟିର ସଂହାରକର୍ତ୍ତା ରୁଦ୍ର ଓ ଅଣଚାଶ ମରୁଦ୍‌ଗଣ ନିରନ୍ତର ଯାହାଙ୍କୁ ସ୍ତୁତି କରୁଛନ୍ତି, ତଥାପି ତାଙ୍କର ମହିମାର ଅନ୍ତ ପାଉନାହାନ୍ତି, ସେହି ଅଚିନ୍ତ୍ୟ-ମହିମା-ବିଶିଷ୍ଟ ପ୍ରଭୁଙ୍କ ସମ୍ବନ୍ଧରେ ମୁଁ ଅବା କ'ଣ କହିପାରିବି ? କେବଳ ମୁଁ ତାଙ୍କୁ ବାରମ୍ବାର ପ୍ରଣାମ କରୁଛି । ତାଙ୍କୁ ବାରମ୍ବାର ନମସ୍କାର କରି ବିଶ୍ରାମ ନେଉଛି ।''

ଶୌନକ ପଚାରିଲେ—''ହେ ସୂତ ! ବେଦ ତ ତାଙ୍କର ଭେଦ ପାଇଥିବେ ?''

ସୂତ କହିଲେ—''ମହାରାଜ ! ଯାହାଙ୍କଠାରୁ ବେଦର ଉତ୍ପତ୍ତି, ଯାହାଙ୍କୁ ବେଦଗର୍ଭ କୁହାଯାଏ, ସେହି ବ୍ରହ୍ମା ଯେତେବେଳେ ତାଙ୍କର ଭେଦ ପାଇପାରି ନାହାନ୍ତି, ପୁଣି ବେଦ କିପରି ଅବା ତାଙ୍କର ଭେଦ ପାଇପାରିବେ ? ସେ ନିଜର ଶକ୍ତି ଅନୁସାରେ ବର୍ଣ୍ଣନା କରିଛନ୍ତି । ପୁନଶ୍ଚ 'ନେତି ନେତି' କହି ଚୁପ୍ ହୋଇ ଯାଇଛନ୍ତି । ବେଦଜ୍ଞ ବ୍ରାହ୍ମଣମାନେ ଅତି ନିୟମ ସଂଯମରେ ରହି ସୂର୍ଯ୍ୟ, ଅଗ୍ନି, ଗୁରୁ ଓ ଦେବତାମାନଙ୍କୁ ଆରାଧନା କରିଥାଆନ୍ତି । ଅଙ୍ଗ, ପଦ, କ୍ରମ ତଥା ଉପନିଷଦ୍‌ଗୁଡ଼ିକ ସହିତ ସୁସ୍ୱରରେ ସାମଗାନ କରନ୍ତି, କିନ୍ତୁ ସେମାନେ ମଧ୍ୟ ଭଗବାନଙ୍କର ମହିମା ସମ୍ପୂର୍ଣ୍ଣରୂପେ ଗାନ କରିବାକୁ ଅକ୍ଷମ । କେବଳ ନିଜ ନିଜର ଶ୍ରଦ୍ଧାଞ୍ଜଳି ମାତ୍ର ସମର୍ପିତ କରୁଛନ୍ତି ।''

ଶୌନକ ପଚାରିଲେ—''ହେ ସୂତ ! ସେମାନେ ତାଙ୍କର ସମ୍ପୂର୍ଣ୍ଣ ମହିମା ଗାନ ନ କରି ପାରନ୍ତି, କିନ୍ତୁ ଯୋଗୀଜନ ନିଜ ହୃଦୟରେ ତାଙ୍କୁ ଧ୍ୟାନ ତ କରିପାରୁଥିବେ ?''

ସୂତ କହିଲେ—''ହଁ, ମହାରାଜ ! ଧ୍ୟାନଦ୍ୱାରା ମନକୁ ସ୍ଥିର କରି ଯୋଗୀମାନେ ତାଙ୍କୁ ଦର୍ଶନ କରନ୍ତି, କିନ୍ତୁ ସେମାନେ ତାହାର ଭେଦ ସମ୍ପୂର୍ଣ୍ଣରୂପେ ବୁଝିପାରନ୍ତି ନାହିଁ । ସେମାନେ ଧ୍ୟାନ କରନ୍ତି ଓ ସାକ୍ଷାତ୍ ହେବା ମାତ୍ରେ କେବଳ 'ନମୋ ନମଃ, ନମୋ ନମଃ' ଉଚ୍ଚାରଣ କରି ବାରମ୍ବାର ପ୍ରଣାମ କରନ୍ତି ।''

ଶୌନକ ପଚାରିଲେ—''ହେ ସୂତ ! ମନୁଷ୍ୟ, ଦେବତା, ଅସୁର, ଗନ୍ଧର୍ବ, ଯକ୍ଷ, ରାକ୍ଷସମାନଙ୍କ ମଧ୍ୟରୁ କେହି ହେଲେ ତ ଭଗବାନଙ୍କ ଅନ୍ତ ପାଇଥିବେ ?''

ସୂତ କହିଲେ—''ମହାରାଜ ! ମୁଁ ପୂର୍ବରୁ କହିଛି ଯେ, ବ୍ରହ୍ମାଦି ଦେବତା, ବଳି, ପ୍ରହ୍ଲାଦ ଆଦି ବଡ଼ ବଡ଼ ପ୍ରତାପଶାଳୀ ଅସୁର ମଧ୍ୟ ତାଙ୍କ ଅନ୍ତ ପାଇନାହାନ୍ତି । ସେମାନେ 'ନମୋ ନମଃ, ନମୋ ନମଃ' କହି ନମସ୍କାର କେବଳ କରିଛନ୍ତି । ସେହି ଦେବାଧିଦେବ ଭଗବାନଙ୍କ ଉଦ୍ଦେଶ୍ୟରେ ମୁଁ ବାରମ୍ବାର ନମସ୍କାର କରୁଛି । ଭଗବନ୍ ! ସେହି ଅଜିତ ଭଗବାନଙ୍କର ମହିମା ମୁଁ ଅବା କ'ଣ ବର୍ଣ୍ଣନା କରିବି ? ଦେଖନ୍ତୁ, ସମୁଦ୍ର ମନ୍ଥନରୂପୀ ଖେଳ କରିବା ପାଇଁ ସେହି ଭଗବାନ୍ ନିଜେ ଅନେକ ରୂପ ଧାରଣ କରିଥିଲେ । ଗୋଟିଏ ରୂପରେ ତ ମନ୍ଦର ପର୍ବତ ମଧ୍ୟରେ ପ୍ରବେଶ କଲେ, ଅନ୍ୟ ରୂପରେ ତାଙ୍କୁ ଖୁଆ ଭଳି କରି ମନ୍ଥନ କରିବାରେ ଲାଗିଲେ, ଏକ ରୂପରେ ଅମୃତ ନେଇ ସମୁଦ୍ର ମଧ୍ୟରୁ ବାହାରିଲେ ଓ ଅନ୍ୟ ରୂପରେ

ମୋହିନୀ ରୂପଧରି ଅମୃତ ପରିବେଷଣ କଲେ ଓ ଅନ୍ୟ ଏକ ରୂପରେ ଦେବତା ଓ ଅସୁରଙ୍କ ଭିତରେ ମିଶିଯାଇ କୂର୍ମରୂପ ଧାରଣ କରି ମନ୍ଦର ପର୍ବତକୁ ପିଠିରେ ଧାରଣ କରି ଭସାଇ ରଖିଲେ ।''

ଶୌନକ ପଚାରିଲେ—''ହେ ସୂତ ! ଭଗବାନଙ୍କ ମହିମା ଅଚିନ୍ତ୍ୟ । ସେ ଏତେ ବଡ଼ ମନ୍ଦରାଚଳକୁ ନିଜ ପୃଷ୍ଠରେ ଧାରଣ କରିବା, ଏତେ ଭାରୀ ପର୍ବତ ଓ ତା ଉପରେ ଏତେ ଅସୁର ଓ ଦେବତାମାନଙ୍କ ଭାର, ଏତେ ଶକ୍ତି ପ୍ରୟୋଗ କରି ସେମାନେ ବାସୁକୀ ନାଗଦ୍ୱାରା ତାକୁ ଭିଡ଼ାଭିଡ଼ି କରିବା ଏବଂ ସ୍ୱୟଂ ଅମିତବଳ ଭଗବାନ୍ ନିଜର ଯୁଗଳ କରକମଳରେ ମନ୍ଥନ କରିବା ସମୟରେ କୂର୍ମରୂପୀ ଭଗବାନଙ୍କର ପିଠି କ'ଣ ଛିଡ଼ିଯାଇ ନ ଥିବ ?''

ଏହା ଶୁଣି ସୂତ ହସି ହସି କହିଲେ—''ମହାରାଜ ! ଆପଣ କୂର୍ମରୂପୀ ଭଗବାନଙ୍କର ପିଠି ଛିଡ଼ିଯିବା ପ୍ରଶ୍ନ ପଚାରୁଛନ୍ତି, କିନ୍ତୁ ସେହି ସମୟରେ ତାଙ୍କୁ ମଧୁର ମଧୁର ନିଦ ଆସି ଯାଇଥିଲା ।''

ଶୌନକ ପଚାରିଲେ—''ହେ ସୂତ ! ନିଦ୍ରା ସେଠାରେ କିପରି ଭଗବାନଙ୍କୁ ଅଭିଭୂତ କଲା ?ଏତେ ଭାରୀ ପର୍ବତ ପିଠି ଉପରେ ଲଦା ହୋଇ ସର୍ବଦା ଘୂରୁଥିଲା ।''

ସୂତ କହିଲେ—''ମହାରାଜ ! ଯେପରି କୌଣସି ସୁନ୍ଦର ଶଯ୍ୟାରେ ଶୟନ କଲେ ନିଦ୍ରା ସହଜରେ ଆସିଥାଏ, ସେହିପରି ସେ ଅନୁଭବ କରୁଥିଲେ । କୋମଳାଙ୍ଗୀ ସୁନ୍ଦରୀ ପ୍ରମଦା ପାଦ ଓ ପିଠି ଧୀରେ ଧୀରେ ଚିପି ଦେଉଥିବା ସମୟରେ ଯେପରି ନିଦ୍ରା ଆସିଯାଏ, ସେହିପରି ତାଙ୍କୁ ପିଠିରେ ସେହି ଶିଳାଘର୍ଷଣ ସମୟରେ ନିଦ୍ରା ଆସି ଯାଇଥିଲା । ତାଙ୍କର ଶ୍ୱାସ ପ୍ରଶ୍ୱାସରେ ତୀବ୍ରତା ଥିଲା । ଭଗବାନଙ୍କର ସେହି ସୁଖକାରୀ ଶ୍ୱାସ ଆପଣମାନଙ୍କୁ ରକ୍ଷା କରୁ । ସେହି ଶ୍ୱାସର ପ୍ରଭାବ ଏବେ ସୁଦ୍ଧା ସମୁଦ୍ରରେ ରହିଥିବାର ପ୍ରମାଣ ମିଳୁଛି ।''

ଶୌନକ କହିଲେ—''ହେ ସୂତ ! ସମୁଦ୍ର ତ ଅନେକ ଯୁଗ ତଳେ ମନ୍ଥନ କରାଯାଇଥିଲା । ଯାହାର କି କାଳ ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । ଏ ପର୍ଯ୍ୟନ୍ତ ତାହାର ପ୍ରଭାବ କିପରି ରହିଛି ବୋଲି ଆପଣ କହୁଛନ୍ତି ?''

ସୂତ କହିଲେ—''ଦେଖନ୍ତୁ ମହାରାଜ ! ଆମେ ଜଳ ମଧ୍ୟକୁ ଏକ ଟେକା ପକାଇଲେ ତହିଁରେ ଯେଉଁ କ୍ଷୋଭ ଜାତ ହୁଏ, ତାହା ତରଙ୍ଗ ରୂପରେ କିଛି ସମୟ ପର୍ଯ୍ୟନ୍ତ ତଟଯାଏ ଦେଖିବାକୁ ମିଳେ । ଯଦି ବଡ଼ ପଥରଟିଏ ଜଳ ମଧ୍ୟକୁ ପକାଇ ଦିଆଯାଏ, ତାହାହେଲେ ଅଧିକ ସମୟ ପର୍ଯ୍ୟନ୍ତ ତରଙ୍ଗ ଉଠୁଥିବାର ଆମେ ଦେଖୁ । ଯଦି ପାହାଡ଼ ଜଳ ଗର୍ଭରେ ଭୁଷୁଡ଼ି ପଡ଼େ, ତାହାହେଲେ ଆହୁରି ଅଧିକ ସମୟ ପର୍ଯ୍ୟନ୍ତ ତରଙ୍ଗ ରହେ । ଯଦି କ୍ଷୋଭକାରୀ ଅନନ୍ତ ହୋଇଥାଆନ୍ତି, ତାହାହେଲେ ଅନନ୍ତକାଳ ପର୍ଯ୍ୟନ୍ତ ଲହରୀ ଉଠୁଥାଏ । କୂର୍ମ ଭଗବାନ ଯେତେବେଳେ ଶ୍ୱାସ ଛାଡ଼ନ୍ତି, ସେତେବେଳେ ସମୁଦ୍ରରେ ଜୁଆର ଭଟା ସୃଷ୍ଟି ହୁଏ । ଯେତେବେଳେ ପ୍ରଶ୍ୱାସ ଟାଣନ୍ତି, ସେତେବେଳେ ସମୁଦ୍ର ଶାନ୍ତ ହୋଇଯାଏ । ସେହି ଅନନ୍ତ କୃତ ଜଳରେ କ୍ଷୋଭ ହୋଇଥିଲା, ତେଣୁ ତାହା ଅନନ୍ତକାଳ ପର୍ଯ୍ୟନ୍ତ ସମୁଦ୍ରରେ ଲହଡ଼ି ବା ଜୁଆର ରୂପେ ରହିଥିବ । ଯଦି ଚ ଏବେ ସମୁଦ୍ର ମନ୍ଥନ ହେଉ ନାହିଁ, ତଥାପି କୂର୍ମ ଭଗବାନଙ୍କ ଶ୍ୱାସ ପ୍ରଶ୍ୱାସ ଯୋଗୁ ଆଜି ପର୍ଯ୍ୟନ୍ତ ସମୁଦ୍ର ଶାନ୍ତ ହୋଇପାରି ନାହିଁ । ତାହା ମଧ୍ୟ ବିଶ୍ରାମ ନେଉ ନାହିଁ । ତହିଁରେ ହିଲ୍ଲୋଳ ଉଠିବାରେ ଲାଗିଛି । ଯେଉଁ ଭଗବାନଙ୍କର ଏପରି ମହିମା, ତାଙ୍କ ପାଦପଦ୍ମରେ ଅନନ୍ତ ପ୍ରଣାମ । ତାଙ୍କୁ ବାରମ୍ବାର ନମୋ ନମଃ । ମହାରାଜ ! ଯାହାଙ୍କ କୃପାରୁ ମୁଁ ସମସ୍ତ ପୁରାଣ ମଧ୍ୟରେ ଶ୍ରେଷ୍ଠ ଏହି ମହାପୁରାଣକୁ ପଢ଼ି ଆପଣମାନଙ୍କୁ ଶୁଣାଇଲି, ସେହି ପୁରାଣପୁରୁଷ ପ୍ରଭୁଙ୍କୁ ମୋର ବାରମ୍ବାର ନମୋ ନମଃ ।''

ଶୌନକ ପଚାରିଲେ—''ପୁରାଣ କେତେ ଗୋଟି ? ତାହାର ସମାହାର କେଉଁଥିରେ ? ଭାଗବତ କାହିଁକି ସର୍ବପୁରାଣ ମଧ୍ୟରେ ଶ୍ରେଷ୍ଠ ? ଏହାର ପ୍ରତିପାଦ୍ୟ ବିଷୟ କ'ଣ ? ଏଥିରେ ପ୍ରଧାନ ବିଷୟ କେଉଁଟି ? ଏହା କହିବାର ପ୍ରୟୋଜନ କ'ଣ ? କିପରି ଏହା ଦାନ କରାଯାଏ ? ଏହାର ଦାନ ଓ ପଠନର ବିଶେଷ ଫଳ କ'ଣ ? ଏହି ସବୁକଥା ଆମ୍ଭମାନଙ୍କୁ ଗୋଟିକ ପରେ ଗୋଟିଏ ବୁଝାଇ କହନ୍ତୁ । ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ । ଆପଣ ଆମ୍ଭମାନଙ୍କୁ ଭାଗବତ କଥା ଶୁଣାଇ କୃତାର୍ଥ କରିଦେଲେ ।''

ସୂତ କହିଲେ—''ଠିକ୍ ଅଛି, ମହାରାଜ ! ମୁଁ ଆପଣମାନଙ୍କ ପ୍ରଶ୍ନର ଉତ୍ତର ଦେଉଛି, ଆପଣମାନେ ତାହା ମନଧ୍ୟାନ ଦେଇ ଶ୍ରବଣ କରନ୍ତୁ ।''

ଷଟ୍‌ପଦୀ

ଜବ କଚ୍ଛପ ବପୁ ଧାର୍‌ୟୋ ପୀଠ ଧାର୍‌ୟୋ ପ୍ରଭୁ ମନ୍ଦର ।
ଅଗନିତ ଯୋଜନ କୂଟ ଫିରୈଂ ଉପର ତୈଂ ଘର ଘର ।।
ତିନି ଏସୋ ସୁଖ ହୋଇ ନାରି ଜନୁ ପଦ ସୁହରାବୈ ।
ମନ୍ଦର ଜ୍ୟୋଂ ଜ୍ୟୋଂ ଫିରୈ ନାଥ କୁଁ ନିଦିୟା ଆବୈ ।।
ଜିନିକେ ଶ୍ୱାସ ପ୍ରଶ୍ୱାସ ତୈଂ, ଅବତକ ଉଦଧି ଅଶାନ୍ତ ଅତି ।
ତିନି ପଦ ଜେ ବନ୍ଦନ କରୈଂ, ତିନିକୀ ହୋବୈ ଶୁଦ୍ଧ ମତି ।।



# ଅଷ୍ଟାଦଶ ପୁରାଣ ମଧ୍ୟରେ ଭାଗବତ ଶ୍ରେଷ୍ଠ

**ପୁରାଣସଂଖ୍ୟାସମ୍ଭୂତିମସ୍ୟ ବାଚ୍ୟପ୍ରୟୋଜନେ ।**
**ଦାନଂ ଦାନସ୍ୟ ମାହାତ୍ମ୍ୟଂ ପାଠାଦେଶ୍ଚ ନିବୋଧତ ।।** ✯

(ଶ୍ରୀ ଭା: ୧୨ସ୍କ: ୧୩ଅ: ୩ଶ୍ଳୋକ)

ଷଟ୍‌ପଦୀ

ଦଶ ଅରୁ ଆଠ ପୁରାନ ସାର ସବ ଶାସ୍ତ୍ରନି ଲୀୟେ ।
କହେ ଭାଗବତ ଚରିତ ଭକ୍ତି ଜେ ସମ୍ପୁଟ ଦୀୟେ ।।
ଶୌନକ ପୁଛେଂ—ସୂତ ! ପୁରାନନି ସଂଖ୍ୟା ହୈ ଜିତନୀ ।
ସବକୀ ସଂଖ୍ୟା କହୋ, ଛନ୍ଦ ସଂଖ୍ୟା ହୈ ଜିତନୀ ।।
ସୂତ କହେଂ— ''ସବ ଅଠାରହ, ସୁନୀ ପିତା ଅରୁ ମୁନି ତୈଂ ।
ଚାର ଲାଖ ହୈଂ ଛନ୍ଦ ସବ, ଶ୍ରେଷ୍ଠ ଭାଗବତ ସବନି ତୈଂ ।।

✯ ପୁରାଣମାନଙ୍କ ନିର୍ଣ୍ଣୟ । ଯେ ସଂଖ୍ୟା ତହିଁର ବିଷୟ ।।
ଏହା ଶୁଣିଲେ ଯେତେ ଫଳ । ପୁରାଣ ଦାନର ସୁଫଳ ।।
(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୩ଶଅ.)

ପ୍ରଥମେ ଏକ ବେଦ ହିଁ ଥିଲା ଓ ଅନନ୍ତ ବି ଥିଲା । ତନ୍ମଧ୍ୟରୁ ଅତ୍ୟାବଶ୍ୟକ ଯୁଗୋପଯୋଗୀ ଋଚା (ଋକ୍)ଗୁଡ଼ିକୁ ବାଛି ବାଛି ବ୍ୟାସଦେବ ଏକ ବେଦ କଲେ ଓ ପରେ ତାହାକୁ ଚାରି ଭାଗରେ ବିଭକ୍ତ କରି ଋକ୍, ଯଜୁ, ସାମ ଓ ଅଥର୍ବ ନାମରେ ନାମିତ କରିଥିଲେ । ତାହାପରେ ତାହାର ଚାରି ସଂହିତା କରିଥିଲେ । ସେହିପରି ପୁରାଣ ମଧ୍ୟ ଅନନ୍ତ । ଅନନ୍ତ ଭଗବାନଙ୍କର ସମସ୍ତ ବସ୍ତୁ ହିଁ ଅନନ୍ତ । ପୂର୍ଣ୍ଣ ସବୁ ବସ୍ତୁ ହିଁ ପୂର୍ଣ୍ଣ । ଭଗବାନ ବେଦବ୍ୟାସ ପୁରାଣଗୁଡ଼ିକୁ ମଧ୍ୟ ଲୋକୋପଯୋଗୀ କରି ଅଠର ଭାଗରେ ବିଭକ୍ତ କଲେ । ତାହା ଅଷ୍ଟାଦଶ ପୁରାଣ ନାମରେ ଖ୍ୟାତ । ବାସ୍ତବରେ ପୁରାଣ ହେଉଛି ଗୋଟିଏ । ଯେପରି ମହାଭାରତ ଗ୍ରନ୍ଥ ଗୋଟିଏ ହୋଇଥିଲେ ମଧ୍ୟ ତାକୁ ଅଠର ଭାଗରେ ବିଭକ୍ତ କରାଯାଇଛି । ଶ୍ରୀମଦ୍‌ଭଗବଦ୍ ଗୀତା ହେଉଛି ଗୋଟିଏ ଗ୍ରନ୍ଥ । ତାକୁ ଯେପରି ଅଷ୍ଟାଦଶ ଅଧ୍ୟାୟରେ ବିଭକ୍ତ କରାଯାଇଛି, ସେହିପରି ସମସ୍ତର ପରିଭାଷା ଏକ, କିନ୍ତୁ ତାହାକୁ ପୁରାଣ, ଉପପୁରାଣ, ଔପପୁରାଣ ଏହିପରି ବିଭକ୍ତ କରାଯାଇ ଅଠର ଅଠର ଭାଗରେ ବାଣ୍ଟି ଦିଆଯାଇଛି । ତେଣୁ ଅଠରଟି ପୁରାଣ, ଅଠରଟି ଉପପୁରାଣ, ଅଠରଟି ଔପପୁରାଣ ଓ ଏହା ବ୍ୟତୀତ ଆହୁରି ଅଳ୍ପବହୁତ ପୁରାଣ ଆମ୍ଭେମାନେ ଦେଖିବାକୁ ପାଉ । ମୁଖ୍ୟତଃ ଅଷ୍ଟାଦଶ ପୁରାଣର ବିଶେଷ ମାହାତ୍ମ୍ୟ ରହିଛି । ସେହି ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରୀମଦ୍‌ଭାଗବତ ଅନ୍ୟତମ । ପୁରାଣରୂପୀ ମହାଗ୍ରନ୍ଥର ଶ୍ରୀମଦ୍‌ଭାଗବତ ମଧ୍ୟ ଏକ ଅଧ୍ୟାୟ । ଯେତେବେଳେ ଶ୍ରୀମଦ୍‌ଭାଗବତର ବିଷୟ ସୂଚୀ କଥା କୁହାଯାଇଛି, ସେତେବେଳେ ସଂକ୍ଷେପରେ ଅନ୍ୟ ପୁରାଣ ସମ୍ବନ୍ଧରେ କିଛି ଜାଣିନେବା ଉଚିତ୍ ।

ସୂତ କହିଲେ—''ମୁନିଗଣ ! ଆପଣମାନେ ମୋତେ ଅଷ୍ଟାଦଶ ପୁରାଣ କଥା ପଚାରିଛନ୍ତି । ପୁରାଣଗୁଡ଼ିକର ବିସ୍ତୃତ ଆଲୋଚନା ତ କରାଯିବ । ଏବେ ମୁଁ କେବଳ ଶ୍ଳୋକ ସଂଖ୍ୟା ଉପରେ କିଛି କହିବି । ପ୍ରଥମେ ଆପଣମାନେ ବ୍ରହ୍ମ ପୁରାଣର ଶ୍ଳୋକ ସଂଖ୍ୟା ଶୁଣନ୍ତୁ । ବ୍ରହ୍ମପୁରାଣ ହେଉଛି ଆଦିପୁରାଣ ଓ ଏହାର ଶ୍ଳୋକ ସଂଖ୍ୟା ଦଶ ହଜାର ।''

ଶୌନକ ପଚାରିଲେ—''ହେ ସୂତ ! ଆପଣ ପ୍ରଥମେ ବ୍ରହ୍ମପୁରାଣର ଶ୍ଳୋକ ସଂଖ୍ୟା କାହିଁକି କହୁଛନ୍ତି, ଶ୍ରୀମଦ୍‌ଭାଗବତ ବା ଅନ୍ୟ ପୁରାଣର ଶ୍ଳୋକ ସଂଖ୍ୟା କାହିଁକି କହୁ ନାହାନ୍ତି ?''

ସୂତ କହିଲେ—''ମହାରାଜ ! ମୁଁ ପ୍ରଥମରୁ କହିଛି ଯେ, ପୁରାଣ ଏକ ବଡ଼ ଗ୍ରନ୍ଥ । ତାହାର ଅଷ୍ଟାଦଶ ଅଧ୍ୟାୟ ହେଉଛି ଅଷ୍ଟାଦଶ ପୁରାଣ । ତନ୍ମଧ୍ୟରୁ ବ୍ରହ୍ମ ପୁରାଣ ପ୍ରଥମ । ଅଷ୍ଟମ ପୁରାଣ ହେଉଛି ଅଗ୍ନି ପୁରାଣ । ଅଷ୍ଟାଦଶ (ଶେଷ) ପୁରାଣଟି ହେଉଛି ବ୍ରହ୍ମାଣ୍ଡ ପୁରାଣ । ପ୍ରଥମରୁ ମୁଁ ଅଷ୍ଟାଦଶ ପୁରାଣ ସଂଖ୍ୟା କହିଛି । ଏଥିପାଇଁ ପ୍ରଥମେ ପୁରାଣର ସଂଖ୍ୟା କହୁଛି । ଏହି ଅଠର ଖଣ୍ଡ ପୁରାଣ ମଧ୍ୟରୁ ଛଅଖଣ୍ଡ ବ୍ରହ୍ମ ପୁରାଣ, ଛଅଖଣ୍ଡ ବିଷ୍ଣୁ ପୁରାଣ ଓ ଛଅଖଣ୍ଡ ରୁଦ୍ର ପୁରାଣ । ଏଥିପାଇଁ ଛଅ ସାତ୍ତ୍ୱିକ, ଛଅ ରାଜସିକ ଓ ଛଅଟି ତାମସିକ ପୁରାଣ ଅନ୍ତର୍ଗତ । ଏହାର ଆଲୋଚନା ପ୍ରସଙ୍ଗ କ୍ରମେ କରାଯିବ ।''

ଶୌନକ ପଚାରିଲେ—''ହେ ସୂତ ! ଏବେ ଆମ୍ଭେମାନେ ତାହା ବୁଝିଗଲୁ । ଆପଣ ଏବେ କହନ୍ତୁ ଅନ୍ୟାନ୍ୟ ପୁରାଣଗୁଡ଼ିକର ଶ୍ଳୋକ ସଂଖ୍ୟା କେତେ ?''

ସୂତ କହିଲେ—''ମହାରାଜ ! ଦ୍ୱିତୀୟ ପୁରାଣଟି ପଦ୍ମ ପୁରାଣ । ଏହା ବହୁତ ବଡ଼ ପୁରାଣ । ସ୍କନ୍ଦ ପୁରାଣକୁ ବାଦ ଦେଲେ ଏହାଠାରୁ ବଡ଼ ପୁରାଣ ଆଉ କୌଣସି ପୁରାଣ ନୁହେଁ । ଏହାର ଶ୍ଳୋକ ସଂଖ୍ୟା ପଞ୍ଚାବନ ହଜାର ।''

ଶୌନକ ପଚାରିଲେ—''ତୃତୀୟ ପୁରାଣଟିର ନାମ କ'ଣ ଓ ଶ୍ଳୋକ ସଂଖ୍ୟା କେତେ ?''

ସୂତ କହିଲେ—''ମହାରାଜ ! ତୃତୀୟଟି ହେଉଛି ବିଷ୍ଣୁ ପୁରାଣ । ଏହା ଦୁଇ ଭାଗରେ ବିଭକ୍ତ । ବିଷ୍ଣୁ ପୁରାଣ ଓ ବିଷ୍ଣୁ ଧର୍ମୋତ୍ତର ପୁରାଣ । ଏ ଦୁଇଟି ମିଶି ଏହାର ଶ୍ଳୋକ ସଂଖ୍ୟା ତେଇଶ ହଜାର । ଏହାକୁ ବୈଷ୍ଣବ ପୁରାଣ ମଧ୍ୟ କୁହାଯାଏ । ଚତୁର୍ଥଟି ଶୈବ ପୁରାଣ ।

''ଶୈବ ପୁରାଣରେ ଶିବ ମହିମା ବିଶେଷରୂପେ ବର୍ଣ୍ଣନା କରାଯାଇଛି । ଏହାର ଶ୍ଳୋକ ସଂଖ୍ୟା ଚବିଶ ହଜାର । ବୈଷ୍ଣବମାନେ ଯେପରି ଶ୍ରୀମଦ୍ଭାଗବତର ବିଶେଷ ଆଦର କରନ୍ତି. ସେହିପରି ଶୈବମାନେ ଶିବ ପୁରାଣକୁ ଅଧିକ ମହତ୍ତ୍ୱ ପ୍ରଦାନ କରନ୍ତି । ପଞ୍ଚମ ପୁରାଣ ହେଉଛି ଶ୍ରୀମଦ୍ଭାଗବତ ।

ଶ୍ରୀମଦ୍ଭାଗବତ ସମସ୍ତ ପୁରାଣର ତିଳକ ସ୍ୱରୂପ । ଏହାର ଶ୍ଳୋକ ସଂଖ୍ୟା ଅଠର ହଜାର । ଏଥିରେ ଶୁକ ଓ ପରୀକ୍ଷିତ ସମ୍ବାଦ ରହିଛି । ଏଥିରେ ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଚାରୁ ଚରିତ ବିଶେଷ ରୂପେ ବର୍ଣ୍ଣିତ ହୋଇଛି । ଏବେ ଷଷ୍ଠ ପୁରାଣ କଥା ଶୁଣନ୍ତୁ ।

ପୁରାଣାଚାର୍ଯ୍ୟଗଣ ନାରଦ ପୁରାଣକୁ ଷଷ୍ଠ ପୁରାଣ ବୋଲି କହିଛନ୍ତି । ଏହା ଅତ୍ୟନ୍ତ ଦିବ୍ୟ ପୁରାଣ । ଏହାର ଶ୍ଳୋକ ସଂଖ୍ୟା ପଚିଶ ହଜାର । ଏହାର ଶେଷ ଆଡ଼କୁ ଏକାଦଶୀବ୍ରତର ମାହାତ୍ମ୍ୟ ବିସ୍ତାରିତ ଭାବରେ ମୋହିନୀ ଚରିତ୍ରରେ ବର୍ଣ୍ଣନା କରାଯାଇଛି । ଏହାପରେ ସପ୍ତମ ପୁରାଣ ।

ମାର୍କଣ୍ଡେୟ ପୁରାଣକୁ ସପ୍ତମ ପୁରାଣ କୁହାଯାଏ । ଏହାର ଶ୍ଳୋକ ସଂଖ୍ୟା ନଅ ହଜାର । ଏହା ସବୁଠାରୁ ଛୋଟ, କିନ୍ତୁ ଅତି ମହତ୍ତ୍ୱପୂର୍ଣ୍ଣ ପୁରାଣ ।

ଅଗ୍ନି ପୁରାଣକୁ ଅଷ୍ଟମ ପୁରାଣ କୁହାଯାଏ । ଏହାର ଶ୍ଳୋକ ସଂଖ୍ୟା ପନ୍ଦର ହଜାର ଚାରିଶହ । ଏହାକୁ ସମସ୍ତ ଶାସ୍ତ୍ରର ସାର କୁହାଯାଏ । ଏହାପରେ ନବମ ପୁରାଣ ।

ଭବିଷ୍ୟ ପୁରାଣ ହେଉଛି ନବମ ପୁରାଣ । ଏହି ପୁରାଣ ଉପରେ ମତଭେଦ ରହିଛି । ଏହାର ଶ୍ଳୋକ ସଂଖ୍ୟା ଚଉଦ ହଜାର ପାଞ୍ଚଶହ । ଦଶମ ପୁରାଣ ହେଉଛି ବ୍ରହ୍ମବୈବର୍ତ୍ତ ପୁରାଣ । ଏହାର ଶ୍ଳୋକ ସଂଖ୍ୟା ଅଠର ହଜାର । ଏକାଦଶ ପୁରାଣ ହେଉଛି ଲିଙ୍ଗ ପୁରାଣ । ଏହାର ଶ୍ଳୋକ ସଂଖ୍ୟା ଏଗାର ହଜାର । ଦ୍ୱାଦଶ ପୁରାଣ ବରାହ ପୁରାଣ । ଏହାର ଶ୍ଳୋକ ସଂଖ୍ୟା ଚବିଶ ହଜାର । ତ୍ରୟୋଦଶରେ ସ୍କନ୍ଦ ପୁରାଣ । ଏହା ସବୁଠାରୁ ବଡ଼ ପୁରାଣ ଓ ଏଥିରେ ସମସ୍ତ ତୀର୍ଥ ସମ୍ବନ୍ଧରେ ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି । ଏହାର ଶ୍ଳୋକ ସଂଖ୍ୟା ଏକାଅଶୀ ହଜାର ଏକଶହ । ଏହା ମହାଭାରତ ଶ୍ଳୋକ ସଂଖ୍ୟ ଅପେକ୍ଷା କିଛି କମ୍ । ଚତୁର୍ଦ୍ଦଶ ପୁରାଣ ହେଉଛି ବାମନ ପୁରାଣ । ଏହା ଏକ ଛୋଟ ପୁରାଣ । ଏହାର ଶ୍ଳୋକ ସଂଖ୍ୟା ଦଶ ହଜାର । ପଞ୍ଚଦଶ ପୁରାଣର ନାମ କୂର୍ମ ପୁରାଣ । ଏହାର ଶ୍ଳୋକ ସଂଖ୍ୟା ସତର ହଜାର । ଷୋଡ଼ଶ ପୁରାଣର ନାମ ମତ୍ସ୍ୟ ପୁରାଣ । ଏଥିରେ ଚଉଦ ହଜାର ଶ୍ଳୋକ ରହିଛି । ସପ୍ତଦଶ ପୁରାଣ ହେଉଛି ଗରୁଡ଼ ପୁରାଣ । ଏଥିରେ ଅଣତିରିଶ ହଜାର ଶ୍ଳୋକ । ସର୍ବଶେଷ ତଥା ଅଷ୍ଟାଦଶ ପୁରାଣର ନାମ ବ୍ରହ୍ମାଣ୍ଡ ପୁରାଣ । ଏହାର ଶ୍ଳୋକ ସଂଖ୍ୟା ବାର ହଜାର । ଏହିପରି ସମୁଦାୟ ଅଠରଟି ପୁରାଣରେ ମୋଟ ଶ୍ଳୋକ ସଂଖ୍ୟା ଚାରିଲକ୍ଷ । ଏହି ଚାରିଲକ୍ଷ ଶ୍ଳୋକ ମଧ୍ୟରେ ଶ୍ରୀମଦ୍‌ଭାଗବତର ଅଠର ହଜାର ଶ୍ଳୋକ ରହିଛି । ଅଠରଟି ପୁରାଣ ମଧ୍ୟରୁ ଏହି ଅଠର ହଜାର ଶ୍ଳୋକ ଆସି ଏକତ୍ର ହୋଇଥିବା ଶ୍ରୀମଦ୍ଭାଗବତ ମହାପୁରାଣ ସବୁଠାରୁ ଶ୍ରେଷ୍ଠ । ଏହି ଶ୍ଳୋକଗୁଡ଼ିକ ମୂଲ୍ୟବାନ୍ ମଣି ସଦୃଶ ।

ଶୌନକ କହିଲେ—''ହେ ସୂତ ! ଆମ୍ଭେମାନେ ତ ପୁରାଣ ସମ୍ବନ୍ଧରେ ବିଶେଷରୂପେ ଶୁଣିବାକୁ ଇଚ୍ଛା କରିଥିଲୁ । କିନ୍ତୁ ଆପଣ ଏକା ନିଃଶ୍ୱାସକେ ଅତି ସଂକ୍ଷେପରେ ସମସ୍ତ ଶ୍ଳୋକ ସଂଖ୍ୟା ଗଣି କହିଦେଲେ ।''

ସୂତ କହିଲେ—"ଭଗବନ୍ ! ଆପଣମାନେ ଆଶୀର୍ବାଦ ଦିଅନ୍ତୁ, ତେବେ ମୁଁ ପୁରାଣ ବିଷୟରେ ବିସ୍ତାରିତ ଭାବରେ କହିବି । ଏଠାରେ ପ୍ରସଙ୍ଗ କ୍ରମେ କେବଳ ପୁରାଣର ସଂଖ୍ୟା ବତାଇଲି । ପୁରାଣମାନଙ୍କ ମଧ୍ୟରେ ଶ୍ରୀମଦ୍ଭାଗବତ ହିଁ ଶ୍ରେଷ୍ଠ । ଏହା ଅନାଦି ପୁରାଣ । ଯେତେବେଳେ ଭଗବାନ ବିଷ୍ଣୁଙ୍କ ନାଭି କମଳରୁ ଲୋକପିତାମହ ବ୍ରହ୍ମାଙ୍କର ଉତ୍ପତ୍ତି ହେଲା, ସେତେବେଳେ କମଳଯୋନି ବ୍ରହ୍ମା ସଂସାରର ମାୟାକୁ ଦେଖି ଡରିଗଲେ । ସେ ଚିନ୍ତା କରିବାକୁ ଲାଗିଲେ 'ମୁଁ ଯେପରି କେବେ ଏ ମାୟାଚକ୍ରରେ ନ ପଡ଼େ ।' ସଂସାର ଭୟରେ ଭୟଭୀତ ହୋଇ ନିଜର ନାଭି କମଳ ଉପରେ ବସିଥିବା ବ୍ରହ୍ମାଙ୍କୁ ଅଭୟ କରାଇବା ପାଇଁ ଭଗବାନ ବିଷ୍ଣୁ କୃପାକରି ତାଙ୍କୁ ଏହି ମହାପୁରାଣକୁ ଶୁଣାଇଲେ । ଏଥିପାଇଁ ଏହି ପୁରାଣର ଆଦି ଆଚାର୍ଯ୍ୟ ହେଉଛନ୍ତି ଭଗବାନ ବିଷ୍ଣୁ । ତେଣୁ ଏହା ସମସ୍ତ ପୁରାଣ ମଧ୍ୟରେ ଶ୍ରେଷ୍ଠତମ ଅଟେ ।"

ଶୌନକ କହିଲେ—"ହେ ସୂତ ! ଯେପରି ଅନ୍ୟ ପୁରାଣଗୁଡ଼ିକରେ କଥା ରହିଛି, ସେହିପରି ଏହି ଭାଗବତରେ ମଧ୍ୟ ରହିଛି । ତେଣୁ ଏହା ଏତେ ଶ୍ରେଷ୍ଠ ବୋଲି ଆପଣ କିପରି କହୁଛନ୍ତି ?"

ସୂତ କହିଲେ—"ମହାରାଜ ! ଅନ୍ୟାନ୍ୟ ପୁରାଣରେ ଥିବା କଥା ଓ ଏଥିରେ ଥିବା କଥା ମଧ୍ୟରେ ବହୁତ ପାର୍ଥକ୍ୟ ଅଛି । ଏହାର ଆଦି, ମଧ୍ୟ ଓ ଅନ୍ତରେ ଯେତେଗୁଡ଼ିଏ କଥା ଅଛି, ସେ ସମସ୍ତ ବୈରାଗ୍ୟରେ ଭରପୂର । ପ୍ରତ୍ୟେକ କଥାର ନିଷ୍କର୍ଷ ଏହା ପ୍ରକାଶ ପାଏ ଯେ, ଏ ସଂସାର ମିଥ୍ୟା, ଏ ସଂସାରର ଶ୍ରୀକୃଷ୍ଣଚନ୍ଦ୍ର ହିଁ ଏକମାତ୍ର ସାର ପଦାର୍ଥ ।"

ଶୌନକ କହିଲେ—"ହେ ସୂତ ! ଏଥିରେ ତ ଭଗବାନଙ୍କ ଲୀଳାର ଶୃଙ୍ଗାରପୂର୍ଣ୍ଣ କଥାମାନ ରହିଛି । ଏଥିଯୋଗୁ ମନରେ ତ ଅଧିକ ରାଗଭାବ ଉଦୟ ହେବ । ଏହାକୁ ଆପଣ ବୈରାଗ୍ୟପୂର୍ଣ୍ଣ ବୋଲି କହୁଛନ୍ତି କିପରି ?"

ଏହା ଶୁଣି ସୂତ ହସି ହସି କହିଲେ—"ମହାରାଜ ! ବିରାଗର ଅର୍ଥ ହେଉଛି ସଂସାରରୁ ରାଗ ବିଗତ ହୋଇଯିବା । ତଥା ଶ୍ରୀକୃଷ୍ଣ ଲୀଳା କଥାମୃତ ପ୍ରତି ବିଶେଷ ରାଗ ଜନ୍ମିବା । ବିରାଗର ଦୁଇଟି ଅର୍ଥ । ବିଗତ ରାଗ ଓ ବିରାଗ ତଥା ବିଶେଷଣ ରାଗବିରାଗ । ଏଥିରେ ଭଗବାନଙ୍କର ଯେଉଁ ମଧୁରାତି ମଧୁର ସରସାତି ସରସ ସୁନ୍ଦରାତି ସୁନ୍ଦର କଥାମାନ ରହିଛି, ସେ ସମସ୍ତ ସାଧୁପୁରୁଷଙ୍କୁ କେବଳ ନୁହେଁ ସୁରଗଣଙ୍କୁ ମଧ୍ୟ ଆନନ୍ଦ ପ୍ରଦାନ କରିଥାଏ । ସମସ୍ତେ ଏଥିରୁ ସୁଖ ପାଆନ୍ତି । ଏହା ହେଉଛି ପୂର୍ଣ୍ଣ ଗ୍ରନ୍ଥ । ଗ୍ରନ୍ଥରେ ଚାରିଟି କଥା ରହିଛି, ତାହା ହେଲା ବିଷୟ, ପ୍ରୟୋଜନ, ସମ୍ବନ୍ଧ ଓ ଅଧିକାରୀ । ଏଥିରୁ ଗ୍ରନ୍ଥର ମହିମା ଜାଣିହୁଏ ।"

ଶୌନକ ପଚାରିଲେ—"ହେ ସୂତ ! ଏହି ଗ୍ରନ୍ଥର ମୁଖ୍ୟ ବିଷୟ କ'ଣ ?"

ସୂତ କହିଲେ—"ଭଗବନ୍ ! ସମ୍ପୂର୍ଣ୍ଣ ବେଦାନ୍ତରେ ଯେଉଁ ସାରଭୂତ ତତ୍ତ୍ୱ ରହିଛି, ବ୍ରହ୍ମ ଓ ଆତ୍ମାର ଯେଉଁ ଏକତ୍ୱ ଲକ୍ଷଣ ରହିଛି, ଯାହାକୁକି ଅଦ୍ୱିତୀୟ ବସ୍ତୁ ବୋଲି କୁହାଯାଇଛି, ସେହି ବ୍ରହ୍ମ, ପରମାତ୍ମା, ଭଗବାନ୍ ଏହି ଗ୍ରନ୍ଥର ଆଲୋଚ୍ୟ ବିଷୟ । ଏଥିରେ ଆଦି, ମଧ୍ୟ ଓ ଅନ୍ତରେ ସର୍ବତ୍ର ତାଙ୍କରି କଥା ହିଁ ଗାନ କରାଯାଇଛି ।"

ଶୌନକ କହିଲେ—"ହେ ସୂତ ! ଏହି ଗ୍ରନ୍ଥର ପ୍ରୟୋଜନ କ'ଣ ?"

ସୂତ କହିଲେ—"ସେହି ଭଗବାନଙ୍କୁ ଆଶ୍ରୟ କରିଥିବା ବ୍ୟକ୍ତିଙ୍କୁ କୈବଲ୍ୟ ପ୍ରାପ୍ତି ହୁଏ । ସେଥିପାଇଁ ଏହି ଗ୍ରନ୍ଥର ପ୍ରୟୋଜନ ରହିଛି ।"

ଶୌନକ କହିଲେ—"ଏହାର ସମ୍ବନ୍ଧ ତତ୍ତ୍ୱ କ'ଣ ?"

ସୂତ କହିଲେ—"ଜୀବର ଭଗବାନଙ୍କ ସହିତ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ବା ମଧୁର ଯେ କୌଣସି ପ୍ରକାରର ସମ୍ବନ୍ଧ ଆଦି ଏଥିରେ ପ୍ରତିପାଦନ କରିଯାଇଅଛି । ଏହା ହିଁ ଏ ଗ୍ରନ୍ଥରେ ଥିବା ସମ୍ବନ୍ଧ ତତ୍ତ୍ୱ ।"

ଶୌନକ ପଚାରିଲେ—''ହେ ସୂତ ! ଏହାର ଅଧିକାରୀ କିଏ ?''

ସୂତ କହିଲେ—''ମହାରାଜ ! ଯେ କୌଣସି ବ୍ୟକ୍ତି ଏହି ଅସାର ସଂସାରରୁ ଉଦ୍ଧାର ପାଇବାକୁ ଇଚ୍ଛା କରୁଥିବେ ସେହି ହିଁ ଏହାର ଅଧିକାରୀ ।''

ଶୌନକ ପଚାରିଲେ—''ହେ ସୂତ ! ଆମ୍ଭେମାନେ ଭାଗବତର ବିଷୟ, ପ୍ରୟୋଜନ, ସମ୍ବନ୍ଧ ଓ ଅଧିକାରୀଙ୍କ ବିଷୟରେ ତ ଶୁଣିଲୁ । ଏବେ ଆପଣ କୃପା କରି ଶ୍ରୀମଦ୍ଭାଗବତର ଦାନ କିପରି କରାଯାଏ, ଦାନର ମାହାତ୍ମ୍ୟ କ'ଣ ଓ ଏହା ପାଠ କରିବାର ମାହାତ୍ମ୍ୟ କ'ଣ ତାହା ଆମ୍ଭମାନଙ୍କୁ କହନ୍ତୁ ।''

ସୂତ କହିଲେ—''ଠିକ୍ ଅଛି, ମହାରାଜ ! ଏବେ ମୁଁ ଆପଣମାନଙ୍କୁ ଦାନ ଓ ପାଠର ମାହାତ୍ମ୍ୟ ବିଷୟରେ କହିବି । ଆପଣମାନେ ତାହା ମନଧ୍ୟାନ ଦେଇ ଶୁଣନ୍ତୁ ।''

ଷଟ୍‌ପଦୀ

କଥା ଭାଗବତ ଲାଗୈ ଭାଗ୍ୟଶାଳୀ କୁଁ ପ୍ୟାରୀ ।
ୟହ ପୁରାନ-ସିର-ତିଲକ ଜଗତ ଜୀବନ ହିତକାରୀ ॥
ପ୍ରଥମୋ କହ୍ୟୋ ଶ୍ରୀବିଷ୍ଣୁ ବ୍ରହ୍ମ ତେଂ କରୁନା କରିକେଂ ।
ପୂରମ ଜ୍ଞାନ ବିରାଗ ଭକ୍ତି କୁଁ ପ୍ରତିପଦ ଭରିକେଂ ॥
ପରବ୍ରହ୍ମ ଜାକୋ ବିଷୟ, କହ୍ୟୋ ପ୍ରୟୋଜନ ପାବନୋଂ ।
ଅତି ଇ ଅନୁପମ ଗ୍ରନ୍ଥ ହୈ, ବିଷୟ ପରମ ମନ ଭାବନୋଂ ॥



# ଶ୍ରୀମଦ୍ଭାଗବତ ଦାନ ଓ ପାଠର ମାହାତ୍ମ୍ୟ

**ପ୍ରୌଷ୍ଠପଦ୍ୟାଂ ପୌର୍ଣ୍ଣମାସ୍ୟାଂ ହେମସିଂହସମନ୍ୱିତମ୍ ।**
**ଦଦାତି ଯୋ ଭାଗବତଂ ସ ଯାତି ପରମାଂ ଗତିମ୍ ॥** ☆

(ଶ୍ରୀ ଭା: ୧୨ସ୍କ: ୧୩ଅ: ୧୩ଶ୍ଳୋକ)

☆ ଏହା ଈଶ୍ୱର ଭାବେ ମଣି । ଆଦ୍ୟରେ ସେବିବ ଯେ ପ୍ରାଣୀ ॥
ଭାଦ୍ରବ ପୂର୍ଣ୍ଣିମା ଦିନରେ । ସୁବର୍ଣ୍ଣ ସିଂହାସନପରେ ॥
ପୁସ୍ତକମାନ ବସାଇଣ । ପୂଜା ବିଷ୍ଣୁପ୍ରୀତି ଭାବେଣ ॥
ବିପ୍ର ବୈଷ୍ଣବେ ଦେବ ଦାନ । ଯେ ଧର୍ମଶୀଳ ସୁଜ୍ଞଜନ ॥
ଦକ୍ଷିଣା ଯଥାଭାବେ ଦେବ । ବେଦ ବଚନେ ଉତ୍ସର୍ଗିବ ॥
ଅନ୍ତେ ପରମଗତି ପାଇ । ବୈକୁଣ୍ଠ ଭୁବନେ ଗମଇ ॥

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୩ଶଅ.)

ଷଟ୍‌ପଦୀ

ବ୍ରହ୍ମସୂତ୍ର କୋ ଅରଥ ସାର ବେଦନି କୋ ଅନୁପମ ।
ଦୁହ୍ୟୋ ଉପନିଷଦ ଦୂଧ ଶରକରା ତାମେ ଶମ ଦମ ।।
ଏକ ବାର ଜିନି ପିୟୋ ଶାସ୍ତ୍ର ସବ ଫୀକେ ଲାଗେଂ ।
ଛୋଡ଼ି ଅମୃତ ନର ମଧୁର ବ୍ୟରଥ ବିଷ ପୀବେଂ ଭାଗେଂ ।।
ଜ୍ୟୋଂ ସରିତନି ମେ ଗଙ୍ଗ ହୈଂ, ଶିବ ଉତ୍ତମ ବୈଷ୍ଣବନି ମେଂ ।
ଛେତ୍ରନି ମେଂ ବାରାନସୀ, ଶ୍ରେଷ୍ଠ ଭାଗବତ ସବନି ମେଂ ।।

ଏ ସଂସାରରେ ସୁବର୍ଣ୍ଣ ଦାନକୁ ସବୁଠାରୁ ବଡ଼ ଦାନ ବୋଲି ଲୋକେ କହନ୍ତି । କାରଣ ସୁବର୍ଣ୍ଣଦ୍ୱାରା ସମସ୍ତ ବସ୍ତୁ କ୍ରୟ କରାଯାଇ ପାରେ । କିନ୍ତୁ ସୁବର୍ଣ୍ଣର ଦୁରୁପଯୋଗ ମଧ ହୋଇଥାଏ । ସୁବର୍ଣ୍ଣ ପାଇ ତାହାକୁ ବିକ୍ରୟ କରିବା ଓ ତହିଁରେ ବ୍ୟଭିଚାର ଆଦି କରିବାଦ୍ୱାରା ଦାତା ଗ୍ରହୀତା ଉଭୟେ ନରକଗାମୀ ହୁଅନ୍ତି । ଏଥିପାଇଁ ଗୋଦାନ, ସୁବର୍ଣ୍ଣ ଦାନଠାରୁ ବଳି ଶ୍ରେଷ୍ଠଦାନ । ଗାଈର ଦେହରେ ସମସ୍ତ ଦେବତା ବାସ କରନ୍ତି । ଦୁହାଁଳିଆ ଗାଈ ଯାହାଙ୍କ ଗୃହରେ ରହିଥାଏ, ସେହି ଗୃହର ସମସ୍ତ ଲୋକ ଦୁଗ୍ଧ ପାନ କରିଥାଆନ୍ତି । କିନ୍ତୁ ଲୋକମାନେ ମଧ ଗାଈ ପ୍ରତି ଅବହେଳା ପ୍ରଦର୍ଶନ କରିଥାଆନ୍ତି । ଦ୍ରବ୍ୟ ଲୋଭରେ ସମୟେ ସମୟେ ଗାଈକୁ କଂସେଇକୁ ମଧ ବିକ୍ରୟ କରିଥାଆନ୍ତି । ଏହାଦ୍ୱାରା ବିକ୍ରେତା ଓ କ୍ରୟକାରୀ ଉଭୟେ ଘୋର ପାପଭାଗୀ ହୁଅନ୍ତି । ଏଥିପାଇଁ ଲୋକେ ଭୂମି ଦାନକୁ ଅଧିକ ମହତ୍ୱ ଦିଅନ୍ତି । ଏଥିରେ ଦାତା ଗ୍ରହୀତା ଉଭୟଙ୍କର କଲ୍ୟାଣ ହୁଏ । କିନ୍ତୁ ଭୂମି ଯଦି ଅପାତ୍ରକୁ ଦିଆଯାଏ, ତାହାହେଲେ ସେ ତାହାର ଦୁରୁପଯୋଗ କରେ । ଏଥିପାଇଁ ଭୂମି ଦାନ ଅପେକ୍ଷା କନ୍ୟାଦାନକୁ ମହତ୍ୱପୂର୍ଣ୍ଣ ଦାନ ବୋଲି କୁହାଯାଏ । ନିଜର କନ୍ୟାକୁ ବସ୍ତ୍ରାଭୂଷଣରେ ସୁସଜ୍ଜିତ କରି ଯୋଗ୍ୟ ବର ଦେଖି କନ୍ୟାଦାନ କରାଯାଏ । ଏହାଦ୍ୱାରା ଦାତା ଆନନ୍ଦିତ ହୁଏ ଓ ଗ୍ରହୀତା ଘରସଂସାର କରି ଆନନ୍ଦରେ ରହେ । ପିଲାପିଲି ହେଲେ ସେ ମାତୃକୁଳ, ପିତୃକୁଳ ଓ ନିଜର କୁଳ ଏହିପରି ତିନି କୁଳକୁ ଉଦ୍ଧାର କରନ୍ତି । କିନ୍ତୁ କନ୍ୟା ନହେବା ପରେ ଯଦି କୌଣସି କାରଣରୁ ମନାନ୍ତର ଆଦି ଘଟେ, ତାହାହେଲେ ଉଭୟେ କୁଳର କୀର୍ତ୍ତି ନଷ୍ଟ ହୋଇଯାଏ । ଏଥିପାଇଁ ଅନ୍ନଦାନ ଓ ଜଳଦାନରେ ପାତ୍ରାପାତ୍ରର ଭେଦଭାବ ନ ଥିବାରୁ ଯେ କୌଣସି କ୍ଷୁଧାର୍ତ୍ତ ଓ ତୃଷାର୍ତ୍ତକୁ ଅନ୍ନ, ଜଳ ଦାନ କଲେ ଜୀବନ ଦାନ ସଦୃଶ ହୋଇଥାଏ । ସେଥିରେ ତାଙ୍କର ଆତ୍ମା ତୃପ୍ତ ହୋଇଥାଏ । ତାଙ୍କ ହୃଦୟରେ ଦାତାଙ୍କ ପ୍ରତି ଆଶୀର୍ବାଦ ଦାନ ହୁଏ । କିନ୍ତୁ ଅନ୍ନ ଯାହାଙ୍କୁ ଦାନ କରାଯାଏ, ତାହା ଥରେ ମାତ୍ର ତୃପ୍ତ କରିଥାଏ । ବାରମ୍ବାର ଲୋଭରେ ଯେଉଁ ଲୋକ ଅନ୍ନଦାନ ଗ୍ରହଣ କରିବାକୁ ଆସେ, ସେଥିରେ କିଛି ଫଳ ହୁଏ ନାହିଁ । ଏଥିପାଇଁ ବିଦ୍ୟା ବା ଜ୍ଞାନଦାନକୁ ଶ୍ରେଷ୍ଠଦାନ ବୋଲି କୁହାଯାଏ । ଏହା ଜୀବନସାରା ସୁଫଳ ପ୍ରଦାନ କରିଥାଏ । ଏଥିରେ ଇହଲୋକ ଓ ପରଲୋକରେ ବ୍ୟକ୍ତି ସୁଖ ଲାଭ କରିଥାଏ । କିନ୍ତୁ ବିଦ୍ୟା ଦାନରେ ଏକ ତ୍ରୁଟି ଥିବାର ପରିଲକ୍ଷିତ ହୁଏ । ଯଦି କୌଣସି ବିଦ୍ୟାର୍ଥୀକୁ ବିଦ୍ୟାଦାନ କରାଯାଏ, କିନ୍ତୁ ସେ ଖଳପ୍ରକୃତିର ହୋଇଥାଏ, କିମ୍ବା ନିଜେ ଜ୍ଞାନ ଆହରଣ କରି ଅନ୍ୟ କାହାରିକୁ ତାହା ଦାନ କରେ ନାହିଁ, କିମ୍ବା ନିଜ ବିଦ୍ୟାର ବିକାଶ, ପ୍ରଚାର, ପ୍ରସାର ଆଦି ପାଇଁ ଯତ୍ନବାନ ହୁଏ ନାହିଁ, ତାହାହେଲେ ସେହି ବିଦ୍ୟା ତା ନିଜ ଶରୀରରେ ଜୀର୍ଣ୍ଣ ହୋଇଯାଏ । ତାହା କୌଣସି କାର୍ଯ୍ୟରେ ଆସେ ନାହିଁ । ତେଣୁ ବିଦ୍ୟାଦାନଠାରୁ ମଧ ଶ୍ରେଷ୍ଠଦାନ ହେଉଛି ସଦ୍‌ଗ୍ରନ୍ଥ ଦାନ । ଯୋଗ୍ୟପାତ୍ର ଦେଖି ଶ୍ରଦ୍ଧାର ସହିତ ଯଦି ସଦ୍‌ଗ୍ରନ୍ଥ ଦାନ କରାଯାଏ, ତାହାହେଲେ ଏଥିରେ ଦାତା ଗ୍ରହୀତା ଉଭୟଙ୍କର ଇହଲୋକ ଓ ପରଲୋକରେ ସୁଖ ମିଳେ ଓ ଉଭୟେ ଧନ୍ୟ ହୁଅନ୍ତି । ଟଙ୍କା ପଇସା, ଅନ୍ନ,

ବସ୍ତ୍ର ଆଦି ତ କିଛିକାଳ ମଧ୍ୟରେ ନଷ୍ଟ ବା ଶେଷ ହୋଇଯାଏ । କିନ୍ତୁ ଗ୍ରନ୍ଥ ତ ଚିରକାଳ ପର୍ଯ୍ୟନ୍ତ ଶେଷ ବା ବିନାଶ ନ ହୋଇ ଜାଜ୍ୱଲ୍ୟମାନ ରହେ । ଗ୍ରନ୍ଥଦାତାଙ୍କୁ ଗ୍ରହୀତା କେବେହେଲେ ଭୁଲିପାରେ ନାହିଁ । ଯେଉଁ ବ୍ୟକ୍ତି ସଦ୍‌ଗ୍ରନ୍ଥ ରଚନା କରି ଅଭାବଗ୍ରସ୍ତ ଆଗ୍ରହୀ ବ୍ୟକ୍ତିଙ୍କୁ ଦାନ କରେ ତା ଜୀବନ ଧନ୍ୟ ହୁଏ । ଗ୍ରହୀତାର ବନ୍ଧୁ ବାନ୍ଧବ ଆଦି ତାହା ପାଠ କରି ମଧ୍ୟ ଜୀବନକୁ ଧନ୍ୟ କରିଥାଆନ୍ତି । ଯଦି ଗ୍ରହୀତାଙ୍କ ବଂଶରେ କୌଣସି ଅଯୋଗ୍ୟ ବା ମୂର୍ଖ ସନ୍ତାନ ଥାଏ, ସେ ତାହାକୁ ବିକ୍ରୟ କରିଦିଏ । ତଥାପି ଯିଏ ତାହାକୁ କ୍ରୟ କରେ, ତା ବଂଶର ଲୋକେ ତାହା ପାଠ କରି ଲାଭବାନ୍ ହୁଅନ୍ତି । ସଦ୍‌ଗ୍ରନ୍ଥ ଯେଉଁଠାକୁ ଯାଏ, ସେଠାରେ ଜ୍ଞାନ ପ୍ରଚାର ପ୍ରସାର କରେ । ଏଥିପାଇଁ ଗ୍ରନ୍ଥ ଦାନ ସବୁଠାରୁ ଶ୍ରେଷ୍ଠ । ଅନ୍ୟାନ୍ୟ ଗ୍ରନ୍ଥ ଅପେକ୍ଷା ଭାଗବତ ଚରିତକୁ ଆଗ୍ରହର ସହିତ ଶ୍ରବଣ କଲେ, ପାଠୁଆ, ଅପାଠୁଆ, ବାଳକ, ବୃଦ୍ଧ, ଯୁବକ, ସ୍ତ୍ରୀ, ପୁରୁଷ ସମସ୍ତଙ୍କର ଏହି କଥା ଶୁଣିବାକୁ ସ୍ୱାଭାବିକ ଆକର୍ଷଣ ହୋଇଥାଏ । ସମସ୍ତେ ଏହି ମଧୁମୟୀ, ରସମୟୀ କଥା ଶ୍ରବଣ କରି କୃତାର୍ଥ ହୋଇଥାଆନ୍ତି । ତେଣୁ ଭଗବଦ୍ ଲୀଳା ପରିପୂର୍ଣ୍ଣ 'ଭାଗବତ କଥା' ତଥା ଶ୍ରୀମଦ୍‌ଭାଗବତ ଗ୍ରନ୍ଥ ଦାନର ମାହାତ୍ମ୍ୟ ଅନନ୍ତ । ଯଦି କୌଣସି ପର୍ବଦିନରେ, ତୀର୍ଥରେ ଏହି ଗ୍ରନ୍ଥ ଦାନ କରାଯାଏ, ତାହାହେଲେ ଦାତା ଓ ଗ୍ରହୀତା ଉଭୟଙ୍କର ବିଶେଷ ମଙ୍ଗଳ ହୋଇଥାଏ ।''

ସୂତ କହିଲେ—''ମୁନିଗଣ ! ଶ୍ରୀମଭାଗବତ ଗ୍ରନ୍ଥକୁ ଯେତେବେଳେ ଯେଉଁଠାରେ ଦାନ କରାଯାଏ ବା ଶୁଣାଯାଏ ତାହା ଶୁଭ ଓ କଲ୍ୟାଣପ୍ରଦ ହୋଇଥାଏ । ତଥାପି ଏଥିପାଇଁ ଆଷାଢ଼, କାର୍ତ୍ତିକ ଓ ଭାଦ୍ରବ ମାସର ବିଶେଷ ମହତ୍ତ୍ୱ ରହିଛି ଓ ଏହି ତିନିମାସ ମଧ୍ୟରୁ ଭାଦ୍ରବ ମାସକୁ ସବୁଠାରୁ ଅଧିକ ଫଳପ୍ରଦ ବୋଲି କୁହାଯାଇଛି ।''

ଶୌନକ ପଚାରିଲେ—''ହେ ସୂତ ! ଭାଦ୍ରବ ମାସରେ ଦାନ କରିବା ଓ ପଠନ ଶ୍ରବଣ କରିବାର ବିଶେଷତ୍ୱ କ'ଣ ?''

ସୂତ କହିଲେ—''ମହାରାଜ ! ମୋର ଗୁରୁଦେବ ଭଗବାନ ଶୁକ ଏହି ଭାଦ୍ରବ ମାସରେ ମହାରାଜ ପରୀକ୍ଷିତଙ୍କୁ ସପ୍ତାହବ୍ୟାପୀ ଭାଗବତ ଶୁଣାଇଥିଲେ । ଭାଦ୍ରବ ଶୁକ୍ଳପକ୍ଷ ନବମୀରୁ ଆରମ୍ଭ ହୋଇ ଏହା ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଠ ହୋଇଥିଲା । ଏଥିପାଇଁ ଏହି ସପ୍ତାହକୁ ଶୁକସପ୍ତାହ କୁହାଯାଏ । ଏହି ଦିନଗୁଡ଼ିକରେ ଯିଏ ଭାଗବତ ସପ୍ତାହବ୍ୟାପୀ ଶ୍ରବଣ କରନ୍ତି, ବକ୍ତା ବା ଶ୍ରଦ୍ଧାବାନ ଲୋକଙ୍କୁ ଏହି ଗ୍ରନ୍ଥ ଦାନ କରନ୍ତି, ସେ ଅକ୍ଷୟ ପୁଣ୍ୟ ଅର୍ଜନ କରନ୍ତି ।''

ଶୌନକ ପଚାରିଲେ—''ହେ ସୂତ ! ଦାନ କିପରି କରାଯାଏ ?''

ସୂତ କହିଲେ—''ଭଗବନ୍ ! ଦାତା ନିଜ ଶକ୍ତି ଅନୁସାରେ ଛୋଟ କିମ୍ବା ବଡ଼ ସୁବର୍ଣ୍ଣ ସିଂହାସନ ତିଆରି କରାଇ ତା ଉପରେ ଗ୍ରନ୍ଥକୁ ସୁନ୍ଦର ବସ୍ତ୍ରଦ୍ୱାରା ସଜାଇ ତାହାକୁ ବିଧି ବିଧାନରେ ପୂଜା କରିବେ । ତାହା ପରେ ଶୁଦ୍ଧ ସଦାଚାରୀ ଯୋଗ୍ୟ ବକ୍ତା ବା ଶ୍ରଦ୍ଧାବାନ୍ ବ୍ୟକ୍ତିଙ୍କୁ ଦାନ କରିବେ । ଏହାଦ୍ୱାରା ଦାତାଙ୍କର ପରମଗତି ହେବ ଓ ଗ୍ରହୀତାଙ୍କର ଏବଂ ତାଙ୍କ ପରିବାର ଲୋକଙ୍କର କଲ୍ୟାଣ ମଧ୍ୟ ହେବ । କାରଣ ଏହି ଗ୍ରନ୍ଥ ଅତ୍ୟନ୍ତ ସରସ ଓ ଲୋକପ୍ରିୟ ଗ୍ରନ୍ଥ ।''

ଶୌନକ କହିଲେ—''ହେ ସୂତ ! ସ୍କନ୍ଦ ପୁରାଣ ତ ଶ୍ରୀମଭାଗବତଠାରୁ ଚାରି ପାଞ୍ଚଗୁଣ ବଡ଼ । ପଦ୍ମପୁରାଣ ମଧ୍ୟ ତିନିଗୁଣରୁ ଅଧିକ । ଏହି ସବୁ ବଡ଼ ବଡ଼ ପୁରାଣ ସେତେ ଲୋକପ୍ରିୟ କାହିଁକି ହୋଇପାରି ନାହିଁ ?''

ସୂତ କହିଲେ—''ହଁ, ଭଗବନ୍ ! ମୁଁ ମଧ୍ୟ ଏଥିରେ ଆଶ୍ଚର୍ଯ୍ୟ ହେଉଛି । ସବୁ ପୁରାଣ ତ ବ୍ୟାସଦେବ ରଚନା କରିଛନ୍ତି ଓ ସବୁଥିରେ ନ୍ୟୂନାଧିକ ଭଗବାନଙ୍କ ଚରିତ୍ର ବର୍ଣ୍ଣନା କରାଯାଇଛି । ଖୁବ୍ କମ୍ ଲୋକ ଅଷ୍ଟାଦଶ ପୁରାଣର ନାମ ସୁଦ୍ଧା ଜାଣନ୍ତି, କିନ୍ତୁ ଏହି ଭାଗବତ ଗ୍ରନ୍ଥ ଦେଶ, ବିଦେଶ, ଗ୍ରାମ-ଗ୍ରାମ ଓ ଘର ଘର ସର୍ବତ୍ର ପ୍ରଚାରିତ ଓ ଆଦୃତ ହୋଇ ଆସୁଛି ।

ଯେଉଁଠି ଦେଖ, ସେଠି ଭାଗବତ ସପ୍ତାହ ପାଳିତ ହେଉଛି । ଗ୍ରାମେ ଗ୍ରାମେ ଭାଗବତଟୁଙ୍ଗୀ । ଅନ୍ୟାନ୍ୟ ପୁରାଣର କଥା ସେହି ପର୍ଯ୍ୟନ୍ତ ଭଲ ଲାଗୁଥାଏ, ଯେ ପର୍ଯ୍ୟନ୍ତ ଭାଗବତ କଥା ଲୋକେ ଶୁଣି ନଥାନ୍ତି । ଯେତେବେଳେ କାନରେ ଭାଗବତ କଥା ପଡ଼ିଯାଏ, ସେତେବେଳେ ସମସ୍ତେ ଏହାର ଉପାଦେୟତା ଅନୁଭବ କରନ୍ତି । ସମସ୍ତେ କହନ୍ତି—'ଆମେ ଭାଗବତ କଥା' ଶୁଣିବୁ, ଆମକୁ ତାହା ଶୁଣାନ୍ତୁ । ଏଥିପାଇଁ ସତ୍‌ପୁରୁଷଙ୍କ ସଭାରେ ନିତ୍ୟ ନିୟମ ଅନୁସାରେ ଶ୍ରୀମଦ୍ଭାଗବତ ରୂପକ ଅମୃତ ସାଗରର ଲହରୀ ସର୍ବଦା ଉଠୁଥାଏ । ଏହି ଗ୍ରନ୍ଥ ଉପନିଷଦ ରୂପକ ଦୁଗ୍ଧର ସାରାତିସାର ନବନୀତ ଅଟେ । ଯିଏ ଭାଗବତ ରୂପକ ଅମୃତ କୁଣ୍ଡରେ ଥରେ ବୁଡ଼ିଛି, ତାହାର ମନ ଅନ୍ୟ କୌଣସିରେ ବିଚଳିତ ହୁଏ ନାହିଁ । ମିଶ୍ରି ମିଶ୍ରିତ ଭାଗବତ ରୂପକ ନବନୀତ ଆସ୍ୱାଦନ କରିବା ପରେ ଅନ୍ୟାକିଛି ଆସ୍ୱାଦନ କରିବାକୁ ଇଚ୍ଛା ହୁଏ ନାହିଁ । ଭାଗବତରୂପୀ ଦିବ୍ୟ ସାଗରରେ ସ୍ନାନ କରିବା ପରେ ଆଉ ଅନ୍ୟ କୌଣସିଠାରେ ସ୍ନାନ କରିବାକୁ ମନ ବଳେ ନାହିଁ '। ମୁନିଗଣ ! ଆପଣମାନେ ଏହା ତ ବିସ୍ତାରିତ ଭାବରେ ଶ୍ରବଣ କଲେ, ଏବେ ଆପଣମାନେ ନିଜ ନିଜର ଅନୁଭୂତି ଶ୍ରବଣ କରାନ୍ତୁ ।''

ଶୌନକ କହିଲେ—''ହେ ସୂତ ! ଆମ୍ଭେମାନେ ଆଉ କ'ଣ କହିବୁ ! ଆଉ ଆମ୍ଭମାନଙ୍କର କିଛି କହିବାର ନାହିଁ । ଏହି ଗ୍ରନ୍ଥ ତ ଅନୁପମେୟ ଗ୍ରନ୍ଥ । ଆମ୍ଭେମାନେ ଏହାର ଉପମା ଦେବାକୁ ଅକ୍ଷମ ।''

ସୂତ କହିଲେ—''ମୁନିଗଣ ! ଆପଣମାନେ ଧନ୍ୟ । ଆପଣମାନେ ଶ୍ରୀମଦ୍ଭାଗବତ ରସାମୃତରେ ସଂତୃପ୍ତ । ମହାନୁଭାବଗଣ ! ସମସ୍ତ ନଦୀ ତ ଉତ୍ତମ । ତେଣୁ ସମୁଦ୍ରଗା ନଦୀଗୁଡ଼ିକ ପୂଜ୍ୟ ଅଟନ୍ତି । କିନ୍ତୁ ତ୍ରିପଥଗାଗଙ୍ଗାର ସରିତକୁ ସର୍ବଶ୍ରେଷ୍ଠ ବୋଲି ଗ୍ରହଣ କରାଯାଉଛି । ସମସ୍ତ ଦେବତା ପୂଜ୍ୟ, କିନ୍ତୁ ସମସ୍ତଙ୍କ ମଧ୍ୟରେ ଭଗବାନ ବିଷ୍ଣୁଙ୍କୁ ସବୁଠାରୁ ଶ୍ରେଷ୍ଠ ବୋଲି ସ୍ୱୀକାର କରାଯାଏ । ସମସ୍ତ ବୈଷ୍ଣବ ପୂଜ୍ୟ, କିନ୍ତୁ ଭଗବାନ ରୁଦ୍ରଙ୍କ ଭଳି ସମସ୍ତେ ହୋଇ ନ ପାରନ୍ତି । ସେହିପରି ସମସ୍ତ ପୁରାଣ ଶ୍ରେଷ୍ଠ । ସବୁଥିରେ ଲୋକଙ୍କର ଜ୍ଞାନ ବିଜ୍ଞାନ ଭରି ରହିଛି, କିନ୍ତୁ ଯେଉଁ କଥା ଶ୍ରୀମଦ୍ଭାଗବତରେ ରହିଛି, ତାହା ଅନ୍ୟତ୍ର ନାହିଁ । ଏହି ଗ୍ରନ୍ଥ ସମସ୍ତ ପୁରାଣ ମଧ୍ୟରେ ସର୍ବୋତ୍ତମ, ଶୀର୍ଷ ସ୍ଥାନୀୟ । ଯେପରି କ୍ଷେତ୍ରମାନଙ୍କ ମଧ୍ୟରେ ବାରାଣସୀକୁ ସର୍ବଶ୍ରେଷ୍ଠ କ୍ଷେତ୍ର ବୋଲି କୁହାଯାଏ, ସେହିପରି ପୁରାଣମାନଙ୍କ ମଧ୍ୟରେ ଭାଗବତ ସର୍ବଶ୍ରେଷ୍ଠ ପୁରାଣ । ମୁନିଗଣ ! ମୁଁ ଆଉ କେତେ ଶ୍ରୀମଦ୍ଭାଗବତର ଗୁଣ ଗାନ କରିବି ? ଶେଷଦେବ ଓ ଶାରଦା ଯାହାର ମହିମାର ଅନ୍ତ ପାଇପାରି ନାହାନ୍ତି, ମୋ ଭଳି ଅଳ୍ପମତି ତାହା କିପରି ଅବା ପାଇ ପାରିବ ? ତେଣୁ ମୁଁ ଏହି ଗ୍ରନ୍ଥକୁ, ଗ୍ରନ୍ଥରଚୟିତାଙ୍କୁ, ଗ୍ରନ୍ଥର ପ୍ରବକ୍ତା ମୋର ଗୁରୁଦେବଙ୍କୁ ଓ ଯେଉଁମାନେ ଏଥିରେ ସର୍ବତ୍ର ଓତପ୍ରୋତ ସେହି ଭଗବାନ ଶ୍ରୀକୃଷ୍ଣଙ୍କୁ ବାରମ୍ବାର ପ୍ରଣାମ କରି ଏହି ଗ୍ରନ୍ଥକୁ ପୂର୍ଣ୍ଣ କରିବି ।''

ଷଟ୍‌ପଦୀ

ଅତି ଇ ନିରମଲ ଚରିତ ଭାଗବତ ଭକ୍ତନି କୋ ଧନ ।
ଜା ମେଂ ଜ୍ଞାନ ବିଶୁଦ୍ଧ ଭକ୍ତି ଭଗବତ କୋ ବରନନ ।।
କରମ, ତ୍ୟାଗ, ବୈରାଗ୍ୟ ଯଥାଥଲ ସବଇ ଭାଖେ ।
ଅତି ସମାସ ସବ କହେ ଶେଷ କୋଇ ନହିଁ ରାଖେ ।।
ଶ୍ରବନ ମନନ ଅରୁ ପାଠ ନିତ, କରେଂ ପ୍ରେମତେଂ ନାରି ନର ।
ଦେହିଁ ଭକ୍ତି ଅରୁ ମୁକ୍ତି ତିନି, ପ୍ରଭୁ ପରମେଶ୍ୱର ପରାବର ।।



# "ସତ୍ୟଂ ପରଂ ଧୀମହି"

**କସ୍ମୈ ଯେନ ବିଭାସିତୋଽୟମତୁଲୋ ଜ୍ଞାନପ୍ରଦୀପଃ ପୁରା ।**
**ତଦ୍‌ରୂପେଣ ଚ ନାରଦାୟ ମୁନୟେ କୃଷ୍ଣାୟ ତଦ୍‌ରୂପିଣା ॥**
**ଯୋଗୀନ୍ଦ୍ରାୟ ତଦାତ୍ମନାଥ ଭଗବଦ୍‌ରାତାୟ କାରୁଣ୍ୟତଃ-**
**ତଚ୍ଛୁଦ୍ଧଂ ବିମଳଂ ବିଶୋକମମୃତଂ ସତ୍ୟଂ ପରଂ ଧୀମହି ॥** ☆

(ଶ୍ରୀ ଭା: ୧୨ସ୍କ: ୧୩ଅ: ୧୯ଶ୍ଳୋକ)

ଷଟ୍‌ପଦୀ

ହରିନେ ଅଜତେଂ କହ୍ୟୋ ପ୍ରଥମ ଅଜ ନାରଦ ପାହୀଂ ।
ନାରଦ ତେଂ ମୁନି ବ୍ୟାସ ବ୍ୟାସ ଶୁକ ଦିୟୋ ପଢ଼ାହୀଂ ॥
ନୃପତି ପରୀକ୍ଷିତ୍ ନିକଟ କହ୍ୟୋ ଶୁକ ହୌଂ ସୁନି ଲିୟୌ ।
ଜୈସୋ କଛୁ ବନି ପର୍‌ୟୋ ତାହି ତୁମ ସବକୁଁ ଦୀୟୌ ॥
ଜିନି ତେଂ ନିକସ୍ୟୋ ଚରିତ ୟହ, ସୋ ହରି ସୁଖ କେ ଧାମ ହୈଂ ।
ମୋଇ ଦୟୋ ଗୁରୁଦେବ ନେ, ଉଭୟ ପଦନି ପରନାମ ହୈଂ ॥

ଭଗବାନ ଅନାଦି, ଜୀବ ଅନାଦି, ଜଗଦ୍ ଅନାଦି, ଜ୍ଞାନ ଅନାଦି ଓ ଅଜ୍ଞାନ ବି ଅନାଦି । ଏ ସଂସାରରେ କିଛି ହେଲେ ଏବର ନୁହେଁ । କିଛି ବି ନୂତନ ନୁହେଁ । ସବୁକିଛି ପୁରାଣ ହିଁ ପୁରାଣ, ଅର୍ଥାତ୍ ପୁରାତନ । ଏଥିପାଇଁ ପୁରାଣ ମଧ୍ୟ ଅନାଦି । ଆପଣମାନେ ଆଶ୍ଚର୍ଯ୍ୟ ହେବେ ଯେ, ଜ୍ଞାନକୁ ମଧ୍ୟ ଅନାଦି କହିବା ଉଚିତ୍, କିନ୍ତୁ ଅଜ୍ଞାନକୁ କାହିଁକି ଅନାଦି ବୋଲି କହିବେ ? ଆପଣମାନେ ଏହା ଧ୍ୟାନପୂର୍ବକ ବିଚାର କରନ୍ତୁ । ଉତ୍ପନ୍ନ ହେବାମାତ୍ରେ ଭଗବାନ କମଳାସନ ଏ ଭବସାଗରକୁ ଦେଖି ଭୟଭୀତ ହେଲେ । ଯଦି ଏହି ଅଜ୍ଞାନର ପ୍ରବାହ ଅନାଦି ନ ହୋଇଥାନ୍ତା, ତାହାହେଲେ ସୃଷ୍ଟି ଆରମ୍ଭରେ ଭବ ଓ ଭୟର ପ୍ରଶ୍ନ କାହିଁକି ଉଠନ୍ତା ? ପ୍ରଥମେ କେଉଁଠାରେ ସୁପ୍ତ ଅବସ୍ଥାରେ ଥିବାରୁ ସିନା ବ୍ରହ୍ମା ଉତ୍ପନ୍ନ ହେବାମାତ୍ରେ ତାହା ଦେଖି ଚମକି ପଡ଼ିଲେ । ସେତେବେଳେ ଜ୍ଞାନସ୍ୱରୂପ ଭଗବାନ୍ ଭାଗବତ ପ୍ରଦୀପ ନେଇ

---

☆ ଏ ଜ୍ଞାନ-ପ୍ରଦୀପ ପୁରାଣ । ବ୍ରହ୍ମାରେ ଦେଲେ ନାରାୟଣ ॥
ବ୍ରହ୍ମା ନାରଦଙ୍କୁ କହିଲେ । ନାରଦ ବ୍ୟାସେ ପୁଣ ଦେଲେ ॥
ସେ ବ୍ୟାସ ଶୁକଦେବେ କହି । ଶୁକ ଯେ ପରୀକ୍ଷେ ବୁଝାଇ ॥
ସେଠାରୁ ଜଗତେ ବିଖ୍ୟାତ । ନାମ ଯେ ଶିରୀଭାଗବତ ॥
ଏବଂଭୂତ ଯେ ଶୁକଦେବ । ତା ପାଦେ ଧ୍ୟାନ ମୋ ରହିବ ॥
ବ୍ରହ୍ମା ବରୁଣ ଇନ୍ଦ୍ର ଦେବ । ଦିବ୍ୟ ସ୍ତୁତିରେ ସ୍ଥିତିଭାବ ॥
ଆତ୍ମା-ସ୍ୱରୂପେ ଦେଖୁଛନ୍ତି । ଯା ଅନ୍ତ କେହି ନ ଜାଣନ୍ତି ॥
ସେ ବ୍ରହ୍ମରୂପୀ ଯେ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ॥

(ଭାଗବତ : ଜଗନ୍ନାଥ ଦାସ : ୧୨ସ୍କ . ୧୩ଶଅ.)

ତାଙ୍କର ଅଜ୍ଞାନାନ୍ଧକାରକୁ ଦୂର କଲେ । ସେ ବ୍ରହ୍ମସ୍ୱରୂପ ଦର୍ଶନ କରି ଅଭୟ ହୋଇଗଲେ । ବ୍ରହ୍ମାଙ୍କ ହୃଦୟରୁ ସେହି ଅଜ୍ଞାନରୂପୀ ଅନ୍ଧକାର ଦୂର ହେଲା । ଯଦି ବ୍ରହ୍ମା ସାଧାରଣ ଲୋକଙ୍କ ଭଳି ଭୀରୁ ହୋଇଥାଆନ୍ତେ, ତାହାହେଲେ ତ ମୃତ୍ୟୁବରଣ କରିଥାଆନ୍ତେ । କିନ୍ତୁ ସେ ଅନାଦି ହୋଇ ରହିଥିଲେ ଓ ରହିଲେ । ସେ ଜ୍ଞାନଦୀପକୁ ପାଇ ଜ୍ଞାନସ୍ୱରୂପ ହୋଇଗଲେ । ଏବେ ଭୟ ରହନ୍ତା କେଉଁଠି, ଅବା କିପରି ? ବ୍ରହ୍ମାଙ୍କର ମାନସ ପୁତ୍ର ନୈଷ୍ଠିକ ବ୍ରହ୍ମଚାରୀ ନାରଦଙ୍କ ଶରୀରରେ ସେ ଆବେଶ ହୋଇଗଲେ । ନାରଦଙ୍କୁ ମଧ୍ୟ ଭୟ ହେଲା । ସେ ଧାଇଁ ଯାଇ ପିତାଙ୍କ ଶରଣ ପଶିଲେ । ବ୍ରହ୍ମା ତାଙ୍କ ଦୁର୍ଦ୍ଦଶା ଦେଖି ହସି ଉଠିଲେ । ସେ ଜାଣିପାରିଲେ ଯେ, ସେହି ଭବଭୟ ରୂପୀ ଭୂତ ମୋ ପୁତ୍ର ଶରୀରରେ ଆବେଶ କରିଯାଇଛି । ଭଗବାନ ତାଙ୍କୁ ଯେଉଁ ଅଖଣ୍ଡ, ଅନାଦି, ଏକରସ ପରିପୂର୍ଣ୍ଣ ଦୀପ ପ୍ରଦାନ କରିଥିଲେ, ସେ ତାହା ନାରଦଙ୍କୁ ଦେଇଦେଲେ । ନାରଦ ମଧ୍ୟ ବ୍ରହ୍ମ ହୋଇଗଲେ । ପୂର୍ଣ୍ଣରୁ ପୂର୍ଣ୍ଣ ଦେଇଦେବା ପରେ ବ୍ରହ୍ମାଙ୍କର ପୂର୍ଣ୍ଣତାରେ କୌଣସି ନ୍ୟୂନତା ପରିଲକ୍ଷିତ ହେଲା ନାହିଁ । ନାରଦ ମଧ୍ୟ ପରିପୂର୍ଣ୍ଣ ହୋଇଗଲେ । ସେହି ଭବଭୟ ଭୂତ ଚିନ୍ତାରୂପୀ ଭୂତିନୀ ବେଶ ଧାରଣକରି ନାରଦଙ୍କ ଝିଅାରୀର ପୁତ୍ର ବ୍ୟାସଙ୍କ ଚିତ୍ତରେ ଆବେଶ କରିଗଲା । ନାରଦ ତ ବ୍ରହ୍ମରୂପ ହୋଇ ସାରିଥିଲେ । ସେ ଭ୍ରମଣ କରି କରି ଯାଇ ବ୍ୟାସଙ୍କ ଆଶ୍ରମରେ ପହଞ୍ଚିଲେ ଓ ଜ୍ଞାନ ପ୍ରଦୀପଦ୍ୱାରା ସେହି ଭୂତିନୀକୁ ବ୍ୟାସଙ୍କ ଚିତ୍ତରୁ ତଡ଼ିଲେ । ତାଙ୍କୁ ଚିନ୍ତା ହେଲା, ସେ ଯେପରି ଆଉ କେବେହେଲେ ବ୍ୟାସଙ୍କ ଶରୀରରେ ପ୍ରବେଶ ନକରୁ । ତେଣୁ ସେ ସେହି ଜ୍ଞାନପ୍ରଦୀପକୁ ନିଜର ପରମହଂସ ପୁତ୍ରରୂପୀ ବ୍ୟାସଙ୍କୁ ଦେଇଦେଲେ । ସେ ମଧ୍ୟ ତାହା ପାଇ ଭଗବାନଙ୍କ ସ୍ୱରୂପ ହୋଇଗଲେ । ସେହି ଭବଭୟ ଯାଇ କଳିଯୁଗ ରୂପ ଧାରଣ କରି ରାଜା ପରୀକ୍ଷିତଙ୍କ ଦେହରେ ଆବେଶ କଲା । ସାଧୁସ୍ୱଭାବ ପରୋପକାରୀ ପରମହଂସ ଶ୍ରୀଶୁକଦେବଙ୍କ ହୃଦୟରେ ଥିବା କରୁଣା କହିଲା—'ଆପଣ କାହିଁକି ଏହି ଧର୍ମାତ୍ମା ରାଜାଙ୍କ ଭବଭୟ ଭୂତକୁ ଭବ୍ୟ ଚିତାଭସ୍ମ ଦେଇ ତଡ଼ିଦେଉ ନାହାନ୍ତି ?' କରୁଣାର କଥା ମାନି ଭଗବାନ ଶୁକ ରାଜାଙ୍କର ଭୟ ଦୂର କଲେ । ସେ ତାଙ୍କୁ କଳିକଲ୍ମଷହାରିଣୀ ଔଷଧ ଦେଇଦେଲେ । ଯେଉଁ ଜ୍ଞାନପ୍ରଦୀପ କେବେହେଲେ ନ ଲିଭିବ ତାହା ତାଙ୍କ ହୃଦୟରେ ସ୍ଥାପନ କଲେ । ତାହା ପାଇ ରାଜା ନିର୍ଭୟ ହୋଇଗଲେ । ସୂତ ଚିନ୍ତା କଲେ—'ମୁଁ ମୋର ରିକ୍ତ ହସ୍ତରେ ତାହା ମଧ୍ୟ ଗ୍ରହଣ କରିନିଏ ।' ଏହା ଭାବି ସେ ମଧ୍ୟ ତାହା ପ୍ରାପ୍ତ ହେଲେ ଓ ଭବଭୟରେ ଭୀତ ହୋଇଥିବା ନୈମିଷାରଣ୍ୟର ଅଠାଅଶୀ ହଜାର ମୁନିଙ୍କୁ ତାହା ଦେଖାଇଲେ । ସେଠାରୁ ବିଦା ହୋଇ ସେହି ଭବଭୟ ରୂପୀ ଭୂତ କଳିଯୁଗ ରୂପରେ ସମଗ୍ର ପୃଥିବୀରେ ବ୍ୟାପିଗଲା । ହେ କଳିଯୁଗୀ ଜୀବ ! ତୁମ୍ଭେମାନେ ଯଦି ଏହି ଭୂତକୁ ତଡ଼ିବାକୁ ଚାହୁଁଛ, ତାହାହେଲେ ମୁଁ ତୁମ୍ଭମାନଙ୍କୁ ଦୃଢ଼ତାର ସହିତ କହୁଛି, ତୁମ୍ଭେମାନେ ଶ୍ରଦ୍ଧାପୂର୍ବକ ବିଧି ବିଧାନରେ ଭାଗବତ କଥା ପ୍ରତିଦିନ ପାଠ କର, ଶ୍ରବଣ କର ଓ ମନନ କର । ଏହାଦ୍ୱାରା ତୁମ୍ଭେମାନେ ଅଭୟ ହୋଇଯିବ । ଭୟଙ୍କର ଭବ ଭୂତ ଅବଧୂତ ହୋଇ ମସ୍ତକରେ ଭବ୍ୟ ଚିତାଭସ୍ମ ଧାରଣ କରି ତୁମ୍ଭମାନଙ୍କ ଗ୍ରାମରୁ ବାହାରି ଯିବ । ତୁମ୍ଭେମାନେ ଅଜର, ଅମର, ନିର୍ଭୟ ହେବ ଓ ନିତ୍ୟ ଆନନ୍ଦସ୍ୱରୂପ ହୋଇଯିବ ।

ସୂତ କହିଲେ—''ମୁନିଗଣ ! ଶ୍ରୀମଦ୍ଭାଗବତ ଶାସ୍ତ୍ର ଏପରି ସୁବର୍ଣ୍ଣ ଯେ, ତାକୁ ସହସ୍ରବାର ଅଗ୍ନିରେ ପୋଡ଼ି ମଳରହିତ କରି ଦିଆଯାଇଛି । ଯେପରି ସ୍ତ୍ରୀମାନଙ୍କର ଧନ ଶୀଳ, ବ୍ରାହ୍ମଣଙ୍କର ଧନ ତପ, କ୍ଷତ୍ରିୟଙ୍କର ଧନ ତେଜ ଓ ଓଜ, ବୈଶ୍ୟଙ୍କର ଧନ ସୁବର୍ଣ୍ଣ, ମଣି, ମାଣିକ୍ୟ, ବ୍ରହ୍ମଚାରୀଙ୍କର ଧନ ବୀର୍ଯ୍ୟ, ଗୃହସ୍ଥଙ୍କର ଧନ ସୁନ୍ଦର ସଦ୍‌ଗୁଣଯୁକ୍ତ ସ୍ତ୍ରୀ ପୁତ୍ର ଓ ବାନପ୍ରସ୍ଥୀଙ୍କର ଧନ ତିତିକ୍ଷା, ସନ୍ନ୍ୟାସୀମାନଙ୍କର ଧନ ତ୍ୟାଗ, ରାଜାମାନଙ୍କର ଧନ ଅପ୍ରତିହତ ଆଜ୍ଞା ଓ ବିଦ୍ୱାନମାନଙ୍କର ଧନ ବିଦ୍ୟା, ସେହିପରି ବୈଷ୍ଣବମାନଙ୍କର ଧନ ଏହି ଶ୍ରୀମଦ୍ଭାଗବତ ଶାସ୍ତ୍ର । ଏହା ପରମ ପବିତ୍ର ଧନ । ଅନ୍ୟାନ୍ୟ ଶାସ୍ତ୍ରର ଧର୍ମ ତ କିଛି ନା କିଛି ସକାମ,

କୈବଲ୍ୟ ସହିତ କାମନାଯୁକ୍ତ, କିନ୍ତୁ ଏହି ଭାଗବତରେ ଧର୍ମ ତ କୈତବ (କପଟ) ରହିତ, ବିଶୁଦ୍ଧ, ନିର୍ମଳ, ପରମହଂସମାନଙ୍କର ପ୍ରାପ୍ତକରିବା ଯୋଗ୍ୟ ଓ ନିଷ୍କାମ । ଏହା ହେଉଛି ଶ୍ରୀମଦ୍ଭାଗବତର ଅତ୍ୟନ୍ତ ପବିତ୍ରତାର କାରଣ । ଅନ୍ୟାନ୍ୟ ଶାସ୍ତ୍ରରେ ତ କେଉଁଠି ଧର୍ମର, କେଉଁଠି ଅର୍ଥର, କେଉଁଠି କାମର ବର୍ଣ୍ଣନ ରହିଛି, କିନ୍ତୁ ଏହି ଭାଗବତ ଶାସ୍ତ୍ରରେ ଅତି ବିଶୁଦ୍ଧ ପରମଜ୍ଞାନର ହିଁ ବର୍ଣ୍ଣନା କରାଯାଇଛି । କୌଣସି ଶାସ୍ତ୍ରରେ କର୍ମ ଉପରେ ଜୋର ଦିଆଯାଇଛି ତ କୌଣସି ଶାସ୍ତ୍ରରେ ଭକ୍ତିକୁ ଛାଡ଼ି ସବୁକୁ ତୁଚ୍ଛ ବୋଲି କୁହାଯାଇଛି, କିନ୍ତୁ ଏଥିରେ ବୈରାଗ୍ୟ ଓ ଭକ୍ତି ସହିତ ନିଷ୍କାମ କର୍ମର ନିରୂପଣ କରାଯାଇଛି । ସମସ୍ତର ସରସତା ସହିତ ଶାସ୍ତ୍ରାନୁକୂଳ ସୁନ୍ଦର ସମନ୍ୱୟ କରାଯାଇଛି । ଯେଉଁ ବ୍ୟକ୍ତି ଭାଗବତ କଥାକୁ ପ୍ରେମରେ, ଶ୍ରଦ୍ଧା ଭକ୍ତି ଓ ବିଶ୍ୱାସର ସହିତ ଶ୍ରବଣ କରନ୍ତି, ପାଠ କରନ୍ତି, ଅନ୍ୟକୁ ଶୁଣାନ୍ତି, ଏକାଗ୍ର ଚିତ୍ତରେ ମନନ କରନ୍ତି ସେ ନିଶ୍ଚିତ ଭାବରେ ମୋକ୍ଷପଦର ଅଧିକାରୀ ହୋଇଥାଆନ୍ତି । ସେହି ବ୍ୟକ୍ତିମାନେ ଚିରଦିନ ସକାଶେ ସଂସାର ସାଗରକୁ ପାର ହୋଇଥାଆନ୍ତି । ମୁନିଗଣ ! ଯେଉଁ ବ୍ୟକ୍ତି ଏହାକୁ ଶ୍ରଦ୍ଧାର ସହିତ ଗୁରୁମୁଖରୁ ଶୁଣନ୍ତି ସେମାନେ ସ୍ୱୟଂ ଭଗବଦ୍ ସ୍ୱରୂପ ହୋଇଯାଆନ୍ତି । ଅନାଦି ଅନନ୍ତ ଅଖିଳେଶ୍ୱର ଯାହାଠାରୁ ଉତ୍ପନ୍ନ ତାହା ତାଙ୍କରି ରୂପାନୁରୂପ ହୋଇଥାଏ । ଭଗବାନଙ୍କଠାରୁ ଜ୍ଞାନପ୍ରାପ୍ତ ହୋଇ ବ୍ରହ୍ମା, ନାରଦ, ବେଦବ୍ୟାସ, ଶୁକଦେବ, ରାଜା ପରୀକ୍ଷିତ ଓ ଆପଣମାନେ ଜ୍ଞାନସ୍ୱରୂପ ହୋଇଯାଇଛନ୍ତି । ସେହି ଜ୍ଞାନକୁ ଆମେ ଧ୍ୟାନ କରୁଅଛୁ ।

ଏହି ଶାସ୍ତ୍ରର ଆଦିବୀଜ ହେଉଛନ୍ତି ଭଗବାନ ବାସୁଦେବ । ସେ କରୁଣାକରି ମୋକ୍ଷ ଇଚ୍ଛା ରଖିଥିବା ଅଜ ଚତୁରାନନଙ୍କୁ ଏହି ଶାସ୍ତ୍ର ଶୁଣାଇଥିଲେ । ସମସ୍ତଙ୍କର ସାକ୍ଷୀ, ସର୍ବତ୍ର ପରିବ୍ୟାପ୍ତ ସେହି ଭଗବାନ୍ ଶ୍ରୀହରିଙ୍କ ପାଦପଦ୍ମରେ ବାରମ୍ବାର ପ୍ରଣାମ । ତାଙ୍କରି ପ୍ରେରଣାରେ ଏହି ଅନୁପମ ଶାସ୍ତ୍ର ସଂସାରରେ ପ୍ରଚାର ଓ ପ୍ରସାର ହୋଇଛି । ଶେଷରେ ମୁଁ ମୋର ସେହି ଗୁରୁଦେବଙ୍କ ଚରଣରେ ବାରମ୍ବାର ପ୍ରଣାମ କରୁଅଛି, ଯିଏ କି ଜ୍ଞାନର ଭଣ୍ଡାର, କରୁଣାର ସାଗର ଓ ସଂସାର ପ୍ରତି ସର୍ବଥା ଉଦାସୀନ ଅଟନ୍ତି । ଅଭିମନ୍ୟୁ ତନୟ ଉତ୍ତରାନନ୍ଦନ ମହାରାଜ ପରୀକ୍ଷିତଙ୍କୁ ସଂସାର-ସର୍ପ ଦଂଶନ କରିଥିଲା । ଭବଭୟ ଭୂତ ତାଙ୍କ ଶରୀରରେ ଆବେଶ କରିଯାଇଥିଲା । ତାଙ୍କର ଏତିକି ମାତ୍ର ସାମର୍ଥ୍ୟ ନଥିଲା ଯେ, ସେ ସ୍ୱୟଂ ନିଜ ଚିକିତ୍ସକଙ୍କ ନିକଟକୁ ଯାଇ ଚିକିତ୍ସିତ ହେବେ । ମୋର ଗୁରୁଦେବ କରୁଣାର ବଶୀଭୂତ ହୋଇ ବିନା ଆମନ୍ତ୍ରଣରେ ସ୍ୱୟଂ ରାଜାଙ୍କ ନିକଟକୁ ଆସି ସଂସାର-ସର୍ପ ଦ୍ୱାରା ଦଂଶିତ ରାଜାଙ୍କୁ ବିଷମୁକ୍ତ କଲେ । ତାଙ୍କର ଭୟଙ୍କର ଭୂତକୁ ଭାଗବତ ଶୁଣାଇ ତାଙ୍କ ଦେହରୁ ଛଡ଼ାଇଲେ । ସେହି ବ୍ରହ୍ମର୍ଷିବନ୍ଦିତ ଯୋଗିରାଜ ଆନନ୍ଦାବତାର ମୋର ଗୁରୁଙ୍କ ଚରଣରେ ବାରମ୍ବାର ପ୍ରଣାମ କରି ମୁଁ ଯେତିକି ପାରିଲି ସେତିକି ଭାଗବତ କଥା ଆପଣମାନଙ୍କ ଆଗରେ ବର୍ଣ୍ଣନା କରି ଏହି ପ୍ରସଙ୍ଗକୁ ଏଠାରେ ସମାପ୍ତ କରୁଅଛି । ଏବେ ଅନ୍ତିମ ପ୍ରଣାମ କରି ମୁଁ ଭାଗବତ କଥାର ଉପସଂହାର କରିବି ।''

ଷଟ୍‌ପଦୀ

ହେ ଦେବେଶ୍ୱର ! ଦୟିତ ! ଦୟାନିଧି ଦାତା ଦାନୀ ।
ହୈ ସେବକ ପ୍ରଭୁଦତ୍ତ ଅଲପତି ଅବଗୁନ ଖାନୀ ।।
ଧନ, ଜନ, ବୈଭବ, ରାଜ ବିଷୟସୁଖ ନାଥ ନ ଚାହୁଁ ।
ପଦ ପଦୁମନି କୀ ଭକ୍ତି ଜନମ ଜନମନି ମେଂ ପାଉଁ ।।
କା କହିକେ ବିନତୀ କରୁଁ, ଅଜ୍ଞ ଅକିଞ୍ଚନ ଦୀନ ହୂଁ ।
କୃପା ପ୍ରତୀକ୍ଷା କରି ରହ୍ୟୋ, ସବ ବିଧି ସାଧନ ହୀନ ହୂଁ ।।



# ଅନ୍ତିମ ପ୍ରଣାମ

ନାମ-ସଂକୀର୍ତ୍ତନ ଯସ୍ୟ ସର୍ବପାପପ୍ରଣାଶନମ୍ ।
ପ୍ରଣାମୋ ଦୁଃଖଶମନସ୍ତଂ ନମାମି ହରିଂ ପରମ୍ ॥
(ଶ୍ରୀମଦ୍ଭାଗବତର ଅନ୍ତିମ ଶ୍ଳୋକ)

ଷଟ୍‌ପଦୀ

ସଂକୀର୍ତ୍ତନ ଜିନି ନାମ ପାପ କେ ପୁଞ୍ଜ ଜରାବୈ ।
ଜିନିହୁଁ କର୍‌ୟୋ ପ୍ରନାମ ସକଲ ଅଘ ଶୋକ ନସାବୈ ॥
ଜିନିକେ ମଧୁମୟ ଚରିତ ସୁଧା ଶ୍ରବନନି ମେଂ ଘୋରେଂ ।
ହରେ ମୁରାରେ ନାଥ ନାମ ଅଘ କୂଟନି ତୋରେଂ ॥
କଲି ମେଂ କୀର୍ତ୍ତନ ତେଂ ମିଲୈଂ, ସୁନି କୀର୍ତ୍ତନ ରମି ଜାତ ହୈଂ ।
ଚରନ ଶରନ ତିନିକୀ ଗହୌ, ଜୋ ପ୍ରଭୁ କେ ପିତୁ ମାତ ହୈଂ ॥

ହେ ପ୍ରଭୋ ! ଏହି ଜୀବ ଅନାଦି ବାସନାଗୁଡ଼ିକର ବଶୀଭୂତ ହୋଇ ବିକଳ ଅବସ୍ଥାରେ ରହିଛି, ସେ ଏହି ସଂସାରରେ ଅସହାୟଙ୍କ ଭଳି କେତେଦିନ ହେଲା ଭ୍ରମୁଅଛି । ହେ ପଥ ପ୍ରଦର୍ଶକ ! ତାହାକୁ ପୁଣ୍ୟପଥ ଦେଖାଇଦିଅ । ତାକୁ ନିଜର ଦେବଦୁର୍ଲଭ ଦର୍ଶନ କରାଇ ଦିଅ । ହେ ତ୍ରାଣକର୍ତ୍ତା ! ଆମ୍ଭେମାନେ ବହୁକାଳ ଧରି ଏହି ଅସାର ସଂସାର ସାଗରରେ ଉବେଇ ଟୁବେଇ ହେଉଅଛୁ, ଆମର ହସ୍ତପଦ ଅବଶ ହୋଇ ପଡ଼ିଲାଣି । ହେ ନାଥ ! ଆମ୍ଭମାନଙ୍କୁ ଏ ବିପଦରୁ ରକ୍ଷା କର । ଆମ୍ଭମାନଙ୍କୁ ସୁଦୃଢ଼ ନୌକାରେ ବସାଇ ଦିଅ । ଆମ୍ଭମାନଙ୍କୁ ଆପଣାର କରିନିଅ । ଆରପାରିରେ ଆମ୍ଭମାନଙ୍କୁ ନେଇ ପହଞ୍ଚାଇ ଦିଅ । ହେ ଚତୁର ନାବିକ ! ଦୟା କର, କୃପା କର, ଅନୁଗ୍ରହ କର, ଅନୁକମ୍ପା କର । ତୁମର ତ କାମ ହେଉଛି ପାରି କରିଦେବା । ତଥାପି ଆମକୁ ପାରି କରିଦେବାରେ ଏତେ ଡେରି କାହିଁକି କରୁଛ ? କାହିଁକି ହାତ ବଢ଼ାଇ ଆମ୍ଭମାନଙ୍କୁ ଉଦ୍ଧାର କରୁ ନାହଁ ?

ହେ ସର୍ବଜ୍ଞ ! ଆମ୍ଭେମାନେ ଅନେକ ଦିନ ହେଲା ଏହି ଭବାଟବୀରେ ଭ୍ରମରେ ପଡ଼ି ଘୋର ଅରଣ୍ୟ ମଧ୍ୟରେ ପ୍ରବେଶ କରିଛୁ । ଆମ୍ଭମାନଙ୍କୁ ସୁଗମ, ସୁନ୍ଦର, ସରଳ, ସୁଖକର ସିଧାବାଟ କାହିଁକି ତୁମେ ଦେଖାଇ ଦେଉନାହଁ ? ହେ ଅନ୍ତର୍ଯ୍ୟାମି ! ଆସ ! ଆସ ! ଆମ୍ଭମାନଙ୍କୁ ପୁଣ୍ୟପଥ ଦେଖାଇ ଦିଅ । ଆଉ ବିଳମ୍ବ କରିବା ଉଚିତ୍ ନୁହେଁ, ଆମ୍ଭେମାନେ ବହୁତ କଷ୍ଟ ପାଇଲୁଣି । ଆମ୍ଭମାନଙ୍କୁ ମୁକ୍ତିର ପଥ ବତାଇଦିଅ ।

ହେ ଗୋବିନ୍ଦ ! ଆମ୍ଭମାନଙ୍କର ଇନ୍ଦ୍ରିୟଗଣ ଆମ୍ଭମାନଙ୍କୁ କୁପଥକୁ ଟାଣି ନେଉଛନ୍ତି । ଯଥେଚ୍ଛାଚାରୀ ହେବାକୁ ପ୍ରେରିତ କରୁଛନ୍ତି । ବିଷୟରୂପୀ ବିଷକୁ ପାନ କରାଇ ଆମ୍ଭମାନଙ୍କୁ ବିବଶ କରୁଅଛନ୍ତି । ହେ ହୃଷୀକେଶ ! ଆମ୍ଭମାନଙ୍କର ମନକୁ ତୁମ ଆଡ଼କୁ ଆକର୍ଷଣ କରିନେଇ ଏ ବିଷପାନରୁ ଆମ୍ଭମାନଙ୍କୁ ବଞ୍ଚିତ କରାଅ ।

ହେ ଅଶରଣ ଶରଣ ! ସଂସାରରେ ଆମ୍ଭେମାନେ ଯାହାର ଶରଣ ନେଉଛୁ ଶରଣ ପାଇପାରୁ ନାହିଁ । ଯହିଁରୁ ସୁଖ ପାଇବାର ଆଶା ରଖୁଛୁ ତହିଁରୁ ଦୁଃଖ ପାଉଛୁ । କାତର

ହୋଇ ଯାହାକୁ ସାହାଯ୍ୟ ପାଇଁ ପ୍ରାର୍ଥନା କରୁଛୁ, ତାହାଠାରୁ କୌଣସି ସାହାଯ୍ୟ ପାଇପାରୁ ନାହୁଁ । ତେଣୁ ସବୁ ଦିଗରୁ ମୁହଁ ଫେରାଇ ଏବେ କେବଳ ତୁମକୁ ଚାହିଁଛୁ । ତୁମ ଚରଣାରବିନ୍ଦର ଆଶ୍ରୟ ଲୋଡ଼ୁଛୁ । ତୁମକୁ ସମସ୍ତ ସମର୍ପଣ କରି ସୁଖୀ ହେବାକୁ ଚାହୁଁଛୁ । ହେ ନାଥ ! ତୁମେ ଆମ୍ଭମାନଙ୍କୁ ଆପଣାର କରିନିଅ । ତୁମ ଚରଣରେ ଆମ୍ଭମାନଙ୍କୁ ଦାସ କରି ରଖ । ନିଜ ଆଶ୍ରୟରେ ରଖିନିଅ । ହେ ଅଖିଳେଶ ! ପ୍ରତିଷ୍ଠା ଲାଭ କରିବାର ଆଶାରୁ ଆମ୍ଭେମାନେ ସବୁଠାରୁ ଠୋକର ଖାଇଲୁଣି । କେବଳ ବିପରୀତ ଫଳ ମିଳୁଛି । ସର୍ବପ୍ରତିଷ୍ଠିତ ତୁମକୁ ଛାଡ଼ି ଯିଏ ଏହି ଅପ୍ରତିଷ୍ଠଙ୍କ ଆଶ୍ରୟ କରେ କିମ୍ବା ଅପ୍ରତିଷ୍ଠ ପଦାର୍ଥ ପାଇଁ ଘୂରିବୁଲେ, ତାହାର ପ୍ରତିଷ୍ଠା କେବେହେଲେ ସମ୍ଭବ ହୁଏ ନାହିଁ, ଏହା ଆମ୍ଭେମାନେ ଏବେ ହୃଦୟଙ୍ଗମ କରୁଅଛୁ । ତୁମେ ତୁମ ପ୍ରତିଷ୍ଠା ସହିତ ଆମ୍ଭମାନଙ୍କ ପ୍ରତିଷ୍ଠାକୁ ମିଶାଇ ଦିଅ । ତୁମେ ଆମ୍ଭମାନଙ୍କୁ ଯଥେଷ୍ଟ ଆଦର ପ୍ରଦାନ କର, ଆନନ୍ଦ ପ୍ରଦାନ କର । ହେ ଦୟାନିଧାନ ! ବାରେ ଦୟା କର । କୃପାବାରି ବର୍ଷଣ କର । ଆମ୍ଭମାନଙ୍କର ଚିରକାଳର ସନ୍ତପ୍ତ ହୃଦୟକୁ ସରସ କରିଦିଅ । ଆନନ୍ଦ ସାଗରରେ ଆମ୍ଭମାନଙ୍କ ହୃଦୟକୁ ପରିପ୍ଲାବିତ କରିଦିଅ । ଅମୃତ ସାଗରରେ ନେଇ ବୁଡ଼ାଇଦିଅ ।

ସୂତ କହିଲେ—''ମୁନିଗଣ ! ଭାଗବତ କଥା ସମ୍ପୂର୍ଣ୍ଣ ହୋଇଗଲା । ଆର୍ଯ୍ୟ ବୈଦିକ ସନାତନ ଧର୍ମରେ ସମସ୍ତ କାର୍ଯ୍ୟର, ସମସ୍ତ ଗ୍ରନ୍ଥର ଆଦ୍ୟରେ, ମଧ୍ୟରେ ଓ ଅନ୍ତରେ ଶ୍ରୀହରିଙ୍କର ମହିମା ଗାନ କରାଯାଇଛି । ତେଣୁ ମୁଁ ମଧ୍ୟ ନିଜର ଶୁଦ୍ଧାଶୁଦ୍ଧ ଭାଷାରେ ଏହି ଗ୍ରନ୍ଥର ଶେଷରେ ପ୍ରଭୁଙ୍କ ପଦାରବିନ୍ଦରେ ନିଜର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ।''

ଶୌନକ କହିଲେ—''ହେ ସୂତ ! ଆମ୍ଭମାନଙ୍କ ତରଫରୁ ମଧ୍ୟ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଦିଅନ୍ତୁ ।''

ସୂତ କହିଲେ—''ମୁନିଗଣ ! ହଁ, ମହାରାଜ ! ସମସ୍ତଙ୍କ ତରଫରୁ ମୁଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଆପଣମାନେ ଆଖି ବନ୍ଦ କରନ୍ତୁ, ଧ୍ୟାନ କରନ୍ତୁ ଓ ଅନୁଭବ କରନ୍ତୁ । ଭକ୍ତାନୁଗ୍ରହକାତର ଶ୍ୟାମସୁନ୍ଦର ଆମ୍ଭମାନଙ୍କ ସମ୍ମୁଖରେ ଦଣ୍ଡାୟମାନ । ଏବେ ତାଙ୍କର ମାନସିକ ପୂଜନ କରନ୍ତୁ ।''

ପ୍ରଥମେ ଧ୍ୟାନ କରି କହନ୍ତୁ—''ହେ ନାଥ ! ତୁମେ ଆମ୍ଭମାନଙ୍କର ସ୍ୱାମୀ ଅଟ । ଆମ୍ଭେମାନେ ତୁମର ସେବକ । ହେ ଦୟାସାଗର ! ତୁମେ ନିଜର ବିଶ୍ୱମୋହିନୀ ମୂର୍ତ୍ତିକୁ ଆମ୍ଭମାନଙ୍କ ହୃଦୟରେ ସବୁଦିନ ପାଇଁ ଅଙ୍କିତ କରିଦିଅ । ହେ ସଦ୍‌ଗୁଣ ନିଳୟ ! ହେ ମନମୋହନ ! ହେ ତ୍ରିଭୁବନସୁନ୍ଦର ! ହେ ଭୁବନମୋହନ ! ତୁମକୁ ଆମ୍ଭେମାନେ ସର୍ବଦା ଧ୍ୟାନ କରୁଥାଉ ।''

ଆସନ—''ହେ ଗରୁଡ଼ାସନ ! ହେ ଶେଷଶଯ୍ୟାଶାୟୀ ! ତୁମେ ସୁଖକର ଶେଷଶଯ୍ୟାରେ ସର୍ବଦା ସୁଖରେ ଶୟନ କରୁଛ । କେହି କେହି ତୁମକୁ ସୁବର୍ଣ୍ଣ ସିଂହାସନ ସମର୍ପିତ କରିଛନ୍ତି । କେହି ମଣିଖଚିତ ମନୋହର ଆସନ ପ୍ରସ୍ତୁତ କରିଛନ୍ତି । କିନ୍ତୁ, ଆମ୍ଭେମାନେ ତ ତୁମକୁ ଏହି ଆସନ ଦେବୁ, ଯେଉଁ ଆସନରେ କି ତୁମର ପ୍ରିୟ କମଳାରାଣୀ ବସିଛନ୍ତି । ଆମ୍ଭେମାନେ ଆମ୍ଭମାନଙ୍କର ହୃଦୟ-କମଳକୁ ଆସନ ରୂପେ ପ୍ରସ୍ତୁତ କରିଅଛୁ । ତୁମେ କୃପାକରି ସେହି ଆସନ ଉପରେ ବିରାଜମାନ କର ।''

ପାଦ୍ୟ—''ହେ ନାଥ ! ପାଦ୍ୟ ଅର୍ପଣ କରିବା ଆମ୍ଭମାନଙ୍କର ସୁବର୍ଣ୍ଣପାତ୍ର, ଗନ୍ଧ ଆମ୍ଭମାନଙ୍କ ନିକଟରେ ନାହିଁ । କେବଳ ଦୁଇ ନେତ୍ରର ଉଷ୍ଣ ଅଶ୍ରୁ ଦୁଇବୁନ୍ଦା ଆମ୍ଭେମାନେ ତୁମର ଚରଣାରବିନ୍ଦ ଯୁଗଳରେ ଅର୍ପଣ କରୁଅଛୁ ।''

ଅର୍ଘ୍ୟ—"ହେ ଅଚ୍ୟୁତ ! କରକମଳରେ ଅର୍ଘ୍ୟ ଅର୍ପଣ କରିବାକୁ ସୁବର୍ଣ୍ଣପାତ୍ର, ଗନ୍ଧ, ପୁଷ୍ପ, ଅକ୍ଷତ, ମଧୁ, ଦଧିସର୍ପି, ଦୁଗ୍ଧ, ଦୁର୍ବା ଓ କୁଶ ଇତ୍ୟାଦି ଆମ୍ଭମାନଙ୍କ ନିକଟରେ ନାହିଁ, କେବଳ ଭରିତ ହୃଦୟରୁ ନିସୃତ ଅଶ୍ରୁବିନ୍ଦୁ ଅଛି । ତାହା ଆମ୍ଭେମାନେ ଅର୍ଘ୍ୟସ୍ୱରୂପ, ଆଚମନୀୟସ୍ୱରୂପ ଓ ବିଶୁଦ୍ଧ ଜଳସ୍ୱରୂପ ତୁମ ଶ୍ରୀଚରଣରେ ଅର୍ପଣ କରୁଅଛୁ । ଅଶ୍ରୁ ବ୍ୟତୀତ ଆମ୍ଭମାନଙ୍କ ନିକଟରେ ଆଉ କିଛି ନାହିଁ ।"

ବସ୍ତ୍ର—"ହେ ପୀତାମ୍ବରଧାରୀ ! ଆମ୍ଭମାନଙ୍କ ନେତ୍ର ଉପରେ ଯେଉଁ ପୁରାତନ ପରଦା ପଡ଼ିଛି, ସେହି ଆବରଣକୁ ଅତ୍ୟନ୍ତ ଦୀନତାର ସହିତ ଆମ୍ଭେମାନେ ତୁମ ଅଙ୍ଗବସ୍ତ୍ର ପାଇଁ ଅର୍ପଣ କରୁଛୁ । ଆମ୍ଭମାନଙ୍କର ଦୀନତାକୁ ବିଚାର କରି ଏହି ଦୀନ ମଳିନ ଆବରଣକୁ କୃପା ପୂର୍ବକ ଗ୍ରହଣ କର ।"

ଯଜ୍ଞୋପବୀତ—"ହେ ଯଜ୍ଞେଶ ! ତିନିଖିଅ ବିଶିଷ୍ଟ ତ୍ରିଗୁଣାତ୍ମକ ଏହି ଶରୀରକୁ ହିଁ ଆମ୍ଭେମାନେ ଯଜ୍ଞୋପବୀତ୍ ସ୍ଥାନରେ ପ୍ରସ୍ତୁତ କରି ରଖିଅଛୁ । ପ୍ରଭୋ ! ଏହି ମଳ ନିଳୟକୁ ତୁମେ ବିଶୁଦ୍ଧ କରାଇ ଗ୍ରହଣ କର ।"

ଚନ୍ଦନ—"ହେ ଯଦୁନନ୍ଦନ ! ବିଷୟପ୍ରତି ଆମ୍ଭମାନଙ୍କର ଯେଉଁ ମମତା ରୂପକ ସ୍ନିଗ୍ଧତା ରହିଛି, ତାହା ଆମ୍ଭମାନଙ୍କ ସମ୍ମୁଖରେ ଚନ୍ଦନ ସ୍ୱରୂପ । ତାହା ଗ୍ରହଣ କରି ଆମ୍ଭମାନଙ୍କୁ ପ୍ରସାଦ ପ୍ରଦାନ କର, ଯେଉଁଥିରେ କି ଆମ୍ଭମାନଙ୍କର ମମତା ତୁମପ୍ରତି ଅତୁଟ ରହିବ ।"

ଅକ୍ଷତ—"ହେ ଅକ୍ଷୟ ! ଆମ୍ଭମାନଙ୍କର ଏହି କ୍ଷତ ବିକ୍ଷତ ହୃଦୟକୁ ହିଁ ଆମ୍ଭେମାନେ ଅକ୍ଷତ ସ୍ଥାନରେ ତୁମ ପାଦପଦ୍ମରେ ସମର୍ପଣ କରୁଅଛୁ ।"

ପୁଷ୍ପ—"ହେ ସୁମନସ୍ୱରୂପ ! ଆମ୍ଭମାନଙ୍କ ହୃଦୟରେ ଯେଉଁ ଭଳି ଭଳି ବିଷୟ-ବାସନାର ଗନ୍ଧ ସଞ୍ଚିତ ହୋଇ ରହିଛି, ସେହି ଭଳି ଭଳି ବିଷୟ ରୂପକ କୁମନକୁ ସୁମନରେ ପରିଣତ କରାଇ ସୁପୁଷ୍ପ ସ୍ଥାନରେ ତାହା ଗ୍ରହଣ କର ।"

ଧୂପ—"ହେ ଗନ୍ଧାଳୟ ! ଅସନ୍ତୋଷ ଜନିତ ନିଃଶ୍ୱାସରୁ ଯେଉଁ ଧୂମ୍ର ନିର୍ଗତ ହୁଏ, ତାକୁ ହିଁ ଧୂପ ସ୍ଥାନରେ ତୁମେ ଗ୍ରହଣ କର ।"

ଦୀପ—"ହେ ଜ୍ଞାନସ୍ୱରୂପ ! ବିଷୟ ପ୍ରାପ୍ତି ପାଇଁ ଆମ୍ଭମାନଙ୍କ ହୃଦୟରେ ନିରନ୍ତର ଯେଉଁ ଅଖଣ୍ଡ ଜ୍ୟୋତି ଜଳୁଛି, ତହିଁରେ ତୁମର ସ୍ନେହଘୃତ ପକାଇ ଦୀପ ସ୍ଥାନରେ ତାହାର ଆଲୋକ ଗ୍ରହଣ କର ଓ ସେହି ଆଲୋକରେ ଆମ୍ଭମାନଙ୍କୁ ଆଲୋକିତ କର ।"

ନୈବେଦ୍ୟ—"ହେ ମଦହାରୀ ! ଆମ୍ଭମାନଙ୍କର ମଦକୁ ତୁମେ ନୈବେଦ୍ୟ ସ୍ଥାନରେ ଭକ୍ଷଣ କରିଯାଅ । ଆମ୍ଭମାନଙ୍କ ପାତ୍ରରେ ପ୍ରସାଦ ମଧ୍ୟ ଛାଡ଼ିଯାଅ ନାହିଁ । ସେ ସମସ୍ତ ତୁମେ ପାଇଯାଅ ।"

ମୁଖଶୁଦ୍ଧି—"ହେ ପରିପୂର୍ଣ୍ଣ ! ମୁଖଶୁଦ୍ଧି-ତାମ୍ବୁଳ ଓ ଗୁଆ ସ୍ଥାନରେ ଆମ୍ଭମାନଙ୍କର ହୃଦୟର ଅଶୁଦ୍ଧିକୁ ତୁମେ ହରଣ କରିନିଅ ।"

ଦକ୍ଷିଣା—"ହେ ଲକ୍ଷ୍ମୀପତେ ! ଆମ୍ଭମାନଙ୍କ ନିକଟରେ ଏବେ ଯାହା ଦକ୍ଷିଣା ଦେବାକୁ ଅଛି, ତାହା ଦେବୁ । ଅଜ୍ଞାନରାଶି ଆମ୍ଭମାନଙ୍କ ହୃଦୟରେ ବିଦ୍ୟମାନ । ତୁମେ ସର୍ବସମର୍ଥ, ତାହାକୁ ତୁମ କୋଷରେ ମିଶାଇ ଦିଅ । ତୁମେ ଜ୍ଞାନର ନିଧି, ଆମ୍ଭେମାନେ ଅଜ୍ଞାନର ନିଧି । ତୁମକୁ ସମସ୍ତ ସମର୍ପଣ କରି ଆମ୍ଭେମାନେ ନିର୍ଧନ ହେବାକୁ ଚାହୁଁ । ଆମ୍ଭମାନଙ୍କର ଅତୁଳ ଧନକୁ, ହେ କମଳାକାନ୍ତ ! ତୁମେ ସ୍ୱୀକାର କର ।"

ଆରତୀ—"ହେ ପ୍ରକାଶରୂପ ! ପଞ୍ଚଭୂତର ପ୍ରପଞ୍ଚରୁ ଜାତ ମମତାରେ ସ୍ନିଗ୍ଧ ଅଜ୍ଞାନଦ୍ୱାରା ପ୍ରଜ୍ୱଳିତ ଏହି ଆରତୀକୁ ଆମ୍ଭେମାନେ ତୁମ ସମ୍ମୁଖରେ ଦେଖାଉ ଅଛୁ ।"

ପ୍ରଦକ୍ଷିଣା—"ହେ ସଂସାରର ସ୍ୱାମୀ ! ଆମ୍ଭେମାନେ ଜାଣି ନାହୁଁ କେଉଁକାଳୁ ଏ ସଂସାରଚକ୍ରକୁ ଆମେ ପ୍ରଦକ୍ଷିଣା କରୁଅଛୁ, କେବେଠାରୁ ଏ ସଂସାରଚକ୍ରରେ ଘୂରୁଅଛୁ । ଏବେ ତୁମ ଚରଣ ନିକଟକୁ ଆସିବାରୁ ସେହି ପ୍ରଦକ୍ଷିଣା ଶେଷ ହୋଇଯାଉ । ତୁମକୁ ପ୍ରଦକ୍ଷିଣା କରିବା ପରେ ଆମ୍ଭମାନଙ୍କୁ ଯେପରି ଆଉ କେଉଁଠି ଘୂରିବାକୁ ନ ପଡ଼େ । କୃପାକରି ତୁମେ ଏହି ପ୍ରଦକ୍ଷିଣାକୁ ସ୍ୱୀକାର କରିନିଅ ।"

ନମସ୍କାର—"ହେ ନାଥ ! ତୁମେ ତ ପାପହାରୀ, ପରମ ଅମଳ-ବିମଳ, ତୁମ ମହିମା ତ ଅପାର । କେବଳ ତୁମ ନାମ ସଂକୀର୍ତ୍ତନ ହିଁ ସଂସାରର ସମସ୍ତ ପାପ ତାପକୁ ନାଶ କରିବାରେ ସର୍ବଥା ସମର୍ଥ । ତୁମକୁ ଥରେ ମାତ୍ର ପ୍ରଣାମ କରିବାରେ ସମସ୍ତ ଅଶୁଭ, ଅମଙ୍ଗଳ ତୁମେ ଦୂରକରି ଦେଇଥାଅ । ହେ ମଙ୍ଗଳମୟ ! ହେ ଆନନ୍ଦମୟ ! ହେ ସୁଖମୟ ପ୍ରଭୋ ! ତୁମ ଚରଣାରବିନ୍ଦରେ ଆମ୍ଭେମାନେ ବାରମ୍ବାର ପ୍ରଣାମ କରୁଅଛୁ । ହେ ନାରାୟଣ ! ତୁମ ପାଦପଦ୍ମରେ ଅନନ୍ତ ନମସ୍କାର ।"

ବିନୟ—"ହେ ଅନାଥରନାଥ ! ତୁମେ ଆମ୍ଭମାନଙ୍କର ବାସ୍ତବରେ ସ୍ୱାମୀ । ହେ ଦେବେଶ୍ୱର ! ଆମ୍ଭେମାନେ ତୁମର ଅକିଞ୍ଚନ ଦାସ ଅଟୁ । ହେ ପ୍ରଭୋ ! ଆମ୍ଭେମାନେ ପାପପଙ୍କରେ ଘାଣ୍ଟି ହେଉଥିବା ପାମର ପ୍ରାଣୀ । ହେ ମୋକ୍ଷପତେ ! ଆମ୍ଭେମାନେ ମୋକ୍ଷ ଚାହୁଁ ନାହୁଁ । କର୍ମଚକ୍ରରୁ ଉଦ୍ଧାର ପାଇବା ପାଇଁ ଆମ୍ଭେମାନେ ଯାଚଞ୍ଚା କରୁନାହୁଁ । ଆମ୍ଭମାନଙ୍କୁ ଯେତେ ଜନ୍ମ ନେବାକୁ ପଡୁ ପଛକେ, କିନ୍ତୁ ହେ ସର୍ବେଶ୍ୱର ! ଆମ୍ଭମାନଙ୍କର ଅନ୍ତିମ ଭିକ୍ଷା ଏହି ଯେ, କର୍ମବଶରୁ ଆମ୍ଭେମାନେ ଯେଉଁଠାରେ ଜନ୍ମ ଲଭିଥିଲେ ବି ସେଠାରେ ତୁମ ଚରଣାରବିନ୍ଦରେ ଭକ୍ତି ରହିଥାଉ । ଏହା ହିଁ ଆମ୍ଭମାନଙ୍କର ତୁମଠାରେ ଅନ୍ତିମ ପ୍ରାର୍ଥନା ।"

ଭଗବାନ ବାସୁଦେବଙ୍କର ଜୟ ହେଉ
ଭଗବାନ ଦେବକୀନନ୍ଦନଙ୍କର ଜୟ ହେଉ
ନନ୍ଦନନ୍ଦନ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଜୟ ହେଉ
ଯଶୋଦା ତନୟ ବୃନ୍ଦାବନବିହାରୀଙ୍କର ଜୟ ହେଉ
ଭଗବାନ୍ନାମାତ୍ମକ ଭଗବଦ୍ ସ୍ୱରୂପ ଶ୍ରୀମଦ୍ଭାଗବତର ଜୟ ହେଉ ।
ବୋଲ ଭାଇ ସମସ୍ତ ସାଧୁ ସନ୍ଥଙ୍କର ଜୟ ! ସତ୍ୟର ଜୟ !

ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ ।
ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ ।
ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ ।

ଦୋହା— ମାତ୍ରା ଅକ୍ଷର ହୀନ ପଦ, ଯଦି ଅଶୁଦ୍ଧ ହୁ କୋଉ ।
କରେଁ କ୍ଷମା ରାଧାରମନ, ପ୍ରଭୁ ପ୍ରସନ୍ନ ଅବ ହୋଉ ॥
ଓଁ ଶାନ୍ତି ! ଓଁ ଶାନ୍ତି !! ଓଁ ଶାନ୍ତି !!!

**ଶ୍ରୀଭାଗବତ କଥା ସମାପ୍ତ**



# ଭାଗବତ କଥା ପରେ ରାମ-କଥା

ବିଶ୍ୱର ଦୁଇଟି ମହାନ ଗ୍ରନ୍ଥ—ଗୋଟିଏ ରାମାୟଣ ଓ ଅନ୍ୟଟି ଶ୍ରୀମଦ୍‌ଭାଗବତ । ଏହି ଦୁଇ ଗ୍ରନ୍ଥ ମଧ୍ୟରୁ ପ୍ରଥମଟି ମର୍ଯ୍ୟାଦା ପୁରୁଷୋତ୍ତମଙ୍କ ଉପରେ ଓ ଦ୍ୱିତୀୟଟି ପୁଷ୍ଟି ପୁରୁଷୋତ୍ତମଙ୍କ ଉପରେ ରଚିତ । ଧର୍ମ ମର୍ଯ୍ୟାଦାର ସହିତ ପାଳନ କଲେ ପୁଷ୍ଟି ବା ପ୍ରେମ ମିଳେ । କେବଳ ଭାରତବର୍ଷ କାହିଁକି, ସମଗ୍ର ବିଶ୍ୱରେ ରାମାୟଣ ସର୍ବାଧିକ ପଠିତ ଓ ଆଦୃତ ଗ୍ରନ୍ଥ । ରାମାୟଣର ତତ୍ତ୍ୱକୁ ଓ ଭାବକୁ ଅତି ସୁନ୍ଦର ରୂପରେ ବର୍ଣ୍ଣନା କରି ପୂଜ୍ୟପାଦ ଶ୍ରୀ ରାମଚନ୍ଦ୍ର କେଶବ ଡୋଙ୍ଗରେ ମହାରାଜ ଅଦ୍ୱିତୀୟ ପ୍ରାବଚକ ହୋଇପାରିଛନ୍ତି ।

ଭାଗବତ କଥାର ପୂର୍ଣ୍ଣାଙ୍ଗ ପ୍ରକାଶ ପରେ ଏହି ଅନୁଷ୍ଠାନ ପ୍ରକାଶ କରୁଛି ''ରାମ-କଥା'' ।

## ରାମ-କଥା

ମଣିଷ ଭାବେ, ସେ ନିଜେ କେବେ ବି ଭୁଲ କରେ ନାହିଁ । ନିଜକୁ ନିଜେ ନିର୍ଦ୍ଦୋଷ ମନେ କରିବାଠାରୁ ବଡ଼ ପାପ ସଂସାରରେ ଆଉ କିଛି ନାହିଁ । ଜଗତରେ କେବଳ ଶ୍ରୀରାମ ନିର୍ଦ୍ଦୋଷ ଶ୍ରୀକୃଷ୍ଣ ନିର୍ଦ୍ଦୋଷ ।

ପ୍ରତ୍ୟେକ ଜୀବ ଭୁଲ କରନ୍ତି । ପାପଟିଏ କରିଦେବା ସେପରି ମହାନ ଅପରାଧ ନୁହେଁ । କିନ୍ତୁ ପାପକୁ ନମାନିବା, ସ୍ୱୀକାର ନକରିବା, ପାପ ପାଇଁ ପ୍ରାୟଶ୍ଚିତ ନକରିବା ହେଉଛି ମହାନ ଅପରାଧ ।

ପାପକୁ ଯିଏ ପ୍ରକାଶ କରିଦିଏ ତା' ପାପ ନାଶ ହୋଇଯାଏ । ଶାସ୍ତ୍ର ଓ ସନ୍ଥ କୁହନ୍ତି, ମଣିଷ ନିଜର ପୁଣ୍ୟ ଗୁପ୍ତ ରଖିବା ଉଚିତ ଓ ପାପକୁ ପ୍ରକାଶ କରିଦେବା ଉଚିତ । ସାଧାରଣ ମଣିଷ ପୁଣ୍ୟକୁ ତ ବହୁଳ ପ୍ରଚାର କରନ୍ତି, ହେଲେ ପାପକୁ ଲୁଚାନ୍ତି । ପାପକୁ ଲୁଚାଇବା ଅନୁଚିତ, ଆଉ ପୁଣ୍ୟକୁ ପ୍ରକାଶ କରିବା ଅନୁଚିତ ।

ପାପର ପଂଝାରୁ ଖସିବା ଅତି ଦୁଷ୍କର । ଜୀବ ଅନେକ ଜନ୍ମଧରି ପାପ କରି ଆସୁଥିବାରୁ ପାପ କରିବାର ଅଭ୍ୟାସରେ ପରିଣତ ହୋଇଯାଇଛି । ଯାହାର ମନରେ ପାପ ଅଛି, ଯାହାର ଘରେ ପାପ ଅଛି, ସେଠାକୁ ପରମାତ୍ମା ଆସନ୍ତି ନାହିଁ । ମଇଳା ଅସନା ଗଦା ଥିଲେ ସାଧାରଣ ମଣିଷ ମଧ ସେ ସ୍ଥାନକୁ ଯାଆନ୍ତି ନାହିଁ କିମ୍ବା ସେଠାରେ ବସନ୍ତି ନାହିଁ । ସେପରି ସ୍ଥଳରେ ପାପରୂପୀ ମଇଳା ଯେଉଁଠାରେ ଗଦା ହୋଇଥିବ ସେଠାକୁ ପ୍ରଭୁ କିପରି ଆସିବେ ? ପାପ ଛାଡ଼ିଲେ ହୃଦୟ ଶୁଦ୍ଧ ହୁଏ, ହୃଦୟ ଶୁଦ୍ଧ ହେଲେ ଶ୍ରୀରାମ ଆସନ୍ତି ।

ଆମେ ଅନେକ ଜନ୍ମଧରି ପାପ କରି ଆସୁଥିବାରୁ ପାପ-ସଂସ୍କାର-ଜଗତରେ ବିବେକ ତିଷ୍ଠି ରହିପାରେ ନାହିଁ, ଜ୍ଞାନ ସୁସ୍ଥିର ରହେ ନାହିଁ, ମଣିଷ ପାପ ହିଁ କରିଚାଲେ । ପୁଣ୍ୟର ମାତ୍ରା ଅଧିକ ପ୍ରବଳ ନହେଲେ ମଣିଷ ପାପର ଅଭ୍ୟାସ ଛାଡ଼େ ନାହିଁ । ଶରୀର ଅପେକ୍ଷା ମଣିଷ ଜିଭରେ, ଜିଭ ଅପେକ୍ଷା ମଣିଷ ଆଖିରେ, ଆଖି ଅପେକ୍ଷା ମଣିଷ ମନରେ ଅଧିକ ପାପ କରେ ।

ରାମଙ୍କର ସତ୍‌ସଙ୍ଗ ହେଲେ ପାପ ଛାଡ଼ିଯାଏ, ଏକଥା ସତ୍ୟ । ମାତ୍ର ରାମାୟଣର ସତ୍‌ସଙ୍ଗ ହେଲେ ଅଧିକ ପାପ ଅଳ୍ପ ସମୟରେ ନାଶ ହୁଏ । ପାପ ନିମନ୍ତେ ପ୍ରବୃତ୍ତି ଦୂର ହୋଇଯାଏ । କାରଣ ରାମଙ୍କଠାରୁ ରାମ-ନାମର ପ୍ରଭାବ ଖୁବ୍ ବେଶୀ । ଶ୍ରୀରାମ ତାଙ୍କ ଜୀବିତାବସ୍ଥାରେ ଅନେକ ଅନେକ ଲୋକଙ୍କୁ ପାପମୁକ୍ତ କରିଥିଲେ । ମାତ୍ର ରାମ-କଥା, ଯାହା ତାଙ୍କ ପରେ ରଚିତ ହୋଇଛି, ଆଜି ପର୍ଯ୍ୟନ୍ତ ଅପ୍ରମିତ ଲୋକଙ୍କୁ ଉଦ୍ଧାର ପାଇବାର ମାର୍ଗ ଦର୍ଶନ କରାଇବାରେ ଲାଗିଛି ।। ରାମ-କଥା ।। ଶ୍ରୀରାମ ।।

